## ଆଶାପୂର୍ଣ୍ଣା ଦେବୀଙ୍କ

# ଦୁଇଟି ଉପନ୍ୟାସ

( ଶୂନ୍ୟରେ ସେତୁ - ପାଟରାଣୀଙ୍କର ଇଚ୍ଛା )

ଅନୁବାଦିକା

ଶ୍ରୀମତୀ ବସନ୍ତକୁମାରୀ ଦେବୀ



ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

# ଆଶାପୂର୍ଣ୍ଣା ଦେବୀଙ୍କ

# ଦୁଇଟି ଉପନ୍ୟାସ

## (ଶୂନ୍ୟରେ ସେତୁ, ପାଟରାଣୀଙ୍କର ଇଚ୍ଛା)

ଲେଖିକା : ସ୍ୱର୍ଗୀୟ ଆଶାପୂର୍ଣ୍ଣା ଦେବୀ

ଭାଷାନ୍ତର : ଶ୍ରୀମତୀ ବସନ୍ତକୁମାରୀ ଦେବୀ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦବିହାରୀ, କଟକ-୨

ଆଶାପୂର୍ଣ୍ଣା ଦେବୀଙ୍କ ଦୁଇଟି ଉପନ୍ୟାସ

ମୂଳ ରଚନା :
ଆଶାପୂର୍ଣ୍ଣା ଦେବୀ

ଭାଷାନ୍ତର :
ବସନ୍ତକୁମାରୀ ଦେବୀ

ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

ଡି.ଟି.ପି. :
ଉତ୍କଳ ଡି.ଟି.ପି. ସେଣ୍ଟର
କଟକ-୨

ପ୍ରଥମ ପ୍ରକାଶ - ୨୦୦୪

ମୁଦ୍ରଣ :
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ. ୭୫.୦୦

ASHAPURNA DEVINKA
DUITI UPANYASA
(SHUNYARE SETU,
PATARANINKARA ICCHA)

*WRITTER :*
Late Ashpurna Devi

*TRANSLATED BY :*
Smt. Basantakumari Devi

*PUBLISHER :*
G. D. Tripathy
Prachi Sahitya Pratisthan
Binodbihari, Cuttack-2

*D.T.P. :*
Utakal D.T.P. Centre
Cuttack-2

First Edition : 2004

*PRINTER :*
Sangita Printers, Ctc.

Price : Rs. 75.00

# ସୂଚୀପତ୍ର





# ଶୂନ୍ୟରେ ସେତୁ

ଅଧିବେଶନରେ ତ ଦେଖା ହେବାର କଥା, ତେବେ ଦେଖିଲାକ୍ଷଣି ଦୁହିଁଙ୍କ ଆଖିରେ ଯେଉଁ ଆଲୋକଟି ଫୁଟିଉଠିଲା ସେ ଆଲୋକ ଯେପରି ଅକସ୍ମାତ୍ ଅପ୍ରତ୍ୟାଶିତ ପ୍ରାପ୍ତିର ଆହ୍ଲାଦ ପରି ।

ଝକଝିଆ ପ୍ଲେଟ୍‌ଟିକୁ ହାତରେ ଧରି ଦେବଜ୍ୟୋତି ଆଗେଇ ଆସିଲେ ଉତ୍ତମା ସୋମ୍ ପାଖକୁ । ଅବଶ୍ୟ ଏଭଳି ଆସିବାଟା କିଛି ବିଚିତ୍ର ନୁହେଁ, ବରଂ ସ୍ୱାଭାବିକ । ସମସ୍ତେ ପ୍ଲେଟ୍ ହାତରେ ଧରି ବୁଲୁଛନ୍ତି ଏବଂ ପରିଚିତ ଲୋକଙ୍କ ଆଗରେ ଠିଆ ହୋଇପଡୁଛନ୍ତି, ବକ୍ତବ୍ୟ କିଛି ନ ଥିଲେ ମଧ ଯାହାହେଲେ ପଦେ କହୁଛନ୍ତି ।

କମ୍ପାଉଣ୍ଡର ମଧ୍ୟବର୍ତ୍ତୀ ସ୍ଥାନଟିରେ ଖୁଣ୍ଟ ପୋତି ଚାନ୍ଦୁଆ ଟାଣି ଟିକିଏ ଛାଉଣୀ କରାଯାଇଛି । ଯେମିତି ପ୍ରତିଥର ହୁଏ । ଚାନ୍ଦୁଆ ତଳେ ଦୁଇଟା ଲମ୍ବା ଟେବୁଲ୍ ଉପରେ ବଡ଼ ବଡ଼ ଟ୍ରେ'ରେ ରଖାଯାଇଛି ନାନାପ୍ରକାର ଖାଦ୍ୟର ସ୍ତୂପ; ଲୁଣିଆ, ମିଠା, ଶୁଖିଲା ଏବଂ ରସାଳ, ଯେମିତି ସବୁଥର ଥାଏ । ଟେବୁଲ୍ ଧାର ପାଖରେ ଗଦା ଗଦା ଚକ ଚକ୍ ପ୍ଲେଟ୍ ଆଉ ଚାମଚ ରହିଛି ।

ସଦସ୍ୟ-ସଦସ୍ୟାମାନେ ନିଜେ ପ୍ଲେଟ୍ ଚାମଚ୍ ସଂଗ୍ରହ କରି ଇଚ୍ଛା ଅନୁସାରେ ଖାଦ୍ୟ ଜିନିଷ ଉଠାଇ ନେଇ ବୁଲି ବୁଲି ମୁହଁକୁ ଦୁଇପ୍ରକାର ସଚଳ କରିଦେଇଛନ୍ତି । ତେଣୁ ମିଷ୍ଟର ବୋଷ୍ ଆଉ ମିସ୍ ସୋମ୍ ଯେ ଖାଦ୍ୟଜିନିଷ ହାତରେ ଧରି ମୁହାଁମୁହିଁ ହେଲେ, ଏ କଥାଟାକୁ କାହାରି ଚାହିଁ ଦେଖିବାର କଥା ନୁହେଁ ।

ଅଧିବେଶନ ଆୟୋଜନର କର୍ତ୍ତା ଭଦ୍ରଲୋକ ବେଶ୍ ଖୁସିବାସିଆ ଲୋକ । ଏହି 'ନବଜୀବନ ଭବନ'ର ହର୍ତ୍ତାକର୍ତ୍ତା ବିଧାତା ଶୋଭନ ତରଫ୍‌ଦାର୍-ଯେ ହେଉଛନ୍ତି ଏ ପ୍ରତିଷ୍ଠାନର ପ୍ରତିଷ୍ଠାତା । ତେବେ କମିଟି ଅଛି । କମିଟିର ମତରେ ହିଁ ସବୁ କିଛି ବ୍ୟବସ୍ଥା ହୁଏ ।

ସେମାନଙ୍କ ମତରେ ଅଧିବେଶନ ଦ୍ୱାରା ବୋର୍ଡ଼ରମାନଙ୍କ ଭିତରେ ଆଳାପ-ପରିଚୟ ହେବାର ସୁଯୋଗ ମିଳେ, ଘଷରା ଜୀବନରେ ଉତ୍ସବର ସ୍ପର୍ଶ ସ୍ୱାଦ ଅନୁଭବ କରିହୁଏ । ବନ୍ଧୁ ମଧ୍ୟ ମିଳନ୍ତି ।

କିନ୍ତୁ ଏ 'ନବଜୀବନ ଭବନ'ର ବାସିନ୍ଦାମାନଙ୍କର ଆଉ ଏବେ ନୂଆ କରି ବନ୍ଧୁତ୍ୱ କରିବାର କ୍ଷମତାର ବାକି କ'ଣ ଅଛି ? ପ୍ରତ୍ୟେକେ ନିଜ ନିଜର କାହାଣୀ କହିବାକୁ ଯେତେ ବ୍ୟସ୍ତ, ଅନ୍ୟର କାହାଣୀ ଶୁଣିବାକୁ ସେତେ ବ୍ୟସ୍ତ ନୁହନ୍ତି । ଆଉ ସେ କାହାଣୀ ନିଜ ନିଜର ଦୁଃଖର ଅଥବା ରୋଗବ୍ୟାଧିର । ତେଣୁ କାହାରି ସଙ୍ଗେ ସହଜରେ କାହାରି ଘନିଷ୍ଠତା ହୁଏ ନାହିଁ । ତେବେକେ ମୋଟାମୋଟି ବର୍ଷକୁ ଚାରିଥର ମିଳନ ମେଳା ପାଇଁ ସମସ୍ତେ ଉତ୍ସୁକ ଥାଆନ୍ତି । ଏମିତି ଦିନରେ ସମସ୍ତେ ନିଜ ନିଜର ଦାମିକା ପୋଷାକରେ ସଜ୍ଜିତ ହୋଇ କମ୍ପାଉଣ୍ଡ୍ ଭିତରକୁ ଆସି ଜମା ହୁଅନ୍ତି ।

ସାଧାରଣତଃ ଦୁଇଟି ବିଭାଗର ବାସିନ୍ଦାମାନଙ୍କ ଭିତରେ ଦେଖାସାକ୍ଷାତ୍‌ର ସେଭଳି ବ୍ୟବସ୍ଥା ନାହିଁ । ମହିଳା ଓ ପୁରୁଷମାନଙ୍କ ବ୍ଲକ୍ ଅଲଗା ।

ମିଳନମେଳା ଅଧିବେଶନଟି ହୁଏ ଏହି ଦୁଇଟା ବ୍ଲକ୍‌ର ମଧ୍ୟବର୍ତ୍ତୀ ଏହି କମ୍ପାଉଣ୍ଡ୍‌ରେ ।

ଏହି ନବଜୀବନ ଭବନରେ ଯେଉଁମାନେ ରହିବାକୁ ଆସନ୍ତି; ସେମାନେ ତାଙ୍କ ନିଜ ନିଜର ପରିବାରରେ ଯାହା ହୁଅନ୍ତୁ ପଛକେ, 'ପରିଚୟ'ରେ କେହି ଫୋପାଡ଼ିଦେବା ଭଳି ମଣିଷ ନୁହନ୍ତି । ଉଚ୍ଚ ଉଚ୍ଚ ପଦସ୍ଥ ରିଟାୟାର୍ଡ଼ ବ୍ୟକ୍ତିମାନେ ଏବଂ ଧନବତୀ ବିଧବା ବା ଦି'ଚାରିଜଣ ଧନବତୀ କୁମାରୀମାନେ ହିଁ ଏଠାରେ ସ୍ଥାନ ପାଆନ୍ତି । କାରଣ ହେଉଛି ଏ ଜାଗାର ଚାର୍ଜ ।

ଚାର୍ଜଟି ରୀତିମତ ମୋଟା ଅଙ୍କର । ତେବେ ତାହା ଏଠାର ବ୍ୟବସ୍ଥା ପକ୍ଷରେ ଅସଙ୍ଗତ ନୁହେଁ । ଆଧୁନିକ ସୁଖସୁବିଧାଯୁକ୍ତ ଏହି ସମ୍ପୂର୍ଣ୍ଣ ନିଜସ୍ୱ ଏପାର୍ଟମେଣ୍ଟ୍-ଗୁଡ଼ିକର ବ୍ୟବସ୍ଥାରେ କିଛି ଖୁଣ ମିଳିବ ନାହିଁ । ଉତ୍ତମାନର ଖିଆପିଆ, କମନ୍‌ରୁମ୍, ରଙ୍ଗୀନ୍ ଟି.ଭି., ଟେଲିଫୋନ୍ ଏବଂ ସର୍ବଦା ଡାକ୍ତରଙ୍କ ସୁବ୍ୟବସ୍ଥା . ରହିଛି !

ଏସବୁ ସୁବିଧା ଭୋଗ କଲାଭଳି ଆର୍ଥିକ ଅବସ୍ଥା ଯେଉଁମାନଙ୍କର ଅଛି ସେମାନେହିଁ ଆସନ୍ତି ଏଠାରେ ରହିବାକୁ । ଭିତରର କାରଣଟା ଅବଶ୍ୟ ପରମାର୍ଥ

ଅଥବା ଅନର୍ଥଘଟିତ । ସେ କଥା କେହି ପ୍ରଘଟ କରନ୍ତି ନାହିଁ । ତାହା ଆଭିଜାତ୍ୟ ନୁହେଁ ।

ସେ ଯାହାହେଉ ମୋଟ ଉପରେ ଏମାନେ ଭଲରେ ରହିଛନ୍ତି ।

ଅନ୍ତତଃ ଦେବଜ୍ୟୋତି ଓ ଉତ୍ତମା !

ଦେବଜ୍ୟୋତି ଆଗେଇ ଆସି କହିଲେ- ନମସ୍କାର ମିସ୍ ସୋମ୍ ! ଭଲ ଅଛନ୍ତି ତ ?

ଉତ୍ତମା ମଧ୍ୟ ତାର ଆଲୋକ ଫୁଟି ଉଠିଥିବା ମୁହଁରେ ଟିକିଏ କୌତୁକ ହସ ହସି ହାତର ପ୍ଲେଟ୍‌ଟାକୁ ଚାହିଁ କହିଲା– ସିଙ୍ଗଡ଼ାଟା ଭାରି ଭଲ ହୋଇଛି ।

ଦେବଜ୍ୟୋତି ଟିକିଏ ଚମକି ଯାଇ କହିଲେ– ଆପଣ ବୋଧହୁଏ ସିଙ୍ଗଡ଼ାର ଭକ୍ତ ? ଆଶ୍ଚର୍ଯ୍ୟ ?

ସେହି ଚମକିବାଟାକୁ ଲକ୍ଷ୍ୟକଲା ଉତ୍ତମା, କହିଲା– କାହିଁକି, ଆଶ୍ଚର୍ଯ୍ୟର କ'ଣ ଅଛି ?

ଦେବଜ୍ୟୋତି କହିଲେ– ସୁଯୋଗ ପାଇଲେ ଦିନେ କହିବି ।

ଉତ୍ତମା ଭାବିଲା– ଏଥିରେ ପୁଣି ସୁଯୋଗ ପାଇ କହିବାର କ'ଣ ଅଛିରେ ବାପା !.. ସେଦିନ ମଧ୍ୟ ଉତ୍ତମାର ନାଁ ଜାଣିପାରି ବୁଢ଼ା ଭଦ୍ରଲୋକ ଚମକି ପଡ଼ିଥିଲେ ଏବଂ ନିଃଶ୍ୱାସଟିଏ ଛାଡ଼ି କହିଥିଲେ- ଆଶ୍ଚର୍ଯ୍ୟ !

ଉତ୍ତମା ଯେତେବେଳେ କୌତୁକରେ କହିଥିଲା– ଆଶ୍ଚର୍ଯ୍ୟ କାହିଁକି ? ମତେ ମାନୁନି ?

ଦେବଜ୍ୟୋତି ଲଜ୍ଜିତ ହୋଇଥିଲେ– ସେ କଥା ଭାବିବେନି । ଅନ୍ୟ ଗୋଟାଏ କାରଣ ଅଛି, ସୁଯୋଗ ପାଇଲେ ଦିନେ କହିବି ।

ମନେ ମନେ ଟିକିଏ ହସିଲା ଉତ୍ତମା । ଚିରକୁମାରୀ ଉତ୍ତମା ଆଜି ହାଲୁକା ବାଦାମୀ ରଙ୍ଗର ଜରିଧଡ଼ିଆ ଟାଙ୍ଗାଇଲ୍ ଶାଢ଼ୀ, ଧଡ଼ି ସହିତ ମ୍ୟାଚ୍ କରିଥିବା ବ୍ଲାଉଜ୍ ପିନ୍ଧିଛି । ହାତରେ ପଟେ ପଟେ ସରୁ ସୁନାବାଲା, ବେକରେ ସରୁ ସୁନା ହାର ପିନ୍ଧିଛି । କାନରେ ପିନ୍ଧିଛି ମୁକ୍ତା ବସାଯାଇଥିବା ଟପ୍ । କାନ ପାଖରେ କେଶର ଶୁଭ୍ରତା ସୂଚାଇ ଦେଉଛି ବୟସ । କିନ୍ତୁ ଖୋଷାଟା କଳା । ଆଉ କପାଳର ବାଳଗୁଡ଼ିକ ଈଷତ୍ କୁଞ୍ଚୁକୁଞ୍ଚିଆ ଧରଣର ବୋଲି ମୁହଁର ଲାବଣ୍ୟ ଅଟୁଟ ରହିଛି ।

ଅବଶ୍ୟ ଏଠାରେ ଆହୁରି ତିନିଜଣ ଚିରକୁମାରୀ ଅଛନ୍ତି । ସେମାନେ ମଧ୍ୟ ରଙ୍ଗୀନ୍ ଶାଢ଼ୀ ପିନ୍ଧନ୍ତି, ତେବେ ସବୁଠାରୁ ବେଶି ଉଲ୍ଲେଖଯୋଗ୍ୟ କଥା– ରାତିରେ ଶୋଇଲା ଆଗରୁ ଉଭମାର ଦାନ୍ତର ପଟିଗୁଡ଼ିକ ଖୋଲି କାଚ ଗିନାରେ ଓଦାକରି ରଖିବାକୁ ପଡ଼େ ନାହିଁ । ଯାହାକି ଏଠାର ସ୍ତ୍ରୀ-ପୁରୁଷ ପ୍ରାୟ ସମସ୍ତଙ୍କର ଦରକାର ପଡ଼େ । ସେମାନଙ୍କର ମୁଖ ଗହ୍ୱରରେ ବତ୍ରିଶି ଜଣଙ୍କୁ ଖୋଜି ପାଇବାର ଚେଷ୍ଟା କରିବା ବିଡ଼ମ୍ବନା ।

ବିଧବା ମଧ୍ୟ ଅଛନ୍ତି । ତେବେ ସମସ୍ତେ ଯେ ଥାନୀ ପିନ୍ଧନ୍ତି ତା ନୁହେଁ, ଅନେକେ ସରୁ ଧଡ଼ିବାଲା, ଦି' ଚାରିଜଣ ଓସାରିଆ ଧଡ଼ିବାଲା ଲୁଗା ପିନ୍ଧନ୍ତି । ସେମାନଙ୍କର ଧୀରେ ଧୀରେ ଆଖି ଖୋଲୁଛି । ଦେଖୁଛନ୍ତି ଏବେ କେହି ଖାଇବା ପିଇବାରେ ଏତେ ବାଛବିଚାର କରୁନାହାନ୍ତି । ସତୁରୀ, ଅଶୀ, ପଞ୍ଚାଅଶୀ ସବୁ ବୟସର ଅଛନ୍ତି, ତେବେ ଏଠି ସମସ୍ତେ ବେଶ୍ ଫିଟ୍‌ଫାଟ୍ ରହିଛନ୍ତି ।

ଏ ସମସ୍ତଙ୍କୁ ନେଇ 'ନବଜୀବନ ଭବନ' ।

ଆଉ ଶୋଭନ ତରଫ୍‌ଦାର୍ ଏମାନଙ୍କୁ ସବୁବେଳେ ଶୋଭନ ସୁନ୍ଦର ଦେଖିବାକୁ ଚାହାନ୍ତି । ଏଭଳି ଅଧିବେଶନରେ ଯେ ଖାଲି ଖାଇବା - ପିଇବାଟା ଆକର୍ଷଣୀୟ ହୁଏ ତା ନୁହେଁ, ଆହୁରି ଗୋଟିଏ ଆକର୍ଷଣୀୟ ଆୟୋଜନର ବ୍ୟବସ୍ଥା ମଧ୍ୟ ଅଛି । ଯାହାକୁ କୁହାଯାଇପାରେ 'ଆଫ୍‌ଟାର୍ ଡିନର୍ ଲେକ୍‌ଚାର୍' ।

ଖିଆପିଆ ପରେ ଟିକିଏ ସଭା ହୁଏ, ଶୋଭନ ଯାହାର ନାଁ ଦେଇଛନ୍ତି 'ଆତ୍ମପ୍ରକାଶର ଆସର' ।

ଏକଦା ଯେ ଗୀତପଟୀୟସୀ ଥିଲେ, ତାଙ୍କୁ ଟିକିଏ ହାରମୋନିୟମ୍ ଆଗରେ ବସିବାକୁ ସୁଯୋଗ ଦିଆଯାଏ । ଯେ 'ଭାଷଣ ପଟୁ' ସେ ଟିକିଏ ସ୍କୋପ୍ ପାଆନ୍ତି । ଗଳ୍ପ, କବିତା ପାଠ ମଧ୍ୟ ଅଛି । ଅର୍ଥାତ୍ ଦେହ ଜୀର୍ଣ୍ଣ ହେଲେ ମଧ୍ୟ ମନ ଏବେ ମଧ୍ୟ ତାଜା ରହିଛି ।

ଏଠାର ଡାକ୍ତର ଦୀପକ ଘୋଷାଲ୍ ଶୋଭନଙ୍କର ବାଲ୍ୟବନ୍ଧୁ । ପ୍ରକୃତରେ ଦୁଇଜଣଙ୍କ ପରିକଳ୍ପନା ଏବଂ ଚେଷ୍ଟାରେ ଏ 'ଭବନ' । ଶୋଭନ ବିରାଟ ବଡ଼ ଲୋକଙ୍କ ପୁଅ । ଅବିବାହିତ । ତେଣୁ ସମାଜସେବାମୂଳକ କାର୍ଯ୍ୟର ପ୍ରେରଣାରେ ନିଜର ସେବା ଧର୍ମର ଉପକରଣ ହିସାବରେ ବାଛି ନେଇଛନ୍ତି ଏହିସବୁ ବୁଢ଼ା ବୁଢ଼ୀମାନଙ୍କୁ ।

କିନ୍ତୁ ଭବନଟି କେବଳମାତ୍ର ଅବସ୍ଥାପନ୍ନ ଅଭିଜାତମାନଙ୍କ ପାଇଁ କାହିଁକି ?

ସେ କଥାର ଉତ୍ତର ମଧ୍ୟ ଶୋଭନଙ୍କ ଜିଭର ଅଗରେ ରହିଛି ।

ଯେଉଁମାନେ ସାରାଜୀବନ ପ୍ରତିଷ୍ଠା ଭିତରେ କଟାଇଛନ୍ତି, ପ୍ରଭୁତ୍ୱ କରି ଆସିଛନ୍ତି, ସେମାନଙ୍କ ପକ୍ଷରେ ଶେଷ ବୟସରେ ନଖଦନ୍ତହୀନ ଅବସ୍ଥାରେ ହୀନସ୍ତା ହେଉଥିବା ଜୀବନ ଅତି ବେଶି ଦୁଃସହ, ଦୁଃଖଜନକ । ଅଥଚ ବାର୍ଦ୍ଧକ୍ୟ ପ୍ରତି 'ସୌଜନ୍ୟ ସମ୍ଭ୍ରମ'ର ମାନସିକତା ସମାଜଜୀବନରୁ କ୍ରମେ ଉଭାଇ ଯାଉଛି ।

ଭାବଟି ଯେପରି– ଏକଦା ତମେ ନିଜକୁ ଘେରି ବିଶାଳ 'ଐଶ୍ୱର୍ଯ୍ୟ ବଳୟ' ଗଢ଼ି ତୋଳିଥିଲ ? ଗଢ଼ି ତୋଳିଥିଲ ବର୍ତ୍ତମାନ ଥିବା ଏହି ପରିବାରଟିକୁ ? ....ହଁ ତମେ ଗଢ଼ିଥିଲ ତ ଗଢ଼ିଥିଲ । ନିଜର ମନଇଚ୍ଛାରେ ହିଁ ଗଢ଼ିଥିଲ । ତା' ବୋଲି ପରବର୍ତ୍ତୀ ପ୍ରଜନ୍ମ ମଧ୍ୟ ତମକୁ ମଧ୍ୟମଣି କରି ରଖି ସମସ୍ତେ ନିଜକୁ ଫାଲ୍‌ତୁ କରି ବୁଲିବେ ? କାହିଁକି ହେ ବାବୁ ? ସେମାନେ କ'ଣ ବଢ଼ିପାଣିରେ ଭାସି ଆସିଛନ୍ତି ? ତମେ ଯଦି ଅଶୀ-ନବେ-ଶହେ ବର୍ଷ ଧରି ପୃଥିବୀର ମାଟି କାମୁଡ଼ି ପଡ଼ି ରହ, ସେମାନେ ତାଙ୍କ ଜୀବନଟା ପାଇବେ କେବେ ?... ହେଲେ ତମକୁ ତ କେହି ଘରୁ ଚାଲିଯିବାକୁ କହୁନି । ଖାଲି କହୁଛନ୍ତି, "ଏବେ ମଧ୍ୟ ସବୁକଥାରେ ନାକ ଗଳାଇବାକୁ ଆସନି" । ଖାଅ, ପିଅ, ଶୁଅ, ନିଜର ସୀମା ଭିତରେ ପଡ଼ି ରହିଥାଅ । ତମର ସେହି ଅଧିକାରର ସୀମାଟିକକୁ ଲଂଘନ କରି ଯଦି କର୍ତ୍ତୃତ୍ୱ କରିବାକୁ ଆସ, ଅଥବା ସେଇଟା କରି ନ ପାରିଲେ 'ଏବର' ସବୁକିଛିକୁ ସମାଲୋଚନା କରିବାକୁ ଆରମ୍ଭ କର, ତା'ହେଲେ କାହାର କ'ଣ ଯାଉଛି ତମର ମାନସମ୍ମାନକୁ ବଞ୍ଚେଇ ରଖିବାକୁ ? କଥାରେ ତ ଅଛି ନିଜ ମାନ ନିଜେ ରଖ ।

ହେଲେ ବୁଢ଼ାମାନଙ୍କର ଯେ ସେହି ବୋଧଟାହିଁ ଲୁପ୍ତ ହୋଇଯାଏ । ସେମାନେ ନିର୍ଲିପ୍ତ ହୋଇ ରହିବାକୁ ରାଜି ନୁହନ୍ତି । ସବୁକଥାରେ ହିଁ ଭାଗ ନେବାକୁ ଆସନ୍ତି । ଆଉ ତା'ପରେ ? ... ମାନ ସମ୍ମାନ ଗଲା ବୋଲି ଆହତ ଅଭିମାନରେ ଚୁର୍‌ମାର୍ ହୋଇଯିବା ! କାହିଁକି ?

ଶୋଭନ ତାଙ୍କର ଡାକ୍ତର ବନ୍ଧୁ ଦୀପକ ଘୋଷାଲଙ୍କୁ କହିଲେ- ଅବୋଧ ହେଲେ ମଧ୍ୟ ସାରାଜୀବନ ଯେଉଁମାନେ ପ୍ରଭୁତ୍ୱ ଜାରି କରି ରହିଛନ୍ତି ସେମାନଙ୍କ ପକ୍ଷରେ ଅବଜ୍ଞାର ଜୀବନ ବହୁତ କଷ୍ଟକର ।

ଅତଏବ ସେଥିପାଇଁ ଏହି ଅଭିଜାତ ‘ଓଲ୍ଡ୍ ହୋମ୍’ ସ୍ଥାପିତ ହେଲା ।

ଏମାନଙ୍କୁ ଧରି ବହୁତ କିଛି ପରୀକ୍ଷାନିରୀକ୍ଷା କରିଗଲେ ସେ । ଆଉ ଚେଷ୍ଟା କଲେ ଏମାନଙ୍କର ଏହି ହତାଶ ସ୍ତିମିତ ଜୀବନରେ ଟିକିଏ ଆନନ୍ଦ ଆଉ ବୈଚିତ୍ର୍ୟ ଯୋଗାଇଦେବାକୁ । ସେଇଥିପାଇଁ ବସୁଛି ଏ ଆତ୍ମପ୍ରକାଶର ସଭା । ଡାକ୍ତର ଯାହାକୁ କହନ୍ତି ଛୁଆ ଭୁଲାଇବା ସଭା । ଶୋଭନ ହସନ୍ତି, କହନ୍ତି-- ସେଇଟା ମଧ ଅନ୍ୟାୟ ନୁହେଁ । ସମସ୍ତଙ୍କର ତ ଏବେ ଦ୍ୱିତୀୟ ଶୈଶବ କାଳ ଚାଲିଛି ।

ଦେବଜ୍ୟୋତି ଟିକିଏ ବିହ୍ୱଳ ହୋଇ କହିଲେ– ଆପଣ ଆଜି ଭାରି ସୁନ୍ଦର ଦିଶୁଛନ୍ତି...ମାନେ ଆପଣଙ୍କର ରୁଚିଟା..

ହାତର ପ୍ଲେଟ୍‌ଟାକୁ ରଖିଦେବାକୁ ଯାଉଥିଲା ଉରମା । ଦେବଜ୍ୟୋତି ହଠାତ୍ କହିଲେ-ଠିଆ ହୁଅନ୍ତୁ । ଟିକିଏ ଠିଆ ହୁଅନ୍ତୁ । ପ୍ଲିଜ୍ !

ତା’ପରେ ପରେ ଦ୍ରୁତପାଦରେ ଆଗେଇ ଯାଇ ଆଉ ଗୋଟିଏ ପ୍ଲେଟ୍‌ରେ ଚାରିଟା ସିଙ୍ଗଡ଼ା ନେଇ ଆସି କହିଲେ– ଏଇକ୍ଷଣି ଆଉ ଗୋଟାଏ ଟ୍ରେ ଗରମ ସିଙ୍ଗଡ଼ା ଦେଇଗଲା !

-କି ଆଶ୍ଚର୍ଯ୍ୟ ! ତା ବୋଲି ଆପଣ ପୁଣି ଏତେଗୁଡ଼ାଏ-

— ଏତେ ଆଉ କ’ଣ ? ଆପଣ ତ ପିଲାଲୋକ-

ପିଲାଲୋକ ! ହସି ପକାଇ ଉରମା କହିଲା– ଭାଗ୍ୟକୁ କେହି ଶୁଣି ନାହାନ୍ତି ।

— ଶୁଣିଥିଲେ ବି ମୁଁ ତ ଭୁଲ୍ କହିନି । ଏ ଭବନର ଅଧିବାସୀମାନଙ୍କ ଭିତରେ ଆପଣଙ୍କ ବୟସ ସବୁଠାରୁ କମ୍ ।

ପୁଣି ହସିଦେଇ ଉରମା କହିଲା– ତଥାପି ପଞ୍ଚଷଠୀ ।

ଟିକିଏ ଦ୍ୱିଧାକରି ଦେବଜ୍ୟୋତି କହିଲେ– ଜଣାପଡୁ ନାହାନ୍ତି । ଆପଣ ଅନ୍‌ମ୍ୟାରେଡ୍ । ସଂସାର ଜୀବନରେ ବିଶେଷ କିଛି ଆଘାତ ପାଇବାର କଥା ନୁହେଁ । ସତରେ ଜାଣିବାକୁ ଇଚ୍ଛା ହେଉଛି ଆପଣ ଏଠି କାହିଁକି ରହିଛନ୍ତି ? ଦୁଷ୍ଟାମିର ହସ ହସି ଉରମା କହିଲା– ସୁଯୋଗ ପାଇଲେ କହିବି ।· ଭାଷାଟା ଦେବଜ୍ୟୋତିଙ୍କ ଭାଷାର ନକଲ।

ବିହ୍ବଳ ହୋଇଯାଇ ଦେବଜ୍ୟୋତି କହିଲେ– ଠିକ୍ ଅଛି ମୋ'କଥା ମୁଁ ଆଜି କହିବି ଆପଣଙ୍କୁ ।.... ଆଚ୍ଛା, ଟିକିଏ ବସିଲେ ହୁଅନ୍ତା ।

କମ୍ପାଉଣ୍ଡଟାଯାକ ବିଛାଇ ରଖାଯାଇଛି ବେତର ଚଉକି ।

ଟିକିଏ ଦୂରରେ ସେହିପରି ଦୁଇଟି ଚଉକିକୁ ପାଖକୁ ଟାଣି ଘନିଷ୍ଠ ହୋଇ ବସିଥିଲେ ମିସେସ୍ ନାଗ୍ ଏବଂ ମିସେସ୍ ଚଉଧୁରୀ । ଦୁଇଜଣଙ୍କ କାନକୁ କମ୍ ଶୁଭେ । ସେଥିରେ ପୁଣି ସେମାନେ କଥା ହେଲେ- ମିସ୍ ସୋମ୍‌ର କଥା ଦେଖ ! ହି ହି ହୋଇ ହସୁଛି, ପୁଣି ସେ ଦେବଜ୍ୟୋତି ନା କ'ଣ ପିଅନ ଭଳି ଘୂରୁଛି ତା ପଛରେ ! ସିଙ୍ଗଡ଼ା ନେଇ ଦେଲା ପରା ! ଛିଃ ! ଏ ବୟସରେ...

ଆଉ ଟିକିଏ ଦୂରରେ ପାଖାପାଖି ହୋଇ ବସିଥିବା ଦୁଇଜଣ ମହିଳା ମଧ କଥା ହେଲେ- ଦେଖିଲ, ପ୍ରଜାପତି ଉଡୁଛନ୍ତି । ଯେମିତି ଭାରି ୟଙ୍ଗ୍ ।

- ଖାଲି ସେତିକି ନୁହେଁ । ବୋଷ୍‌ଙ୍କ ସଙ୍ଗେ କଥାବାର୍ତ୍ତାର ଭଙ୍ଗୀଟା ଦେଖୁଛନ୍ତି ? ଖାଲି ହସି ହସି ଗଡ଼ିଯାଉଛନ୍ତି । ଏ ବୟସରେ ଏତେ ହସାହସି କ'ଣ ଥାଇପାରେ ?

- ସେଇୟା ତ ଭାବୁଛି ।

- ଦେଖନ୍ତୁ, ଦୁଇଜଣଯାକ କେମିତି ପାଖକୁ ଚଉକି ଟାଣିନେଇ ବସିଲେ !

ଦେବଜ୍ୟୋତି ଓ ଉତ୍ତମା ଏକାନ୍ତ ସ୍ଥାନଟିକୁ ଚଉକି ଟାଣିନେଇ ବସିଥିଲେ । ଉତ୍ତମା କହିଥିଲା– ସବୁଥିରେ ଆପଣ ଏମିତି 'ଆଶ୍ଚର୍ଯ୍ୟ' ବୋଲି କଥାଟା କାହିଁକି କହନ୍ତି ?

ଦେବଜ୍ୟୋତି ଟିକିଏ ଇତସ୍ତତଃ କରି କହିଲେ– ମାନେ, ଆପଣଙ୍କୁ ପ୍ରଥମଦିନ ଦେଖି ମୁଁ ଚମକି ପଡ଼ିଥିଲି । ହଁ ଭୀଷଣ ଭାବରେ । କାହିଁକି ଜାଣିଛନ୍ତି ? ଆପଣଙ୍କ ଚେହେରା ସଙ୍ଗେ ମୋର ପରଲୋକଗତା ସ୍ତ୍ରୀର ଆଶ୍ଚର୍ଯ୍ୟ ସାଦୃଶ୍ୟ ରହିଛି ।

- ସତ ନା କ'ଣ ? ହଁ, ଜଗତରେ ଏମିତି ହୁଏ । କେତେବର୍ଷ ହେଲା ସେ ମରିଗଲେଣି ?

- ଦଶ ବର୍ଷ । ତାଙ୍କୁ ହରାଇ- ବୁଝି ତ ପାରୁଛନ୍ତି ? ହେଲେ ଏ ଦଶବର୍ଷ ଭିତରେ ଏଭଳି ମୁଁ ଆଉ କାହାରିଠି ଦେଖିନି । ମୁହଁର ଭଙ୍ଗୀ, ଏମିତିକି କଥା କହିବାର ଭାବ-

ଉତ୍ତମା ବାଧ ହୋଇ କହିଲା– ତା’ହେଲେ ତ ଆଶ୍ଚର୍ଯ୍ୟ ବୋଲି କହିବାକୁ ପଡ଼ିବ ।

- ଖାଲି ସେତିକି ନୁହେଁ, ଦି’ଜଣଙ୍କ ନାଁ ମଧ୍ୟ ଏକା !

- ଏଁ ? ସତରେ ଏକା ନାଁ ?

- ଜାଣନ୍ତି ? ଆପଣ ସିଙ୍ଗଡ଼ା ଭଲପାଆନ୍ତି ଶୁଣି ମୋ ଦେହରେ କଣ୍ଟା ମାରିଗଲା । ସେ ମଧ..ଠିକ୍ ଏଭଳି ପୋହଳାର ମୁଦିଟିଏ ସେ ମଧ ପିନ୍ଧିଥିଲେ । ଆପଣ ମୁଣ୍ଡର ବାଳଗୁଡ଼ାକୁ ଯେମିତି ଆଡ଼େଇ ଦେଉଛନ୍ତି, ସେ ମଧ ଠିକ୍... ।

ଉତ୍ତମା ମନେ ମନେ କହିଲା, ତମେ ଜଣେ ସ୍ତ୍ରୀ-ସ୍ମୃତି ବ୍ୟାଧିଗ୍ରସ୍ତ ଲୋକ । ସବୁଠାରେ ସେହି ପରଲୋକଗତାର ଛାୟା ଦେଖୁଛ ।

ବାହାରେ ଅଳ୍ପ ହସି କହିଲା– ତାଙ୍କର ଅଶରୀରୀ ଆତ୍ମା ଆସି ମୋ ଉପରେ ଲଦି ହୋଇନି ତ ?

ଆହତ କଣ୍ଠରେ ଦେବଜ୍ୟୋତି କହିଲେ– ମିସ୍ ସୋମ୍ !

କୌତୁକ ଭାବଟାକୁ ଧରିରଖି ଉତ୍ତମା କହିଲା– ମୋ’ ଭଳି ଅଧମ ଉପରେ ଲଦି ହୋଇ ସେ ସ୍ୱର୍ଗରୁ ଓହ୍ଲାଇଲେ-

- ଆପଣ ଅଧମ ?

- ଅଧମ ଛଡ଼ା ଆଉ କ’ଣ କୁହନ୍ତୁ ତ ? ସଂସାରର ପରିସ୍ଥିତିରେ ଗୋଟାଏ ବରପାତ୍ର ଜୁଟିନି । ସାରାଜୀବନ ଧରି ଶିକ୍ଷିକା ପଦରେ ରହି ଚାରିବର୍ଷ ହେଲା ଅବସର ନେଇଛି । ଯେଉଁ ଘର-ସଂସାର ପାଇଁ ସବୁ କଲି ଶେଷବେଳକୁ ସେ ଛାଞ୍ଚୁଣୀ ମାରି ବିଦାୟ କରିଦେଲା ।

ଦେବଜ୍ୟୋତି ଆହତ କଣ୍ଠରେ କହିଲେ– ଭାବି ହେଉନି ।

ଏ ସମୟରେ ଘଣ୍ଟି ବାଜିଉଠିଲା । ମାଇକ୍‌ରେ ଘୋଷଣା କରାଗଲା, ମେଘ ଜମି ଯାଇଥିବାରୁ ଆତ୍ମପ୍ରକାଶର ସଭା ଅଳ୍ପ ବନ୍ଦ ହେଉଛି । କାଲି ଚାରିଟାବେଳକୁ ହେବ ।

ଉତ୍ତମା ଉପରକୁ ଚାହିଁ କହିଲା– ସତରେ ତ ମେଘ ଭର୍ତ୍ତି ହୋଇଯାଇଛି ।

× × × × × × ×

ଦେବଜ୍ୟୋତିଙ୍କ ଉତ୍ତମା ବୋଷ୍ ସଙ୍ଗେ ଉତ୍ତମା ସୋମ୍‌ଙ୍କର କେତେ ସାମଞ୍ଜସ୍ୟ ଅଛି ସେ କଥା ଠିକ୍ କହିହେବନି; କିନ୍ତୁ ସେ ଉତ୍ତମା ଦେବଜ୍ୟୋତିଙ୍କ

ଦୁଇମହଲାର ବିରାଟ ଘରଟାରେ ଘୁରି ବୁଲି ଯେପରି ବିଦ୍ୟୁତ୍‌ର ଉଜ୍ଜ୍ୱଳ ଆଲୋକରେ ଆଲୋକମୟ କରିଦେଉଥିଲେ ଚାରିଆଡ଼କୁ । ଉତ୍ତମା ନାମ ତାଙ୍କର ସାର୍ଥକ ହୋଇଥିଲା । ପ୍ରକୃତରେ ସେ ଥିଲେ ଉତ୍ତମ ।

ଏକାକୀ ସେ ହିଁ ଯେପରି ଏତେବଡ଼ ଘରଟାକୁ ସରଗ କରି ରଖୁଥିଲେ ଏବଂ ଦେବଜ୍ୟୋତି ନାମକ ମଣିଷଟାକୁ ପ୍ରାୟ ଶିଶୁତୁଲ୍ୟ ଭାବରେ ଦେଖାଶୁଣା କରି ଆଗୁଳି ରଖୁଥିଲେ । ସେହି ଉତ୍ତମା ଦିନେ ବିନା ନୋଟିସ୍‌ରେ ହଠାତ୍ ଚିରସ୍ତବ୍ଧ ହୋଇଯାଇ ଘରଟିକୁ ନିଃଶବ୍ଦ କରିଦେଇ ଚାଲିଗଲେ ।

ତା'ପରେ ଦେବଜ୍ୟୋତିଙ୍କ ପୁଅ ବୋହୂ ଯେମିତି ଭୁଲିଗଲେ ସେ ଘରଟାରେ ଦେବଜ୍ୟୋତି ନାମରେ ଲୋକଟିଏ ଅଛି । ସେମାନେ ହଠାତ୍ ଆବିଷ୍କାର କଲେ ଯେ, ତାଙ୍କ ମା'ଙ୍କର ଢିଲା ବୁଦ୍ଧି ଆଉ ଶିଥିଳ ଭଙ୍ଗୀ ଫଳରେ ଏପର୍ଯ୍ୟନ୍ତ ଯାହା ହୋଇଛି ତାହା 'ପାଗଳାମି' ଛଡ଼ା ଆଉ କିଛି ନୁହେଁ । ଚାକର ଚାକରାଣୀଗୁଡ଼ାକ ଯେମିତି ଢଙ୍ଗରେ ବଢ଼ି ଆସିଛନ୍ତି ନା ତାକୁ କୁହାଯିବ 'ରାମରାଜତ୍ୱ' । ଅତଏବ ସେହି ଦମ୍ପତି ସବୁଯାକ ତ୍ରୁଟିକୁ ଶୀଘ୍ର ମରାମତି କରିବାକୁ ଆରମ୍ଭ କରିଦେଲେ । ଜଣେ ନିର୍ବୋଧ ବ୍ୟକ୍ତିତ୍ୱହୀନ ଲୋକର ପରାମର୍ଶ ନେବା ଦରକାର ବୋଲି ଭାବିଲେନି ।

ଉତ୍ତମା ବଞ୍ଚିଥିଲାବେଳେ ଏହି ସାବାଳକ ଦମ୍ପତିଙ୍କୁ ନାବାଳକ ତୁଲ୍ୟ ଗଣ୍ୟ କରି କେବଳମାତ୍ର ଖୁଆଇଛନ୍ତି, ଆଦର କରିଛନ୍ତି, ଯଥେଚ୍ଛା ବିହାରରେ ମଦତ୍ କରିଛନ୍ତି ଏବଂ ସେତିକିରେହିଁ ବୋଧହୁଏ 'ପୁଅ-ବୋହୂଙ୍କୁ ମୁଁ କେତେ ସୁଖରେ ରଖିଛି' ଭାବି ଆତ୍ମପ୍ରସାଦ ଅନୁଭବ କରିଛନ୍ତି ।

ସେହି ସୁଖରେ ରଖିବାର ନମୁନା ହେଉଛି– ସେମାନଙ୍କର ସବୁ କଥାରେ ମୁହଁ ଗଳାଇବା । ସବୁ କଥାରେ ପଶିଯାଇ ଉପରେ ପଡ଼ି ଭଲ କରିବାକୁ ଯିବା !

- ଏ ପୁଅ, ଏ ଦି'ପହରେ ଫେରେ ବୋହୂକୁ ନେଇ କୁଆଡ଼େ ଯାଉଛୁ ଯେ ? ଖରା ବାଜିଲେ ବୋହୂର ମୁଣ୍ଡ ବଥାଏ ଜାଣିଛୁ ତ ? ଦି'ପହର ଖରାରେ ଫେରେ ସିନେମା ଦେଖିଯିବା କ'ଣ ? କ'ଣ ସନ୍ଧ୍ୟାର ସୋ ଗୁଡ଼ାକ ବନ୍ଦ ହୋଇଗଲାଣି ? ଛି, ଛି, ଛି...କ'ଣ ବୋହୂ ଏତେ ସଜେଇ ହେଉଛୁ ଯେ ? କୁଆଡ଼େ ଯାଉଛୁ ବୋଧହୁଏ ? କ'ଣ ବାପଘରକୁ ? ଏ ମା ! ହେଲେ ଆଗରୁ କହିଥାନ୍ତୁ ନା ? ଖାଲି ହାତରେ କ'ଣ ଝିଅମାନେ ବାପଘରକୁ ଯାଆନ୍ତି ? ହି,

ହି, ହି । ଏ ପୁଅ, ନେ ଏ ଟଙ୍କାଟା ଧରେ, ଗଲାବେଳେ ମିଠା କିଣି ନେଇଯିବ ! କଥା ଶୁଣ ! ମୁଁ କାହିଁକି ଦେବି ? ମୋର ସମ୍ବନ୍ଧୀ ଘର ନା ?

-ହଁରେ, ପୁଅ ଖାଇ ବସିବା ଆଗରୁ ବୋହୂ ଔଷଧ ଖାଇଲା ଦେଖିଲି । କି ଔଷଧ ବାପା ? ...ଏମିତି ଖାଲିରେ ପୁଣି ମଣିଷ ଔଷଧ ଖାଏ ? ଦେହଫେହ ଖରାପ ହୋଇନି ତ ? କାହାକୁ ପୁଣି ଦେଖାଇବାକୁ ଯାଇଥିଲୁ ଯେ ? କାହିଁକି, ଆମର ଡାକ୍ତରବାବୁ କ'ଣ ଦୋଷ କଲେ ?

- ହଁ ଲୋ ବୋହୂ, କେତେବେଳେ କୋଉଠିକୁ ଯାଇଥିଲୁ ଯେ ? ଡାକି ଉତ୍ତର ପାଇଲିନି, ଖୋଜିଲି । ଚିନ୍ତା ହୋଇଗଲା ! ...ବାହାରିଗଲାବେଳେ ଟିକେ କହିଦେଇ ଯିବୁ ତ ? କ'ଣ କହୁଛୁ ? ଅଳ୍ପ ସମୟ ପାଇଁ ? ତା'ହେଲେ ମଧ୍ୟ, ଝିଅ, ଗଲାବେଳେ ଟିକେ କହିଦେଇ ଯିବା ଭଲ ।

- ଏ ବୋହୂ, ବିଭା ଭୋଜିକୁ ଏମିତି ଗୋଟେ ମଡ଼ମଡ଼ିଆ ଛପା ଶିଲ୍କ ଶାଢ଼ୀ ପିନ୍ଧି କାହିଁକି ଯାଉଛୁ ? ଜରୀ, ବନାରସୀ ଖଣ୍ଡୁଆ ସବୁ କୁଆଡ଼େ ଗଲା ? ଦେଖୁଛି ଗହଣା ମଧ୍ୟ କିଛି ପିନ୍ଧିନୁ ଦେହରେ ! ଆଃ, ତୁ ରହିଲୁ ପୁଅ, ଶାଶୁବୋହୂଙ୍କ ଭିତରେ ତ କଥା ଚାଲିଛି, ତୁ ପୁଣି କଥା କହିବାକୁ ଆସୁଛୁ କାହିଁକି ? ନା,ବାପା, ଖଣ୍ଡେ ଭଲ ଶାଢ଼ୀ ବାହାରକରି ପିନ୍ଧେ । ...ଏ ମା', ଏତିକିରେ ଫେରେ ପରିଶ୍ରମ କ'ଣ ?...ଯାହା କହ ପଛକେ ବାହାଘର ପାଇଁ ଯୋଗ୍ୟ ସାଜସଜ୍ଜା କରିନୁ... ।

- ବାସନ୍ତୀ ! ଭାଇନା-ଭାଉଜଙ୍କ ଘରର ତକିଆଖୋଳଗୁଡ଼ାକ ଖୋଲି ଆଣି ଧୋବା-ବାକ୍ସରେ ପକାଇଲୁ । ମଇଳା ହୋଇଗଲା ପରି ମନେହେଉଛି । କ'ଣ ହେଲା ? ଭାଉଜ ମନା କଲା ? ଏ ମା, ସେ ପୁଣି କ'ଣ ? କାହିଁକି ? ... କ'ଣ କହିଲୁ ପୁଅ ? ଏତେ ଆଡ଼େ ସବୁ ନଜର ଦେବାର ଦରକାର ନାଇଁ ମୋର ? ଓ, ପୁଅର ବୁଦ୍ଧି ଦେଖ, କଥା ଦେଖ, ଆରେ ବାପା; ଘରର ଘରଣୀକୁ ତ ସହସ୍ରଲୋଚନ ହେବାକୁ ପଡ଼େ, ବୁଝିଲୁ ? ...ହଁ ଲୋ ବାସନ୍ତୀ, ଚାରୁ-ମା'ର ନାତିଟା କୁଆଡ଼େ କହିବାକୁ ଆସିଛି ତା ଗୋସେଇଁ ମା' ଆସିପାରିବେନି ? ଜର ହେଇଚି ?...ପିଲାଟାକୁ ଟିକେ ଠିଆ କରେଇ ରଖ ବାବା । ପୂଝାରୀକୁ କହିଦେ ଦି'ଖଣ୍ଡ ରୁଟି ଆଉ ତରକାରି ଦେଇଦେବେ । ଆହା, ବୁଢ଼ୀମା' ଜରରେ ପଡ଼ିଲା, କିଏ ରାନ୍ଧିବ ? ପିଲାଟା କ'ଣ ଖାଇବ ?...ସେ କି କଥା ବୋହୂ ? ଠିକା ଲୋକଙ୍କ ପାଇଁ ଏତେ ଚିନ୍ତା କରିବାର କିଛି ଦରକାର ନାଇଁ ? କ'ଣ ଯେ କହୁଛୁ ବୋହୂ ?

ଗୋଟେ ସାନ ପିଲା ଖାଇବାକୁ ପାଇବ କି ନାହିଁ ଖବର ନେବାକି ?...ପୁଅ, ତୁ ସେଦିନ କହୁଥିଲୁ ଯେ ତୋର ଅଫିସର ବଡ଼ବାବୁ ନା କ'ଣ କାହାର ଝିଅ ବାହା ହେବ ! କାଇଁ, ତତେ ତ ନିମନ୍ତ୍ରଣ କଲେନି ? କହିଛନ୍ତି ? ଏଁ ? କାଇଁ କହିନୁ ତ ? ବଡ଼ବାବୁଙ୍କ ଝିଅକୁ କ'ଣ ଦେବୁ ? ଅନ୍ୟ ସମସ୍ତଙ୍କ ସହିତ ମିଶି ଯାହା କିଛି ହେଲେ ଦେଇ ଦେଲେ ଚଳିବ ? କାହିଁକି, ତୁ ଅଲଗା କରି ଖଣ୍ଡେ ଭଲଶାଢ଼ୀ କିଣି ନେଇ ଯା । ଝିଅ ବିଭା ବୋଲି କଥା ! ...ତୋ ହାତରେ ଟଙ୍କା ନ ଥିଲେ ମୋଠୁ ନଉନୁ ? ସେଥିରେ କ'ଣ ତୋର ମାନହାନି ହୋଇଯିବ ? ନା ନା, ମୋ କଥା ଶୁଣ୍ । ଯା ଚଟ୍‌କିନା ଶାଢ଼ୀ ଖଣ୍ଡେ କିଣି ଆଣେ । ତୋର ତ ପସନ୍ଦ କରିବାର ଯୋଉ କ୍ଷମତା, ବୋହୂକୁ ସାଙ୍ଗରେ ନେଇଯାଉନୁ ।

କଥା । କଥା । କଥା । ସବୁବେଳେ କଥାର ଚାଷ ଚାଲିଛି ।

– ଆଜିର ଖବରକାଗଜ ପଢ଼ିଛୁରେ ? ପଢ଼ିନୁ ? କାଗଜ ନ ପଢ଼ି ରହିଛୁ କେମିତି କିରେ ? ଲେଖିଛି- ଯାଃ ! ଚାଲି ତ ଗଲୁ.. ଆରେ ଦେଖିଛୁ ସାହି ପିଲାଙ୍କର ଖେଳପଡ଼ିଆଟାରେ ଦଶମହଲା ଘର ତିଆରି ହେଉଛି । ନିଃଶ୍ୱାସ ନେବାକୁ ପବନ ଟିକିଏ ମଧ୍ୟ ରହିବନି ବାପା । ...ବୋହୂ, ଦେଖିଲୁଣି ସୁନାର ଦାମ୍ କ'ଣ ହେଲାଣି ?.. ଏ ମା ! ନ କିଣିଲେ ମଧ୍ୟ କ'ଣ ଖବର ରଖିବିନି ? ମୋ' ବିଭାଘରବେଳେ ସୁନା ଦାମ ଶହେ ଟଙ୍କା ହୋଇଯାଇଥିଲା ବୋଲି କେତେ ହାୟ୍, ହାୟ୍, କରିଥିଲେ !

ବୋହୂ ତାର ବରକୁ କହୁଥାଏ, ତମର ବାପା ଏମିତି ମାଟିର ଗଣେଶ ହୋଇ ବସି ରହିଛନ୍ତି କାହିଁକି ଜାଣିଛ ? ଜଣେ ଏକୁଟିଆ ପାଞ୍ଚଜଣଙ୍କ କଥା କହି ଚାଲିଛନ୍ତି ବୋଲି ଜୀବନରେ କଥା କହିବାର ସ୍କୋପ୍ ନ ପାଇ ନ ପାଇ ଏମିତି ହୋଇଛନ୍ତି ! ଅନବରତ କଥା ଶୁଣି ଶୁଣି ମୋର ତ ଆଲାର୍ଜି ଆସିଗଲାଣି କଥା କହିବାକୁ । ଗଳାରୁ ଶବ୍ଦ ବାହାର କରିବାକୁ ଇଚ୍ଛା ହେଉନି ।

କିନ୍ତୁ ସେ ସମସ୍ୟା ଶେଷ ହୋଇଯାଇଛି । ତେବେବେ ପୁଅ-ବୋହୂଙ୍କର କଥା ହେବାରେ ଆଲାର୍ଜିଟା ରହିଯାଇଛି । ସେମାନେ ନିଃଶବ୍ଦରେ ଯିବାଆସିବା କରୁଛନ୍ତି, ଧୀରେ କଥା କହୁଛନ୍ତି, ମୃଦୁ ଗଳାରେ ଏବଂ ଚିରଦିନର କଲ୍ଲୋଳିତ ସମୁଦ୍ର-ଧ୍ୱନିରେ ଅଭ୍ୟସ୍ତ ଯେଉଁ ଲୋକଟି ହଠାତ୍ ଶବ୍ଦହୀନ ଜଗତ୍ ଭିତରକୁ ଆସିଗଲେ, ତାଙ୍କୁ ଡିଷ୍ଟର୍ବ କରିବାକୁ ଆସୁ ନାହାନ୍ତି ।

ଖିଆପିଆ ଦେଖିବା ? ସେଥିପାଇଁ ତ ପୂଝାରୀ ଅଛି । ବାସନ୍ତୀ ଅଛି ।

ବାସନମାଜିବା ଲୋକ ଚାରୁର ମା' ଦିନେ ସକାଳେ ବାବୁଙ୍କ ଘରେ ଛୋଟ ଟେବୁଲରେ ରଖାଯାଇଥିବା ଥାଳି ଆଣିବାକୁ ଯାଇ ଗାଲରେ ହାତ ଦିଏ- କହେ- ଏ ମା, ଏ କି କଥା ! ବାବୁ ରାତିରେ ଖାଇ ନାହାନ୍ତି ? ଯେମିତି ସେମିତି ଘୋଡ଼ିଆ ହୋଇ ରହିଛି । ଦେହ ଖରାପ ହେଇନି ତ ? ଏ ମା, କୁଆଡ଼େ ଯିବି ମୁଁ ? ହେଲେ ଘରଲୋକେ ତ ଫେରେ ଟିକିଏ ଖବର ନେବା କଥା ।

ଦେବଜ୍ୟୋତି ସାଙ୍ଗେ ସାଙ୍ଗେ ଠାରି ଦେଇ ଚୁପ୍ ରହିବାକୁ କହିଛନ୍ତି- ଖାଇବା ଜିନିଷଗୁଡ଼ାକ ଚୁପ୍‌କିନା ଫୋପାଡ଼ି ଦେଇ ଆସେ ଚାରୁ ମା' । ଖାଇବାକୁ ଭୁଲିଗଲି ଶୁଣିଲେ ସେମାନେ ଭାରି ରାଗିବେ ।

କେବେ କେବେ ଗେଞ୍ଜି ତଉଲିଆ ହାତ ପାଖରେ ନ ପାଇ ନିଃଶବ୍ଦରେ ଗୋଟା ଘରଟାକୁ ବୁଲି ଖୋଜି ଦେଇ ଆସି ଅତି ଧୀରେ କହିଛନ୍ତି- ବାସନ୍ତୀ, ମୋର ଗେଞ୍ଜିଟା କେଉଁଠି ଶୁଖା ହୋଇଥିଲା ଜାଣିଛୁ ? ଖୋଜି ପାଉନି ।

ବାସନ୍ତୀ ହୁଏତ ଫ୍ରକ୍ ଦୋହଲାଇ ଗଜ ଗଜ ହୋଇ କହିଛି- କେଜାଣି ! ଚାରୁ ମା' କୋଉଠି ଶୁଖେଇଥିଲା । ବୋଧହୁଏ କିଲିପ୍ ଲଗେଇ ନ ଥିଲା । ଉଡ଼ି ଗଲାଣି । ଯାଉଛି ଭାଉଜଙ୍କୁ ପଚାରିବି ।

ଆଉ ସେହିକ୍ଷଣି ହୁଏତ 'ଭାଉଜ' ନିଃଶବ୍ଦରେ ଜିନିଷଟାକୁ ହାତରେ ଧରି ଆଣି ସାମନା ଚଉକି ଉପରେ ରଖିଦେଇ ଚାଲିଯାଇଛନ୍ତି ।

ଏହାକୁ ଯଦି ଦୁର୍ବ୍ୟବହାର ବୋଲି କୁହାଯାଏ ତେବେ ତ ନାଚାର । ଆଶ୍ଚର୍ଯ୍ୟ ପ୍ରକାର ଥଣ୍ଡା ବ୍ୟବହାର ଏମାନଙ୍କର । ଯେଉଁ ଲୋକଟାର ଆଖିରେ କିଛି ପଡ଼େନି କି ଡାକି କାହାକୁ ସେ କଥା କହେନି, ଦିନେ ସେ ମଧ୍ୟ ହଠାତ୍ ଡାକି କହିଥିଲା- କାହିଁ ପୂଝାରୀଟାକୁ ମୁଁ ଦେଖୁନି ? କ'ଣ ଗାଁକୁ ଯାଇଛି ?

ପୁଅ କହିଲା- ତାକୁ ବିଦାୟ କରିଦିଆଯାଇଛି ।

- ବିଦାୟ କରିଦେଇଛ ? ପୂଝାରୀକୁ ? ସେ କି କଥା ।

ପୁଅ କହିଲା- ଏଥିରେ ଆପଣ ଏତେ ଅପ୍‌ସେଟ୍ କାହିଁକି ହେଉଛନ୍ତି ଯେ ? ଲୋକଟା ଏବେ ବେଶି ତେଜ ଦେଖାଉଥିଲା । କ'ଣ ସେ ନ ଥିବାରୁ ଆପଣଙ୍କର ଖିଆପିଆରେ କିଛି ଅସୁବିଧା ହେଉଛି ? ଯାହା ହେଉଛି, ତାହା ଜଣାଇବେ ।

ଦେବଜ୍ୟୋତି ଥା ଥା ମା ମା ହୋଇ କହିଲେ– ନା, ନା, ମୋର ପୁଣି ଅସୁବିଧା କ'ଣ ? ମାନେ କ'ଣ କି ବୋହୂର..ମୁଁ ତ ଜାଣିପାରିନି ଯେ ପୂଝାରୀ ନାହିଁ ।

– ତା'ହେଲେ ମଧ୍ୟ ଅସୁବିଧା ହେଲେ କହିବେ ।

ଏହାକୁ ମଧ୍ୟ ନିଶ୍ଚୟ ଦୁର୍ବ୍ୟବହାର କୁହାଯିବନି ? ଦେବଜ୍ୟୋତିଙ୍କ ଝିଅ ଯଦି ହଜାର ହଜାର ମାଇଲ ଦୂରରେ ବସି କହିବ– ତା ବାପା ସଙ୍ଗେ ଏମାନେ ଦୁର୍ବ୍ୟବହାର କରୁଛନ୍ତି, ତା'ହେଲେ ତ ମହାବିପଦ ।

ଦେବଜ୍ୟୋତି ବୋଷ୍ ନାମକ ଲୋକଟାର ପ୍ରାଣଟା ଯେ କାହିଁକି ପଳାଇବି, ପଳାଇବି କଲା ସେ କଥା ଭଗବାନ୍ ଜାଣିଛନ୍ତି । ସେହି ତାଡ଼ନାରେ ହିଁ ଚିରନିରୀହ ଭୀରୁ ଲୋକଟି ଏଭଳି ଗୋଟାଏ ଅସୀମ ସାହସିକ କଥା କରିଦେଲେ ଯେ ଯାହା ତାଙ୍କର ସେ ଥଣ୍ଡା ପୁଅ-ବୋହୂଙ୍କ ମୁଣ୍ଡରେ ନିଆଁ ଲଗାଇ ଦେଇଥିଲା ।

ପରେ ଅବଶ୍ୟ ଦେବଜ୍ୟୋତି ଭାବିଛନ୍ତି-ମୁଁ ଏ କଥା କରିପାରିଲି କେମିତି ।

କିନ୍ତୁ କରିଥିଲେ । ଖବରକାଗଜରେ ବିଜ୍ଞାପନ ଦେଖି ଚିଠି ଲେଖାଲେଖି ବ୍ୟବସ୍ଥା ପକ୍‌କା କରିଦେଇ ଚାଲିଆସିଥିଲେ ଏ ନବଜୀବନ ଭବନକୁ ।

ପୁଅବୋହୂଙ୍କୁ ନ କହି ? ଚୁପ୍ ଚାପ୍ ହୋଇ ?

ପାଗଳ । ତାହା କ'ଣ କେବେହେଲେ ସମ୍ଭବ ? ଲୋକଟି ବରାବର ଗୋଟାଏ ଉଚ୍ଚ ପୋଷ୍ଟରେ ଚାକିରି କରି ଆସିନି ? ଏମିତି ଅସଙ୍ଗତ କାର୍ଯ୍ୟ କରିପାରିବ ? ତେବେ ସାହସ କରି ଅଥବା ଶକ୍ତି ସଞ୍ଚୟ କରି ମୂଳରୁ ଚୂଳ କହିପାରିନି । ଖବର କାଗଜ ବିଜ୍ଞାପନର କଟିଂ ଟିକକ ଏବଂ ଶୋଭନର ଉତ୍ସାହଜନକ ଭାଷାରେ ଲେଖା ଚିଠିଟାକୁ ଏକାସଙ୍ଗେ ଆଗରେ ଧରି ଦେବଜ୍ୟୋତି କହିଥିଲେ– ଦେଖେ ପୁଅ, ଏ ଆଡ୍‌ଭାଟାଇଜ୍‌ମେଣ୍ଟଟା ଦେଖି ହଠାତ୍ ଭୁସ୍‌କିନା ଚିଠି ଖଣ୍ଡେ ପଠାଇ ଦେଇଥିଲି ସେମାନଙ୍କ ନିୟମକାନୁନ୍ ଜାଣିବାକୁ-ହେଇ ଦେଖି, ସେମାନେ ଉତ୍ତର ଦେଇଛନ୍ତି । ପଢ଼େ ।

କଥାଟା ଦେବଜ୍ୟୋତି କହିଥିଲେ ନିଜର ସ୍ୱଭାବଗତ ଭଙ୍ଗୀରେ ଟିକିଏ ଟିକିଏ ରହି ରହି ଅପରାଧୀ ଭାବରେ । ଉତ୍ତମା ବୋଷ୍ ଚାଲିଗଲା ପରଠାରୁ ଦେବଜ୍ୟୋତିଙ୍କର ମନେହୁଏ-ଏମାନଙ୍କୁ ମୁଁ ଅସୁବିଧାରେ ପକାଉଛି ।

ଥରଟିଏ ମାତ୍ର ଚାହିଁଦେଇ ପୁଅ ବରଫ ଶୀତଳ କଣ୍ଠରେ କହିଥିଲା- ଆପଣଙ୍କର ଏତେ ଅସୁବିଧା ହେଉଥିଲା ବୋଲି ତ କାହିଁ ଜାଣିବାକୁ ଦେଇ ନାହାନ୍ତି ! ଏକାବେଳେ ଚରମ ଡିସିଜନ୍ ନେଇଯାଇ-

ଦେବଜ୍ୟୋତି ଥା ଥା ମା ମା ହୋଇ କହିଥିଲେ, ଆରେ ସତରେ କ'ଣ ଏକବାରେ ଚାଲିଯାଉଛି ? ମାନେ-

ବୋହୂ କୌଣସି ଦିନ କୌଣସି କଥାରେ ନ ଥାଏ । ତେବେ ସେଦିନ ରହିଥିଲା । ସେ ମଧ ସେମିତି ବରଫ ଥଣ୍ଡା ଗଳାରେ କହିଥିଲା— ଅର୍ଥଟା ବୁଝାଇବା ପାଇଁ କଷ୍ଟଟା ପାଇବା ଦରକାର ନାହିଁ । ମାନେ ଭାବିଥିଲି ଏତେ ବାଇଦ ବଜାଇ ବିଜ୍ଞାପନ ଦେଇଛି— ଫର୍ମ ଟର୍ମ ସବୁତ ଆସିଗଲାଣି ଦେଖୁଛି-

କାତର କଣ୍ଠରେ ଦେବଜ୍ୟୋତି କହିଥିଲେ— ଆରେ ବାପା, ଏ ହେଉଛି ଏମାନଙ୍କୁ ଧରି ଆଣିବାକୁ କହିଲେ ବାନ୍ଧି ଆଣନ୍ତି ଭଳି କଥା । ଖାଲି ଟିକିଏ ଜାଣିବାକୁ ଚାହିଁଥିଲି । ଭାବିଥିଲି-

ପୁଅ ଅଧିକତର ଥଣ୍ଡା ଗଳାରେ କହିଥିଲା— ଓଲ୍ଡ୍ ହୋମ୍ ଜିନିଷଟା ପିକ୍‌ନିକ୍ ସ୍ପଟ୍ ନୁହେଁ ବାପା ! ଆଠ ଦଶଦିନ ରହି ଚାଖି ଚାଲିଆସିବା ଜାଗା ନୁହେଁ । ଠିକ୍ ଅଛି । ଯାହା ଭଲ ବୁଝିଛନ୍ତି କରିଛନ୍ତି । କହିବାର କିଛି ନାହିଁ । ଲୋକଙ୍କ ପାଖରେ ଆମମାନଙ୍କୁ ଅପଦସ୍ତ କରିବେ, ଏଇୟା ଖାଲି-

ହଁ, ଏକଥା କହିଥିଲା ଦେବଜ୍ୟୋତି ପୁଅ । ଏ କଥା କହି ନଥିଲା ଯେ- ଘର ଛାଡ଼ି ଅନ୍ୟଠି ଯାଇ ରହିବେ ? ପାଗଳ ନା କ'ଣ ? ଏ ସବୁ ଖିଆଲ ଛାଡ଼ନ୍ତୁ ତ । ଅଥବା ଏ କଥାଟା ମଧ କହି ନାହିଁ— ଏବେ ଏ ସମୟରେ ଆପଣ ଏମିତି ଗୋଟାଏ ଅଦ୍ଭୁତ ଚିନ୍ତା କରୁଛନ୍ତି ? ଜାଣନ୍ତି— ଏ ସଂସାରରେ ଭାବୀ ବଂଶଧରର ଆବିର୍ଭାବର ସୂଚନା ଦେଖାଦେଇଛି । ମା' ନାହାନ୍ତି ! ଆପଣ ମଧ—

ସେ ଖବରଟା ଜାଣିପାରିଥିଲେ ଦେବଜ୍ୟୋତି କ'ଣ କରିଥାନ୍ତେ କେଜାଣି ! କିନ୍ତୁ ଜାଣିପାରି ନାହାନ୍ତି । ଏଠାକୁ ଆସିବାର କିଛିଦିନ ପରେ ହଠାତ୍ ଶୁଣି ଅବାକ୍ ହୋଇଗଲେ ଯେ ତାଙ୍କର ନାତିଟିଏ ହୋଇଛି ।

ପୁଅ ତ ମଝିରେ ମଝିରେ ଫୋନ୍ କରେ । ସେ ହିଁ ଫୋନ୍‌ରେ ଖବର ଦେଲା ।

ଦେବଜ୍ୟୋତି ହତବୁଦ୍ଧି ହୋଇଯାଇ କହି ପକାଇଥିଲେ- କି ଆଶ୍ଚର୍ଯ୍ୟ ! ହେବାର କଥା ଥିଲା କି ? ଟେଲିଫୋନ୍ ଭିତରଦେଇ ଟିକିଏ ଦୁର୍ଲଭ ହସର ଶବ୍ଦ ଶୁଭିଥିଲା– ହଠାତ୍ ଆକାଶରୁ ପଡ଼ିବା ଭଳି ଜିନିଷ ନୁହେଁ ତ ।

ବ୍ୟସ୍ତ ହୋଇ ଦେବଜ୍ୟୋତି କହିଥିଲେ- ତା'ହେଲେ ଆଜି ଯାଉଛି ଦେଖିବି ।

ପୁଅ କହିଥିଲା- ସେ ତ ଏବେ ତା ମାମୁ ଘରେ ଅଛି ।

- ଓଃ । କେବେ ଘରକୁ ଆସିବ ?

- କହିପାରୁନି । ତାର ଆଈ ଯେତେବେଳେ ଠିକ୍ ଭାବିବେ-

ଶିଶୁର ଆଈଙ୍କର ବୋଧ ବୁଦ୍ଧି ସମ୍ପର୍କରେ ଶିଶୁର ପିତା ଯେ ଯଥେଷ୍ଟ ଆସ୍ଥାବାନ୍, ତାହା ତା'ର କଣ୍ଠରୁ ଧରାପଡ଼ିଲା ।

ତା'ପରେ ?

ତା'ପରେ ବି ପୁଅ ସେମିତି ଉତ୍ସାହ ଦେଖାଇଲାନି । କହିଥିଲା– ଏକାବେଳେ ଅନ୍ନପ୍ରାଶନ ସମୟରେ ଆସିବେ । ବରଂ ଘରେ ଦିନେ ଦି'ଦିନ ରହିବେ ସେତେବେଳେ ।

ସେ ସବୁ ତ ପରବର୍ତ୍ତୀ ଘଟନା । ଚାଲି ଆସିଲାବେଳେ ? ପୁଅ-ବୋହୂ ରାଗରେ ଥମ୍ ଥମ୍ ହୋଇ ରହିଥିଲେ– 'ଯାଇପାରିବନି' ବୋଲି କହି ନ ଥିଲେ ଥରଟିଏ ପାଇଁ ସୁଦ୍ଧା ।

ସେମାନଙ୍କ ରାଗ ଦେଖି ଦେବଜ୍ୟୋତି କହିଥିଲେ କୁଣ୍ଠିତ ହୋଇ - ତା'ହେଲେ କ'ଣ କହୁଛୁ ସେ ସବୁ ଫର୍ମ ଫିଲ୍‌ଅପ୍ କଥାକୁ ଯିବିନି ?

- ମୁଁ କ'ଣ କହିବି ? ଆପଣଙ୍କର ଯାହା ଇଚ୍ଛା ସେଇଯା ହେବ । ଜଣା ତ ପଡ଼ିଲା । ଏଠି ଆପଣଙ୍କୁ ବଡ଼ କଷ୍ଟରେ ରହିବାକୁ ପଡୁଛି ।

- ଆହା, କି ଆଶ୍ଚର୍ଯ୍ୟ, ସେ କଥା କିଏ କହୁଛି ?

- ହଁ, ଅବଶ୍ୟ ସ୍ପଷ୍ଟ କରି କହି ନାହାନ୍ତି । ...ଯାଉ, ଗୋଟିଏ କଥା କହିବା ଦରକାର– ଘର ଟିକସ ଆପଣଙ୍କ ନାଁରେ ଅଛି, ଟେଲିଫୋନ୍ ଇଲେକ୍ଟ୍ରିକ୍ ସବୁ ତ ଆପଣଙ୍କ ନାଁରେ । ଏଗୁଡ଼ାକର ବି ବ୍ୟବସ୍ଥା ଠିକ୍ କରି କହିଦେବେ । ମଟରଗାଡ଼ିଟା ତ ଅବଶ୍ୟ ଆପଣ ମତେ ବ୍ୟବହାର ପାଇଁ ଦେଇ ଦେଇଛନ୍ତି ।

- ବ୍ୟବହାର କରିବାକୁ ଖାଲି କାହିଁକି, ତତେ ତ ଦେଇ ଦେଇଛି- ଟିକସ ହେରିକା, ଏସବୁ ତ ମୋ଼ର ଦେଖିବା କଥା । ଆଉ ତା'ଛଡ଼ା ମୁଁ ତ ଚିରକାଳ ପାଇଁ ଚାଲିଯିବାକୁ ଭାବିନି-ମଝି ମଝିରେ ତ-

କିନ୍ତୁ ଏ ଆଠମାସ ଭିତରେ କ'ଣ ସେ ଘଟନା ଘଟିଛି ? ଘଟିନି । ପୁଅ କେବଳ ଆସିଛି, କହିଛି– ଟେଲିଫୋନ୍ ଇଲେକ୍‌ଟ୍ରିକ୍ ନେଇ ତମକୁ ଆଉ ବ୍ୟସ୍ତ ହେବାକୁ ପଡ଼ିବନି । ଟ୍ୟାକ୍‌ସଟା ଯାହା ବୁଝନ୍ତୁ ।

ଯେମିତି ଅଶେଷ ବଦାନ୍ୟତା ।

କହିଛି ପୁଣି-ଆପଣ କାହିଁକି ଆଉ କଷ୍ଟକରି ଯିବେ ଯେ ? ମୁଁ ତ ଆସିଲି ।

ଦେବଜ୍ୟୋତି ଅବଶ୍ୟ ଏଭଳି ଅଶକ୍ତ ନୁହନ୍ତି ଯେ, ଦକ୍ଷିଣ ସହର ଉପକଣ୍ଠର ଏ ଭବନରୁ ତାଙ୍କ ନିଜର କାଙ୍କୁଳିଆରେ ଥିବା ଘରକୁ ଯିବାକୁ ଅକ୍ଷମ ହେବେ । କିନ୍ତୁ ପୁଅ ବିବେଚକ, ବାପାର କଷ୍ଟ ଲାଘବ କରିବାକୁ ଚାହେଁ ।

ଅସଲ କଥା ହେଉଛି ସେ ଯେ ବାପାଙ୍କୁ ନ ଜଣାଇ ଘରର ଏକ ତାଲାରେ ଭଡ଼ାଟିଆ ରଖିଛି, ସେଇଟା ବାପାଙ୍କ ଦୃଷ୍ଟିଗୋଚର ହେବାଟାକୁ ଯେତେଦିନ ପାରିବ ଆଭଏଡ୍ କରିବାକୁ ପଡ଼ିବ । କିନ୍ତୁ ତାର ବା ଦୋଷ କ'ଣ ? ଦେବଜ୍ୟୋତି ଘରେ ଥିଲାବେଳେ ତାଙ୍କ ପେନ୍‌ସନ୍‌ରେ ତ ଘର ଚଳୁଥିଲା ! ଏବେ ସେଇଟା ପୂରା ସରିଯାଉଛି ଏ ନବଜୀବନ ଭବନରେ ।

ନିଜର ରହୁଥିବା ଘରେ ଭଡ଼ାଟିଆ ରଖିବାଟା ଉତ୍ତମାଙ୍କର ଦୁଇ ଆଖିର ବିଷଭଳି ଥିଲା । ସେହି ଏକାମତ ଦେବଜ୍ୟୋତିଙ୍କର ମଧ୍ୟ, ସେ କହୁଥିଲେ । ଲୋକେ ଏ କଥା କେମିତି କରନ୍ତି ସତରେ ! ଏଥିରେ କିଛି ପ୍ରାଇଭେସି ରହିବ ?

ଏହି ପ୍ରବଳ ମତ ନିକଟରେ ନିରୁପାୟ ସେହି ବୁଦ୍ଧିମାନ୍ ଦମ୍ପତି ଘରେ ବସି ନୀରବରେ ଗର୍ଜୁଥାନ୍ତି– ପ୍ରାଇଭେସି ରହେନି । ଆଉ ଫ୍ଲାଟ୍ ଘରେ ଲୋକେ କେମିତି ରହୁଛନ୍ତି ? ଦଶଇଞ୍ଚ କାନ୍ଥର ଏପଟେ ସେ ପଟେ..ହୁଁଃ । ଏଇଟା ଗୋଟାଏ ସମ୍ପୂର୍ଣ୍ଣ ଆବ୍‌ସାର୍ଡ଼ ଚିନ୍ତା । ଆଜିକାଲିର ଦୁନିଆରେ କିଏ ଏଭଳି ଗୋଟାଏ ପଡ଼ାରେ ଏତେ ବଡ଼ ଗୋଟାଏ ଘରେ ଏମିତି ଜଣେ ଜଣେ ହୋଇ ଫର୍ଚ୍ଚାରେ ରହିବା କଥା ତ ଭାବି ହେଉନି । ଦୁଇଟା ମହଲାରେ ତିନି ଦୁଗୁଣେ ଛଅଟା ଘର । ତା ମଧ୍ୟ କେତେ ବଡ଼ ବଡ଼ । ରହୁଛନ୍ତି ମାତ୍ର ଚାରୋଟି ପ୍ରାଣୀ...ଏଭଳି ମୂର୍ଖାମୀ ଏ ଘର ପକ୍ଷରେହିଁ ସମ୍ଭବ ।

ବୋହୂ କହିଲା– ନିଜ ଗୋଡ଼ରେ କୁରାଢ଼ୀ ମାରୁଛନ୍ତି । ଆମର ତ କହିବାର କିଛି ନାହିଁ । କେବେ କୋଉଦିନ ଝିଅ ଯଦି ବିଦେଶରୁ ଆସିବ, ତା'ପାଇଁ ଘର ସଜା ହୋଇ ରହିଛି । ମୋ' ମା' କହୁଛନ୍ତି– ଏ ଗୋଟାଏ ଧରଣର ପାଗଳାମୀ ।

ସେ ପାଗଳାମୀଟା ଅବଶ୍ୟ ଉତ୍ତମାଙ୍କର ଥିଲା । ହେଲେ ସେ ତ ଘଣ୍ଟାକର ନୋଟିସ ଦେଇ ନିଜର ସଜେଇଥିବା ଘରସଂସାର ଛାଡ଼ି ବିଦାୟ ନେଇଥିଲେ । ସେତିକିବେଳେ ପୁଅ ଥରେ ବାପାଙ୍କ କାନରେ କଥା ପକାଇଥିଲା- ଏଡ଼େ ବଡ଼ ଘରଟାରେ ମାତ୍ର ତିନିଜଣ ! ତଳମହଲାଟା ସହଜରେ ଭଡ଼ା-

ଦେବଜ୍ୟୋତି ଆସ୍ତେ କହିଥିଲେ– ତୋର ମା'ର ତ ଇଚ୍ଛା ନ ଥିଲା ।

ଅତଏବ ଆଉ କ'ଣ କରିଥାନ୍ତେ ? ଘରର ମାଲିକ ତ ଦେବଜ୍ୟୋତି ।

ବାହାରେ ଯେତେ ରାଗ ଅଭିମାନ ଦେଖାଇଥିଲେ ମଧ୍ୟ ଦେବଜ୍ୟୋତିଙ୍କ ଏ ଗୃହତ୍ୟାଗ ସତ୍ ବିବେଚନା ବୋଲି ମନେହୋଇଥିଲା ସେମାନଙ୍କର ।

କାରଣ ଦେବଜ୍ୟୋତିଙ୍କର ନୀରବ ପ୍ରତିବାଦର ଦୃଷ୍ଟି ବଡ଼ ଭୟଙ୍କର ଥିଲା ।

ଯଦିଚ ସବୁଦିନ ପାଇଁ ଉତ୍ତମାଙ୍କର ସ୍ମୃତି ବିମଣ୍ଡିତ ଘରଟିକୁ ଛାଡ଼ିଦେବେ ବୋଲି ଦେବଜ୍ୟୋତି ଭାବି ନ ଥିଲେ । ଏଠାକୁ ଆସିଲା ପରେ ଗୋଟିଏ 'ଆଶ୍ଚର୍ଯ୍ୟ' କଥା ଦେଖି ଅଟକିଗଲେ । ଦୁଇବର୍ଷ ପୂର୍ବରୁ ଉତ୍ତମା ସୋମ ଚାଲିଆସିଥିଲା ନବଜୀବନ ଭବନକୁ ।

ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଦେବଜ୍ୟୋତି । ଚେହେରାରେ ସେତେ ମେଳ ନ ଥିଲେ ମଧ୍ୟ ଭାବ, ଭଙ୍ଗୀ, ହସ, ରୁଚି ଯେପରି ସେ ଉତ୍ତମା ଆଉ ଏ ଉତ୍ତମାର ଏକାପରି ମନେହେଲା ଦେବଜ୍ୟୋତିଙ୍କର ।

ତା'ପରଦିନ ସଭାରେ ଉତ୍ତମା ସ୍ୱଲିଖିତ କବିତାଟିଏ ପଢ଼ିଲା ଆଉ ଦେବଜ୍ୟୋତି ମୁଗ୍ଧ ହୋଇଗଲେ । ସେ କଥା ଜଣାଇଲା ପରେ କହିଲେ– ନିଜ କଥା ତ ଆପଣଙ୍କୁ କହିଲି, ହେଲେ ଆପଣଙ୍କ କଥା କିଛି ଜାଣିଲିନି ।

ହସି ଦେଇ ଉତ୍ତମା କହିଲା– ମୋ' କଥା, ମୋ' କଥାରେ ନୂଆ କିଛି

ନାହିଁ । ମଧ୍ୟବିତ୍ତ ପରିବାରରେ ପ୍ରତି ଘରେ ଘରେ ମୋ ଭଳି ଲୋକ ବାହାରିବେ । ଦିନେ କହିବି, ଆଜି ନୁହେଁ, ଚାଲନ୍ତୁ ସଭାଟା ଆହୁରି ସରିନି ।

ସେଦିନ ଶୋଇବା ପୂର୍ବରୁ ପ୍ରତିଦିନ ଭଳି ପଦ୍ମାସନା ଦେବୀଙ୍କୁ ଦେଖିବାପାଇଁ ଗଲା ଉତ୍ତମା ।

ତେୟାନବେ ବର୍ଷ ବୟସର ଏ ବୁଢ଼ୀଙ୍କର ଜଗତ୍ ସଂସାର ଉପରେ କିଛି ହେଲେ ଅଭିଯୋଗ ନାହିଁ । ଭଗବାନ୍‌ଙ୍କ ପ୍ରହାର ସହି ସହି ଏହି ପର୍ଯ୍ୟାୟରେ ଆସି ରହିଛନ୍ତି । ସବୁବେଳେ ଶୋଇ ରହିଥାନ୍ତି ।

ଉତ୍ତମା ପଚାରିଲା– ମାଉସୀ, କେମିତି ଅଛନ୍ତି ? କ'ଣ ଖାଉଛନ୍ତି ?

କମ୍ପିତ ଗଳାରେ ବୁଢ଼ୀ କହିଲେ– ଖାଇବାକୁ ଆଉ ମନ ଲାଗୁନି ମା' ।

- ତା ହେଲେବି, କିଛି ଟିକିଏ ନ ଖାଇଲେ ନିଦ ହବନି ।

ନିଦ ? ନିଦ କ'ଣ କେବେ ହୁଏ ମା ? ରାତିଟାଯାକ ଚାହିଁଥାଏ । ତମେ ମା' ଟିକିଏ ଖବର ନିଅ, ଆଉ କାହାର ତ ମୁହଁ ଦେଖେନି ।

ଉତ୍ତମା କହିଲା– ମନୋଜ ଆସୁନି ?

ମନୋଜ ଭବନର ସୁପର୍‌ଭାଇଜର୍ ।

ମନୋଜ ? ହଁ, ହଁ, ସେ ଆସେ । ଦୁଇଓଳିଯାକ ଖବର ନିଏ । ବଡ଼ ଭଲ ପିଲା ।

କ୍ଳାନ୍ତିରେ ଆଖି ବନ୍ଦ କଲେ ପଦ୍ମାସନା । ବେଶି ଭାଗ ଏଭଳି ରହୁଥିଲେ । ନିଦ୍ରା ଓ ଜାଗରଣ ଭିତରେ ।

ସେ ହିଁ କୁଆଡ଼େ ନବଜୀବନ ଭବନର ପ୍ରଥମ ଅଧିବାସୀ । ପଦ୍ମାସନା ଦେବୀ । ମହିଳାଙ୍କର କେହି ନ ଥିଲେ । କିଏ କହୁଥିଲା ଶୋଭନ ତରଫ୍‌ଦାର୍‌ଙ୍କର ସେ ଏକ ଆତ୍ମୀୟା । ପଦ୍ମାସନାଙ୍କର ସେହି ଅବସ୍ଥା ଦେଖି ଭବନର ଏ ପରିକଳ୍ପନା ମଥାକୁ ଆସିଲା ଶୋଭନଙ୍କର ।

ପଦ୍ମାସନା ଦେବୀ ଏକଦା ରାଜ-ପରିବାରର ବଧୂ ଥିଲେ । ତାଙ୍କରି ଘରେ ତାଙ୍କର ଯୌବନ ସମୟର ଏକ ନିଷ୍ପ୍ରଭ ହୋଇଥିବା ଫଟୋଗ୍ରାଫ୍ ଝୁଲୁଥିଲା । ରାଣୀ ଭଳି ରୂପ, ରାଣୀ ଭଳି ସାଜସଜ୍ଜା ।

ସେହି ମଣିଷର ଶେଷ ବୟସରେ ଏ ଦୁର୍ଦ୍ଦଶା !

ମନଟା ପୀଡ଼ିତ ହୋଇଯାଇଥିଲା । ଗରିବ-ଦୁଃଖୀମାନଙ୍କର ଦୁଃଖ ତ ଚିରଦିନର ସାଥୀ । ସେମାନଙ୍କ ଦୁଃଖ ମୋଚନପାଇଁ ଆୟୋଜନ ଅଛି । ଦୁଃଖୀଙ୍କ ଦୁଃଖରେ ମଣିଷ କାତର ହୁଅନ୍ତି । କିନ୍ତୁ ଏ ସବୁ 'ଅର୍ଥବାନ୍-ସୁଖୀ-ସମ୍ପନ୍ନ' ଦୁଃଖୀମାନଙ୍କ ଦୁଃଖ ବୁଝନ୍ତି କେତେ ଜଣ ?

ଏମାନଙ୍କ ପାଇଁ ତରଫ୍‌ଦାର୍‌ଙ୍କ ସହାନୁଭୂତି ଉଚ୍ଛୁଳି ଉଠିଲା । ଯେଉଁମାନେ ଚିରକାଳ ସମ୍ମାନ ସହିତ ରହିଛନ୍ତି, ରାଜାର ଆଡ଼ମ୍ବରରେ ରହିଛନ୍ତି ସେମାନେ ଏବେ ଅଧମଠାରୁ ଅଧମ । ଶ୍ୱଶୁରଙ୍କ ଭଙ୍ଗା ରାଜପ୍ରାସାଦରେ ପଦ୍ମାସନା କେତେଜଣ ଦାସଦାସୀଙ୍କୁ ଧରି ନିଜର ନିଃସଙ୍ଗ ଜୀବନ କଟାଉଥିଲେ । ତରଫ୍‌ଦାର୍ ସବୁ ବୁଝିଲେ, ସେମାନେ ଯତ୍ନ କରିବା ତ ଦୂରର କଥା, ଭଲକରି ଖାଇବାକୁ ଗଣ୍ଡେ ମଧ ଦେଉ ନ ଥିଲେ ମାଲିକାଣୀଙ୍କୁ । ଅଥଚ କେଉଁଠାରୁ ଗୋଟାଏ ବଡ଼ ଅଙ୍କର ମାସିକ-ବୃତ୍ତି ନିୟମିତ ଆସୁଥିଲା ।

ତରଫ୍‌ଦାର୍ ଦେଖିଲେ-ଭଙ୍ଗା ପ୍ରାସାଦର ଅନ୍ଦି-ସନ୍ଧିରେ ନାନାପ୍ରକାର ବାସିନ୍ଦା । ସେମାନେ କହିଲେ ଭଡ଼ାଟିଆ ସେମାନେ । କିନ୍ତୁ ପଦ୍ମାସନାଙ୍କ ପ୍ରଧାନ ଭୃତ୍ୟ ସେ କଥାକୁ ଉଡ଼ାଇ ଦେଇ କହିଲା– ଆଶ୍ରୟହୀନ ଲୋକଗୁଡ଼ାଙ୍କୁ ବିନା ପଇସାରେ ରହିବାକୁ ଦେଇଛି ।

ତରଫ୍‌ଦାର୍ ପଚାରିଥିଲେ– ତମେ କିଏ ରହିବାକୁ ଦେବାକୁ ?

- କ'ଣ କରିବି ? ଏଡ଼େ ବଡ଼ ଗୋଟାଏ ଦୈତ୍ୟ ଭଳି ଭଙ୍ଗା ଘର, ଭୂତଘର ଭଳି ପଡ଼ିଥାନ୍ତା, ଦେହ ଛମ ଛମ କରନ୍ତା । ଏମାନଙ୍କୁ ଆଣି ରଖାଇ ଦେଇ ମୁଁ ଟିକିଏ ନିଶ୍ଚିନ୍ତି ପାଇଛି । ଖାଇବାକୁ ପିଇବାକୁ ତ ଦଉନି- ରାଣୀମା'ଙ୍କର ଦେଖାଶୁଣା କରିବାକୁ ଏମାନେ କେତେ ସାହାଯ୍ୟ କରନ୍ତି ।

- ତମର ଏ ରାଣୀମା' ମରିଗଲେ କ'ଣ ହେବ ?

ସେ ଯାହା ବ୍ୟବସ୍ଥା ହେବାର ହେବ ।

- ମରିବା ଆଗରୁ ଯଦି କିଏ ତାଙ୍କୁ ନିଜ ପାଖକୁ ନେଇଯାଏ ?

'ହେଡ୍' ଅବିଶ୍ୱାସର ହସ ହସିଲା, କାହାକୁ ଏମିତି ଭୂତ ଧରିବ ବାବୁ ? ହେଲେ ଆପଣ କ'ଣ ନିଜ ଲୋକ କି ? କେବେ 'ତ ଦେଖିନି ।

ଦେଖି ନାହଁ । ଏଥର ଦେଖିବ ।

ଶୋଭନ ସାରାଜୀବନ ଧରି କ'ଣ ନା କ'ଣ କରିଛନ୍ତି । ଗୀତ-ବାଦ୍ୟ ଖେଳ, ରାଜନୀତି, ସମାଜସେବା ବହୁତ ପ୍ରକାରର । ଖାଲି ବାହା ହୋଇପାରି ନାହାନ୍ତି । ମା' ଆଉ ପୁଅର ସଂସାର । ମା କହନ୍ତି– ପଦରବୁଲାର ଘର ।

ପରିକଳ୍ପନା କାର୍ଯ୍ୟକାରୀ କରିବା ମୂଳରେ ଟାଣୁଆ ମାଟିଟା ଥିଲା । ସହରତଳି ଏ ଅଞ୍ଚଳରେ ତାଙ୍କ ବାପା ଯୋଉ ଛୋଟିଆ ଘରଖଣ୍ଡକ କରି ପକାଇଥିଲେ ତା ସହିତ ସଂଲଗ୍ନ ଥିଲା ଏ ବିରାଟ ଜମିଟା । ଏବେ ଯେଉଁଠି ଭବନ ହୋଇଛି ।

ଅବଶ୍ୟ ବାପା କିଣିଲାବେଳେ ପାଣି ଭଳି ଦର ଥିଲା ଜମିର । ଏ ଅଞ୍ଚଳକୁ କେହି ଆସିବାକୁ ଚାହୁଁନଥିଲେ । ଶୋଭନର ମାମୁ କହିଥିଲେ- ଶସ୍ତା ? ସେଠି ମତେ କିଏ ବିନା ପଇସାରେ ଜମି ଦେଲେ ମଧ ନେଇ ନ ଥାନ୍ତି । ଆଉ ମା' କହିଥିଲେ- ବନବାସ କରିବାକୁ ଆସିଲି ।

ବର୍ତ୍ତମାନ ସେ ଜମିର ଦର ସୁନା ଭଳି । ଅଳ୍ପ ଜମି ବିକିଦେଇ ସେହି ଟଙ୍କାରେ ବାକି ଅଂଶଟା ଉପରେ ଶୋଭନ ଏ ଭବନ ତିଆରି କଲେ । ମନେ ମନେ ଭାବିଥିଲେ- ମୋ' ମା'ର ଆଉ ମୋର ଶେଷ ଗତି ମଧ ହୁଏତ ଏହି ଭବନରେ ହିଁ ହେବ ।

ସେହି ଭବନର ପ୍ରଥମ ସଦସ୍ୟା ହେଉଛନ୍ତି ପଦ୍ମାସନା ଦେବୀ ! ମୃତ୍ୟୁର ଦ୍ୱାର ମୁହଁରେ ଆସି ଠିଆହେଲେଣି ।

ପଦ୍ମାସନାଙ୍କ କକ୍ଷ ଭିତରୁ ବାହାରିଆସି ଉତ୍ତମା ତାର ନିଜର ଘରର ସାମନାରେ ଥିବା ଛୋଟ ବାଲ୍‌କୋନିଟି ଉପରେ ଠିଆହେଲା । ରାସ୍ତା ପ୍ରାୟ ଜନଶୂନ୍ୟ ହୋଇଗଲାଣି । ନିଷ୍ପ୍ରଭ ହେଲାପରି ଦିଶୁଛି ରାସ୍ତାର ଆଲୋକଗୁଡ଼ାକ । ଆଜି ପୁଣି ଆକାଶରେ ମେଘ ଜମିଲାଣି ।

ପଦ୍ମାସନାଙ୍କୁ ଦେଖିଲା ପରେ ମନଟା ଭାରି ବିଷଣ୍ଣ ଲାଗୁଥିଲା । ଏବେ ଏ ମେଘ ଦେଖି ରାତିର ଆକାଶ ଆଡ଼େ ଚାହିଁ ମନଟା ଅଧିକ ବିଷଣ୍ଣ ଲାଗିଲା । ସତରେ ଯଦି ଉତ୍ତମାକୁ ମଧ ଏହି ପଦ୍ମାସନାଙ୍କ ପରି ଏତେଦିନ ବଞ୍ଚିବାକୁ ପଡ଼ିବ ? ଏହି 'ନବଜୀବନ'ରେ ହିଁ ସେଇ ଜୀବନଟାକୁ ଟାଣି ଟାଣି ନେଇ ଶେଷ ଦିନର ଅପେକ୍ଷାରେ ଟାଣି ଟାଣି ନେବାକୁ ପଡ଼ିବ ? କି ସାଙ୍ଘାତିକ ଆଶୀର୍ବାଦର

ଗୋଟିଏ ଭାଷା ଅଛି । ଦୀର୍ଘାୟୁ ହୁଅ । କିନ୍ତୁ 'ଦୀର୍ଘ ଜୀବନ' ଭଳି ଅଭିଶାପ ବୋଧହୁଏ ଆଉ ନାହିଁ ।

ଦୀର୍ଘଜୀବୀ ହେଲେ ଉତ୍ତମା ମଧ୍ୟ ଏଠି ଏଇ ପଦ୍ମାସନୀଙ୍କ ପରି ଶେଷ ଶଯ୍ୟାରେ ଶୋଇ ଋଣ ପରିଶୋଧ କରି ଚାଲୁ ଚାଲୁ ଦିନେ ଶେଷନିଃଶ୍ୱାସ ତ୍ୟାଗ କରିବ ?

କିଛିଦିନ ଆଗରୁ ତ ଉତ୍ତମା ନିଜର ଶେଷ ଦିନର ସେ ଭୟଙ୍କର କଥା ଭାବିଛି ! ଅଥଚ-

ଅଥଚ ଘଟଣାଟା ଏକାବେଳେ ନିରୁତା ମାଟି ଭଳି । ଆଜିକାଲି ଘରେ ଘରେ ସଂସାରୀ ଲୋକଙ୍କ ପାଖରେ ଘଟଣାଟା ପଖାଳ ଭାତ ପରି । ସେଥିପାଇଁ ଦେବଜ୍ୟୋତିଙ୍କ ଆକୁଳତାର ଉତ୍ତରରେ କହିଦେଇଥିଲା ଉତ୍ତମା-ମୋ'କଥା ? ମୋ' କଥାରେ ନୂଆ କିଛି ନାହିଁ ।

ତେବେକେ ଆଶ୍ଚର୍ଯ୍ୟ ! ସେହି ଅଲଣା କଥାର ଛବିଟା ଆଖି ଆଗରେ ଭାସିଲାକ୍ଷଣି ଯୋଡ଼ାଏ ଅଗ୍ନିପିଣ୍ଡ ଭଳି ଆଖି ଦିଶିବାକୁ ଆରମ୍ଭ କଲା....

ରାସ୍ତା ଉପର ଦେଇ ଲୋକଟିଏ ଏତେ ସମୟ ପରେ ଚାଲିଗଲା । ତରତର ହୋଇ ଯାଉଛି- ବୋଧହୁଏ ଆସନ୍ନ ବୃଷ୍ଟିର ସମ୍ଭାବନାରେ । ଆକାଶ ମେଘୁଆ ହେଲେ ସାବଧାନ ହେଇ ହେବ କିନ୍ତୁ, ବିନା ମେଘରେ ଯଦି ପ୍ରବଳ ବୃଷ୍ଟି ହୁଏ ମଣିଷ କେମିତି ସାବଧାନ ହେବେ ?

ଉତ୍ତମା ଭାବିବାକୁ ଚେଷ୍ଟା କଲା- ମରଣକାଳର ଚିନ୍ତାଟା ଛାଡ଼ିଦେଲେ ତ କହିହେବ ଯେ ମୁଁ ଏଠାରେ ଖୁବ୍ ଭଲରେ ଅଛି । ମୋର ସାରା ଜୀବନଟା ତ କଟିଛି ଗୋଟିଏ ଗଳି ଭିତରେ । ଅଥଚ ପିଲାଟି ଦିନରୁ ମୋର ସଉକ ଥିଲା; ରାସ୍ତା କଡ଼ରେ ବାରଣ୍ଡା ଥିବା ଗୋଟାଏ ଘର । ସେ ଘରର କାନ୍ଥଗୁଡ଼ାକ ହେବ ରଙ୍ଗୀନ, ଆଉ ଚଟାଣଟା ହେବ ମୋଜାଇକ୍‌ର ।

ବାପା କହୁଥାନ୍ତି- ଝିଅର ସଉକ୍ କେତେ, ବସିପାରୁନି ଅଥଚ ଶୋଇବାକୁ ଜାଗା ଚାହୁଁଛି ।

ଆଉ ଭାଇନା କାନ୍ଥର ଦାଗ ଧରା ପୁରୁଣା ପଲସ୍ତରାକୁ ଚାହିଁ ଦେଖୁ ଦେଖୁ କହୁଥାଏ- ନିଜର ଘରର ସ୍ୱପ୍ନ ଦେଖୁନି ଲୋ- ତେବେ ଭାବୁଛି ଆଉ ଟିକିଏ ଭଲ ଘରଟିଏ ଦେଖି ଏଠୁ ଚାଲିଯିବି । ଦେଖିବି ବାରଣ୍ଡା ଅଛି କି ନାହିଁ । ଥିଲେ

ଘରଟା ନେବି । ଆଉ ତତେ ସେଭଳି ଗୋଟେ ଭଲ ଘରେ ପ୍ରତିଷ୍ଠିତ କରିବି । ଯେତେ ଇଚ୍ଛା ରାସ୍ତା ଦେଖୁଥିବୁ ।

ଭାଇନାର ସେ ଉଦାର ସ୍ନେହମୟ ମୁହଁଟା ଉତ୍ତମାର ଆଖି ଆଗରେ ଭାସି ଉଠିଲା । ଉତ୍ତମା ନାଁର ଝିଅଟା ଝଙ୍କାର ଦେଇ କହିଲା- ରାସ୍ତା କହିଲେ କ'ଣ ଖାଲି ରାସ୍ତାଟା ଭାଇନା ? ରାସ୍ତାଟା ହେଉଛି ଜଗତ୍‌ର ଚଳମାନ ଜୀବନପ୍ରବାହର ଟିକିଏ ନମୁନା । ହେଲେ ଘର ଖୋଜୁଛ ?

ନାଃ, ଭାଇନା ତା'ର ସେ ସାଧୁ ଇଚ୍ଛାଟାକୁ ପୂରଣ କରି ଯାଇପାରି ନ ଥିଲା ।

କାଳୀଘାଟର ସେଇ ମହାମାୟା ଲେନ୍‌ର ସାନ ପୁରୁଣା ଦୋତାଲା ଘରଟାରେ ତଳମହଲାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲା । ଅର୍ଥାଭାବ ଯୋଗୁଁ ଯେତେ ନୁହେଁ, ଭଡ଼ାଘର ପାଇବାର ଅଭାବରେ ଖାଲି ଚାଲିଗଲା ସେ ।

ସେଇ ଗୋଟିଏ କାରଣରୁ ଉତ୍ତମାକୁ ରହିବାକୁ ପଡ଼ିଛି ସେ ମହାମାୟା ଲେନ୍‌ରେ । 'ବେଶି ଭଡ଼ା ଦେଇ ବଡ଼ ଘରଟିଏ ନେବି' ଏକଥା ହୋଇପାରିନି ।

ଏ ଆଶ୍ରମରେ ଉତ୍ତମାର ଆବାଲ୍ୟର ଚାହିଦା ଅନୁଯାୟୀ ସବୁ ଅଛି । ଚଟାଣ ମୋଜାଇକ୍ ହୋଇଥିବା ଘର, ରଙ୍ଗୀନ କାନ୍ଥ, ଆଟାଚଡ୍ ବାଥରୁମ୍ (କାଳୀଘାଟର ଘରେ ସେ ପ୍ରଶ୍ନ ନ ଥିଲା), ବେସିନ୍, ଶାୱାର, ବେସିନ୍ କାନ୍ଥ ଦର୍ପଣ, ବାଥ୍‌ରୁମ୍‌ରେ ଆଲେଣା ତା' ଛଡ଼ା-ଏ ଛୋଟ ବାରଣ୍ଡାଟା ।

ଶୋଇବା ଘରଟିରେ ମଧ୍ୟ ସବୁ ଯେପରି 'ଯେଉଁଠି ଯାହା ମାନିବ' ସେହିପରି ସଜା ହୋଇଛି । ଆଧୁନିକ ପ୍ୟାଟେର୍ଣ୍ଣ ଯେମିତି ହୁଏ । ତା'ଛଡ଼ା ଚାରି ଓଳି ବିନା ପରିଶ୍ରମରେ ହାତ ପାଖରେ ଖାଦ୍ୟ ଜିନିଷ ପହଞ୍ଚିଯିବା । ଅବଶ୍ୟ ଭଲ ଅର୍ଥର ବିନିମୟରେ । କିନ୍ତୁ ସାରାଜୀବନର ଉପାର୍ଜନ ଅର୍ଥ ତ ସେ ସେହି ମହାମାୟା ଲେନ୍‌ରେ ଖର୍ଚ୍ଚ କରିଦେଇ ଆସିଥିଲା । ସେଥିରେ ତ ଖର୍ଚ୍ଚ ହେଉଛି ବୋଲି କୋଉଦିନ ତାର ମନେହୋଇନି ! କିନ୍ତୁ... ଏ ପାଇବାଟା କ'ଣ ପ୍ରାପ୍ତି ?

କର୍ମଦକ୍ଷତା ଥାଉଣୁ, କର୍ମହୀନ ଜୀବନ କି ଦୁଃସହ !

ଅଥଚ ଯା ଛଡ଼ା ଆଉ ଅନ୍ୟ କିଛି ସିଦ୍ଧାନ୍ତ ଚଟ୍‌କିନା ମନେପଡ଼ିନି ଉତ୍ତମାର । ଅଥବା ହାତ ପାଖକୁ ଆସିନି ।

ଦେବଜ୍ୟୋତି ମଧ୍ୟ କହିଥିଲେ– ଯା ଛଡ଼ା ମୋ' ପକ୍ଷରେ ଆଉ କ'ଣ ସମ୍ଭବ ଥିଲା କହନ୍ତୁ ? ଏକୁଟିଆ ଗୋଟିଏ 'ସଂସାର' ସଜାଡ଼ି ଚାକର-ବାକର ନେଇ ଚଳିବା ? ତା'ତ ମୋ' ପକ୍ଷରେ ଅସମ୍ଭବ ।

ଭଦ୍ରଲୋକ ନିଜର ଅନେକ କଥା କହିଛନ୍ତି । ଏପରିକି ନାତି ହେବା ସମ୍ବାଦରେ ଉତ୍‌ଫୁଲ୍ଲ ହୋଇ ଦେଖିବାକୁ ଯିବାକୁ ଚାହିଁବା କଥାଟା ମଧ୍ୟ କହିଛନ୍ତି । କହିଛନ୍ତି ତାଙ୍କର ପରଲୋକଗତା ଘରଣୀ ନାତି ଦେଖିବାପାଇଁ କିପରି ଆକୁଳ ହେଉଥିଲେ !

ଆଉ ସେସବୁ କହିବା ସଙ୍ଗେ ସଙ୍ଗେ ଆକ୍ଷେପ କରିଥିଲେ- ମୋ କଥା ତ ବହୁତ କହିଲି ମିସ୍ ସୋମ୍, ହେଲେ ଏପର୍ଯ୍ୟନ୍ତ ଆପଣଙ୍କ କଥା କିଛି ଜାଣି ପାରିଲିନି !

ଏବେ ଉତ୍ତମାର ମନେ ହେଲା- ନାଃ, କାମଟା ଠିକ୍ ହେଲାନି । ଏଥର ଦେଖାହେବାର ସୁଯୋଗ ଆସିଲେ କହିଦେବି । ଅସ୍ୱସ୍ତିର କ'ଣ ଅଛି ?

ବାରଣ୍ଡାରେ ଆଉ ଠିଆ ହେଇ ହେଲାନି । ଟୋପା ଟୋପା ବର୍ଷା ପଡ଼ିଲା । ଘର ଭିତରକୁ ଆସି ଶଯ୍ୟାରେ ଶୋଇପଡ଼ି ରିହାର୍ସଲ କରିବାକୁ ଲାଗିଲା ଉତ୍ତମା । କିପରି ଭାରି ହାଲୁକା ଭାବରେ ନିଜ କଥା କହିହେବ ।

କ'ଣ ଆଉ ? 'ମୁଁ' କହି ଆରମ୍ଭ କରିହେବନି । 'ଗୋଟାଏ ଝିଅ' ବୋଲି କହିହେବ । ଅସଲରେ ସେହି ବାଲ୍ୟ-କୈଶୋରର ଦୃଷ୍ଟି ପକାଇଲେ କ'ଣ ପ୍ରକ୍ପିନ୍ଧା ସେ ଝିଅଟାକୁ 'ମୁଁ' ଭଳି ମନେହୁଏ ?

ଅତଏବ ଗୋଟିଏ ଆଦରିଣୀ ଆହ୍ଲାଦିନୀ ଝିଅ ମା'-ବାପା ଆଉ ଭାଇନାର ସ୍ନେହ ଭିତରେ ବହୁତ ସୁଖରେ ଥିଲା, ଝିଅଟାକୁ ଯେତେବେଳେ ଆଠବର୍ଷ ବୟସ, ହଠାତ୍ ତାର ମା' ଆକାଶକୁ ଉଡ଼ିଗଲେ । ସେ କଥା ଯେମିତି ବିନାମେଘରେ ବଜ୍ରପାତ ଭଳି ଘଟିଲା । ପ୍ରଥମରେ ଝିଅଟା ହତବୁଦ୍ଧି ହୋଇଗଲା । ତେବେକେ ବାପାଙ୍କ ଅସହାୟ ଅବସ୍ଥା ଦେଖି ହଠାତ୍ ଯେପରି ଅନେକ ବେଶି ବଡ଼ ହୋଇଗଲା । ଆଉ ସେ 'ବଡ଼' ହୋଇଯିବା ଫଳରେ ଛୋଟ ହାତ ଦୁଇଟାରେ ଘରକୁ ସମ୍ଭାଳି ନେଇ ବାପାଙ୍କୁ ଅବାକ୍ କରିଦେଲା ।

ଅବଶ୍ୟ ସେହିକ୍ଷଣି କଲେଜରେ ଯୋଗ ଦେଇଥବା ଭାଇନା ନରୋତ୍ତମ ମଧ୍ୟ ସାନ ଭଉଣୀଟି ପ୍ରତି ମମତା ରହିଥିବା ଯୋଗୁ ଘରକରଣାର ମାଇପି କାମରେ ମଧ୍ୟ ସାହାଯ୍ୟ କରୁଥାଏ...ଯାଉ, ଏହିପରି ଚାଲୁ ଚାଲୁ ଝିଅଟା ଆଠରୁ

ଅଠରକୁ ଚଢ଼ିଲା । ସେ ମଧ କଲେଜର ଛାତ୍ରୀ ହୋଇଗଲା । ବାପା ଓ ଭାଇନା ଦୁଇଜଣଯାକ ସ୍ନେହରେ ବିଗଳିତ । କାରଣ ଲେଖାପଢ଼ା କରିବା ସଙ୍ଗେ ସଙ୍ଗେ ଘରଟାକୁ ତ ନିପୁଣ ଭାବରେ ଚଳାଇ ନେଲା ଝିଅଟା !

ବିଚରା ଭାଇନା ଲେଖାପଢ଼ାରେ ସେମିତି ଭଲ କରିପାରିଲାନି । ଦୁଇଥର ଖଣ୍ଡେ ବି.ଏ.ରେ ଫେଲ୍ ହୋଇ ପଢ଼ାରେ ଇସ୍ତଫା ଦେଇ ବାପାଙ୍କର ଷ୍ଟେସନାରୀ-ଦୋକାନ 'ସୋମ୍ ଷ୍ଟୋର୍ସ'ରେ ଯୋଗଦେଲା । ବାପାଙ୍କର ପଢ଼ାପଢ଼ି କମ୍ ଥିଲା । ସେଥିପାଇଁ ସେ ଦୋକାନଟିଏ କରିଥିଲେ । ତେବେବି ବଡ଼ ଖୁସୀ ଥିଲେ ମଣିଷଟି । ମଧ୍ୟମ ଧରଣର ସାଧାରଣ ଗୋଟାଏ ଭଡ଼ା ଘର, ତା ମଧ ଟିକିଏ ଗଳି ଭିତରକୁ ଥିଲା । ମନମୁତାବକ ସ୍ତ୍ରୀ ଆଉ ବାଧ ଏବଂ ସ୍ନେହମୟ ପୁଅ ଝିଅ ଦୁଇଟି- ଏହି ସମ୍ବଳ ନେଇ 'ସୁନାର ସଂସାର' ଯେପରି ଗଢ଼ି ଉଠିଥିଲା । ହେଲେ ଭଗବାନ୍ ତ ଗୋଟିଏ ଫୁତ୍କାରରେ ଅନେକ ଉଡ଼ାଇଦେଲେ । ତେବେବି 'ଦେବଭାମ ସୋମ' ନାମକ ସେ ଲୋକଟା ତା'ରି ଭିତରେ ପୁଣି ସୁଖ ସୃଷ୍ଟି କରିଦେଇ ଦିନ କଟାଉଥିଲେ । ତେବେ ମଝିରେ ମଝିରେ ଯେତେବେଳେ ଝିଅ କହୁଥାଏ– ବାପା, ଚାଲ ନା, ଏ ପଚା ଘରଟା ଛାଡ଼ି ବଡ଼ ରାସ୍ତା କଡ଼ରେ ଥିବା ଭଲ ଘରଟିଏ ଦେଖି ଚାଲିଯିବା, ସେତେବେଳେ ଆଶ୍ୱାସନା ଦେଇ କହୁଥିଲେ, ହବ ହବ, ଏକାବେଳେ ନିଜର ଘରଟିଏ ହବ ତମମାନଙ୍କର । ଜମି ଦେଖୁଛି । ପୁଣି ହସି ହସି କହୁଥିଲେ 'ବ୍ରାହ୍ମଣର ଗାଈ' ଖୋଜା ଚାଲିଛି ନା ସେହେତୁ ଡେରି ହେଉଛି ।

କିନ୍ତୁ ସେହି 'ବ୍ରାହ୍ମଣର ଗାଈ'ଟା ମିଳିଲା ନାହିଁ, ଯିଏ କି କମ୍ ଖାଇବ, ଦୁଧ ଦେବ ବେଶି । ଭଲ ପଡ଼ାରେ ରାସ୍ତାକଡ଼ରେ ଜମି ହେବ ଅଥଚ ଦାମ୍‌ରେ ଶସ୍ତା ଥିବ । ସେ କଥା ଆଉ ହୋଇପାରିଲାନି, ସେତେବେଳକୁ ପୁଅ ଝିଅ ଦିଇଟା ବିବାହଯୋଗ୍ୟ ହୋଇସାରିଲେଣି ।

ବାପା କହିଲେ– ନରୁର ବାହାଘରଟା ଆଗେ କରିଦେବା କଥା । ବୋହୂଟିଏ ଘରକୁ ନ ଆସିଲେ ତତେ ଶାଶୁଘରକୁ ପଠାଯିବ କେମିତି ?

ଝିଅ କହିଲା– ମୁଁ ଶାଶୁଘରକୁ ଯିବାକୁ ମରିଯାଉଛି ବୋଲି ତମକୁ କିଏ କହିଲା ? ବୋହୂ ଆଣ, ତା'ଉପରେ ଘରର ବୋଝ ଲଦି ଦେଇ ମୁଁ ବରଂ ଗୋଡ଼ ହାତ ସଳଖ କରି ଅନ୍ୟ କିଛି କାମ କରେ । ମୋର ପିଲାଦିନର ସ୍କୁଲ ଆଦର୍ଶ ବାଳିକା ବିଦ୍ୟାଳୟରେ ପ୍ରାଇମେରୀ କ୍ଲାସ୍‌ର ଗୁରୁମା ପଦର ଚାକିରିଟିଏ ଜୁଟି ଯାଇଛି ।

ବାପା କହିଲେ– ପାଗଳ ନା କ'ଣ ? ଏଇଲେ ବିଭା ହେଲାବେଳକୁ ଚାକିରି କରିବୁ ?

ଝିଅ କହିଲା– ଯେତେଦିନ ପର୍ଯ୍ୟନ୍ତ ତମର ଏ ବାହାଘରର ଯୋଗାଡ଼ଟା ହୋଇଛି ସେତେଦିନ ଚାଲୁ। ବଣ୍ଡରେ ଦସ୍ତଖତ କରି ତ ଚାକିରିରେ ଯୋଗ ଦେଉନି। ତମେ ଭାଇନା ପାଇଁ ପାତ୍ରୀଟିଏ ଖୋଜିଲ !

ତା'ପରେ ଆଉ କ'ଣ ? ଝଟ୍‌ପଟ୍ ଭାଇନାର ବିଭାଘରଟା ହୋଇଗଲା। ଅତି ଲକ୍ଷ୍ମୀମନ୍ତ ବୋହୂ। ଆସୁ ଆସୁ ନଣନ୍ଦର ସାହାଯ୍ୟକାରିଣୀ ଆଉ ବନ୍ଧୁ ହୋଇଗଲା।

ଅତଏବ ଝିଅଟା ମନ ଆନନ୍ଦରେ ଆଦର୍ଶ ବାଳିକା ବିଦ୍ୟାଳୟରେ ପଢ଼ାଉ ପଢ଼ାଉ ନିଜେ ବି.ଏ.ଟା ପାସ୍ କରିଦେଲା ଏବଂ ଭବିଷ୍ୟତ୍‌ରେ କାମରେ ଆସିବ ଭାବି ବି.ଟି. ଟା ପଢ଼ିଲା।

କିନ୍ତୁ ତାର ବାହାଟା ? ସେ ଗୋଟାଏ ମଜା କଥା। ବାପା ଝିଅ ପାଇଁ ପାତ୍ର ଖୋଜି ଯେତେବେଳେ ଟିକିଏ ଆଶାର ଆଲୋକ ଦେଖିଲେ ଏବଂ କହିଲେ– ଏବେ ଆଉ ଜମି କିଣା ହୋଇପାରିବନି, ଜମିଥିବା ସେ ଟଙ୍କା ଝିଅର ବାହାଘରେ ଲାଗିଯିବ। କାରଣ ସେମାନେ ଯୌତୁକ ନେବେ –

ସେତେବେଳେ ଝିଅ ଅନମନୀୟ ହୋଇଗଲା, କହିଲା– ସେମିତି ଘରେ ମୁଁ ଚଳିପାରିବିନି ବାପା।

ଏତିକିବେଳେ ପରିବାରରେ ଏକ ଅନର୍ଥ କାଣ୍ଡ ଘଟିଗଲା। କେତେଟା ମାସର ବ୍ୟବଧାନରେ ଝିଅଟାର ବାପା ଆଉ ଭାଉଜ ମହାମାୟା ଲେନ୍‌ର ସେ ସଂସାରଟାକୁ ଛାଡ଼ିଦେଇ ଚାଲିଗଲେ !...ଝଡ଼ ଶେଷରେ ଦିଗହରା ଦିଇଟା ଭାଇ ଭଉଣୀ ଯେତେବେଳେ ନିଜକୁ ସମ୍ଭାଳି ନେବାର ବ୍ୟବସ୍ଥା କରିପାରିଲେ, ଦେଖିଲେ ସଂସାରରେ ବିପତ୍ନୀକ ନରୋତ୍ତମ ସୋମ, ଅବିବାହିତା ଉତ୍ତମା ସୋମ, ଆଉ ସଦ୍ୟଜାତ ଶିଶୁ ସର୍ବୋତ୍ତମ ସୋମ ରହିଛନ୍ତି, ଯେଉଁ ନାଆଁଟା ସେ ଜନ୍ମ ହେବା ଆଗରୁ ହିଁ ତାର ଜେଜେବାପା ଦେଇଯାଇଥିଲେ। ଆଉ ତାର ମା' ? ସେ ତ ପିଲାଟାକୁ ପୃଥିବୀରେ ଓହ୍ଲାଇ ଦେଇ ସାଇଁକିନା ଦଉଡ଼ି ପଳାଇଗଲା।

ତା'ପରେ ଆଉ କ'ଣ ?

ଯାକୁ ଧରି ପୁଣି ସଂସାର ଯାତ୍ରା ଆରମ୍ଭ ହେଲା ।...ସେଇଟାତ ଅଟକେନି ।

ଝିଅଟାର ବାହାଘର ? ସେ ପ୍ରଶ୍ନ ଆଉ ଉଠିବାର କଥା ନୁହେଁ । ପାତ୍ର ପକ୍ଷର ଦାବି ପୂରଣ କରିବାର ଟଙ୍କାଗୁଡ଼ାକ ମଧ ଏସବୁ କାମରେ ଉଭେଇ ଯାଇଛି । ଆଉ ସର୍ବୋତ୍ତମ ନାମର କ୍ଷୁଦ୍ର ପ୍ରାଣୀଟା ଦିଇଟା ମଣିଷର ସର୍ବସ୍ୱକୁ ମାଡ଼ି ବସିଛି– ନରୋତ୍ତମ ସୋମ ଆଉ ଉତ୍ତମା ସୋମ ।

କିନ୍ତୁ ସଂସାରର ଦାବି ପୂରଣ କରିବାକୁ ? ହଁ 'ସୋମ ଷ୍ଟୋର୍ସ'ଟା ଖରାପ ଚାଲୁ ନ ଥିଲା । ଆଉ ବି.ଟି. ପାସ୍ ହୋଇଥିବା ଉତ୍ତମା ତ ଅନେକ ଦିନ ଆଗରୁ ତାର ଆଦର୍ଶ ବାଳିକା ବିଦ୍ୟାଳୟ ଛାଡ଼ି ମଡ଼େଲ୍ ଗାର୍ଲସ୍ ହାଇସ୍କୁଲର ଜଣେ ବିଶିଷ୍ଟ ଶିକ୍ଷୟିତ୍ରୀ ହୋଇଗଲାଣି ।

ମନେ ମନେ ରିହାର୍ସଲ ! ସମୟ ଲାଗିଲା ନାହିଁ । ଝଡ଼ ବେଗରେ ଚାଲିଛି । ସେହି ଗତିରେ ହିଁ ଯାଉ ଯାଉ ଉତ୍ତମା ଦେଖିଲା– ଉତ୍ତମା ସୋମ୍ ନାଁର ଏ ବାନପ୍ରସ୍ଥବାସିନୀ ମହିଳାଟିକୁ ସର୍ବୋତ୍ତମ ନାଁର ସେ ଶିଶୁ ସହସ୍ର ବନ୍ଧନରେ ବନ୍ଦୀ କରିଦେଇ ବଡ଼ ହୋଇଗଲା !

– ପିଉସୀ, ମୋର ସ୍କୁଲର ଜାମା ?...ପିଉସୀ, ମୋର ହୋମ୍‌ଟାସ୍କର ଖାତାଟା...ପିଉସୀ, ମୋର ଡଟ୍‌ପେନ୍‌ଟା ? ମୋର ଅଙ୍କ ବହିଟା ?...ପିଉସୀ, ଆଜି ଟିଫିନ୍ କ'ଣ ? ...ପିଉସୀ, କେତେଦିନ ହେଲା ମାଂସ ରାନ୍ଧିନ ? ପିଉସୀ, ସ୍କୁଲରୁ ଏକ୍ସକାର୍ସାନ୍‌କୁ ସମସ୍ତଙ୍କୁ ନେଇ ଯାଉଛନ୍ତି । ବାପା କହୁଛନ୍ତି, ଛାଡ଼ିବେନି । କହୁଛନ୍ତି ଏତେ ଟଙ୍କା ନାଇଁ । ତମେ ଦବ ? ଥ୍ୟାଙ୍କ୍ ଗଡ୍ ! ଥ୍ୟାଙ୍କସ୍ ! ପିଉସୀ, ବାପା ଯୋଉ ହାତ ଖର୍ଚ୍ଚ ପାଇଁ ଟଙ୍କାଟା ଦେଉଛନ୍ତି ସେଥିରେ ଦଶଦିନ ମଧ ଚଳିବନି । ଗ୍ରୀଷ୍ମଛୁଟିରେ କେତେଜଣ ସାଙ୍ଗଙ୍କର ଦାର୍ଜିଲିଂ ଯିବାର କଥା ଅଛି ।.. ଏ ପିଉସୀ, ତମମାନଙ୍କର ଏ ରଦ୍ଦିମାର୍କା ସାର୍ଟପ୍ୟାଣ୍ଟ ପିନ୍ଧି ଆଉ ଚଳିପାରୁନି । ...ଆଜିକାଲି ଆଉ ଲୋକେ କଟନ୍ ପ୍ୟାଣ୍ଟ ପିନ୍ଧୁଛନ୍ତି ନା କ'ଣ ?...ପିଉସୀ । ପିଉସୀ । ଉଠୁଣୁ ବସୁଣୁ ପିଉସୀ । ପ୍ରଥମ ଜୀବନରେ ଭାଇନା କହିଥିଲା– ପିଉସୀ ଆଉ କୋଉଥିପାଇଁ ? ତୁ ତ ତାର ମା । ସେ ତ ତୋର ।

ଝିଅଟା କହିଥିଲା– ତା' ବୋଲି ମା' ବୋଲି ଡାକିବ ନା କ'ଣ ? ମୁଣ୍ଡ ଖରାପ ତମର ? ଶ୍ରୀ ନରୋତ୍ତମ ସୋମ୍ ହେଉଛନ୍ତି ବାପା ଆଉ ମିସ୍ ଉତ୍ତମା

ସୋମ ହେବ ମା' ? କି ସୁନ୍ଦର ଡାକ ହେବରେ ଭାଇନା ! ପିଉସୀ'ଟା କ'ଣ କମ୍ ଭଲ ଡାକ ? ଗାର୍ଜେନ୍‌କୁ ଗାର୍ଜେନ୍, ଫ୍ରେଣ୍ଡକୁ ଫ୍ରେଣ୍ଡ୍ ।

କିଛିଦିନ ଆଗରୁ ମଧ୍ୟ ଭାଇନା ଥରେ ଥରେ ଦୁଃଖ କରି କହୁଥାଏ, ମୋ ଘରର ଦଉଡ଼ି ଟାଣିବାକୁ ଯାଇ ତୋର କିଛି ହେଲାନି । ଝିଅଟା ଆଖି ଦେଖାଇ କହୁଥାଏ– କିଛି ହେଲାନି ମାନେ ? କ'ଣଟା ହେଲାନି ଯେ ? ଆଉ ଘରଟା ତୋର କ'ଣରେ ଭାଇନା ? ମୁଁ ବରଂ କହିପାରେ-ମୋର ସବୁଦିନର ଘରଟାରେ ତମେ ଦୁଇଜଣ ଅବୋଧ ପୋଷ୍ୟ । ସେହି ଆଠବର୍ଷ ବୟସରୁ ଏ ଘରକୁ ମୁଁ ଟାଣୁଛି, ସେ କଥା ମନେ ରଖିବୁ ।

ହଁ, ଭାଇନା ସେ କଥାଟା ମନେ ରଖୁଥାଏ ।

ସଂସାରର ସର୍ବମୟୀ କର୍ତ୍ତ୍ରୀ ସେଇ ଉତ୍ତମା । ଏମିତିକି ଦୋକାନର ଆୟ, ଉନ୍ନତି ପାଇଁ "ସୋମ୍ ଷ୍ଟୋର୍ସ"ର ମାଲିକ ନରୋତ୍ତମ ସୋମ୍ ମଧ୍ୟ ଉତ୍ତମାର ଉପଦେଶ, ପରାମର୍ଶ ଚାହୁଁଥାଏ, ପରାମର୍ଶ ନିଏ ।

ଆଉ ସର୍ବୋତ୍ତମ ? ତା' କଥା ଆଉ କହି କାର୍ଯ୍ୟ ନାହିଁ । ସେ ଅନାୟାସରେ ପିଉସୀର କୋଳରେ ମଥା ରଖି ସ୍ୱର ନିମ୍ନ କରି କହେ– ଗୋଟାଏ ଅଘଟଣ କଥା ଘଟିଯାଇଛି ପିଉସୀ, ଫାଦାର୍ ଜାଣିଲେ ଫାୟାର୍ ହୋଇଯିବେ, ମ୍ୟାନେଜ୍ କରିବା ଭାରଟା ତମର ।

ସତେ ? କି କଥା ?...କ'ଣ ଆଉ ? ସେହି ଚିରକାଳର ଜଗତର ଆଦି ଓ ଅକୃତ୍ରିମ କଥା ।

ପିଉସୀ ପୁତୁରାର ଗହଳ ବାଳ ଭିତରେ ହାତ ବୁଲାଇ ବୁଲାଇ କହିଲା- ଆରେ ତୁ ପଡ଼ିଲୁ ତା ପାଲରେ ? ନା ସେ ପଡ଼ିଛି ?

ବାଃ, ଦିଇଟାଯାକ ତ ଗୋଟାଏ କଥା ।

ଜମା ଗୋଟେ କଥା ନୁହେଁ । ତତେ ଦେଖିଲେ ଯେକୌଣସି ଝିଅ ପାଲରେ ପଡ଼ିଯାଇ ପାରନ୍ତି । ମା'କୁ ତ ଆଖିରେ ଦେଖିନୁ, ତେବେବେ ମା'ର ରୂପଟା ପାଇଛୁ । କିନ୍ତୁ ସେ ଗେହ୍ଲା ଝିଅଟା ? କ'ଣ ଚେପାମୁହାଁ, ବାଙ୍ଗରୀ, କାଳୀ ? ଭାଇନା ତ ମୂର୍ଚ୍ଛା ହୋଇଯିବ ।

ଆରେ ବାବା ! ଏତେ ଅସୁନ୍ଦର ନୁହେଁ, ହେଲେ ତମର ଭାତୁଷ୍ପୁତ୍ର ପରି

ଏମିତି କନ୍ଦର୍ପ କାନ୍ତି କ'ଣ ଆଉ ସମସ୍ତେ ହୋଇପାରିବେ ? ଗୋଟେ ପ୍ରକାର ଚେହେରା । ତେବେ ଗୋଳମାଳଟା ଅନ୍ୟଠି ଅଛି ।

ଓଃ ! ହାଡ଼ି-ଡମ୍ବ ଘରର ନା ?

କ'ଣ ଯେ କହୁଛ ? ଉଚ୍ଚସ୍ତରର କଥା । ସେ ପୁଣି ବ୍ରାହ୍ମଣକନ୍ୟା ।

ଏଇ କଥା ? ସେଇଟା ତ ଭଲ । ସେଇଟା ମୁଁ ମ୍ୟାନେଜ କରିଦେବି । ତେବେ ଏବେ ସୁଦ୍ଧା ତୁ ବେକାର । କିଏ ତୋ ହାତରେ ଝିଅ ଦେବ ?

ସବୁବେଳେ ଆଉ କ'ଣ ବେକାର ଥିବି ? ଦିନ ନିଶ୍ଚେ ଆସିବ । ତେବେ ସେତେଦିନ ପର୍ଯ୍ୟନ୍ତ ତ କୋଟ୍‌ସିପ୍‌ଟା ଚଳାଇ ଯିବାକୁ ହେବ ! ଫାଦର୍ ଯଦି କିଛି ଜାଣିଯିବେ ନା ବିପଦ ହେବ ।

କିନ୍ତୁ କେଉଁଠି ବିପଦ ! ଚିରକାଳର ସମସ୍ତ ଗୋଳମାଳର ସମାଧାନ ସବୁଦିନ ପାଇଁ ଘରେ ମହଜୁଦ୍ ନାହିଁ ? କ୍ରମଶଃ ତ ପୁଣି ମାଷ୍ଟ୍ର-ମାଷ୍ଟ୍ରାଣୀମାନଙ୍କ ସୁଦିନ ଆସି ଯାଉଥିଲା । ସେମାନେ ଆଉ ଦେଶର ସରକାରର ଦ୍ୱିତୀୟ ରାଣୀର ସନ୍ତାନ ନ ଥିଲେ । ସରକାରୀ ସୁବିଚାରରେ 'ପେ କମିସନ୍' ସେମାନଙ୍କ ପାଇଁ ପ୍ରବଳ ବ୍ୟବସ୍ଥା କରି ଚାଲିଛି...

ତେଣେ ସର୍ବୋତ୍ତମ ମଧ୍ୟ ଆଉ ଫୋପାଡ଼ିଲା ଭଳି ଲୋକ ହୋଇ ରହିନି । ଗୋଟାଏ ବେସରକାରୀ ସଂସ୍ଥାରେ ବେଶ୍ ଭଲ କାମଟିଏ ଯୋଗାଡ଼ କରିଦେଇଛି ଏବଂ ସେହି ଆଶା ଦେଇ ରଖିଥିବା ବ୍ରାହ୍ମଣ-କନ୍ୟାକୁ ଘରକୁ ନେଇ ଆସିବାକୁ ଯୋଗାଡ଼ ଯନ୍ତ୍ର କରୁଛି । ତେବେ ଝିଅଟି ନିହାତି ଗରିବ ବ୍ରାହ୍ମଣର ଝିଅ । ସେ ଝିଅ ଯେ କେମିତ ଏଭଳି ସିଆଣିଆ ହୋଇଯାଇଥିଲା ! ଆଶ୍ଚର୍ଯ୍ୟ !

ନରୋତ୍ତମ ଥରଟିଏ କହିଥିଲା– ବ୍ରାହ୍ମଣ ଝିଅ ! ଶ୍ୱଶୁର ବୋଲି ମୋର ପାଦଧୂଳି ନେବାକୁ ଆସିବ–

ହସି ହସି ଗଡ଼ି ଯାଇଥିଲା ଉତ୍ତମା– ଭାଇନା, ଦୋକାନୀବୃତ୍ତି କରୁ କରୁ ତମର ଜ୍ଞାନଚକ୍ଷୁଟା ଆଉ କେବେ ଖୋଲିଲାନି । କେଉଁ ଘରର କେତେଟା ଝିଅ ଆଉ ଶ୍ୱଶୁର, ଦେଢ଼ଶୁର ବୋଲି ପାଦଧୂଳି ନେବାକୁ ଆସିବେ ଆଜିକାଲି ? ଛାଡ଼ିଲ ସେସବୁ । ହେଲେ ବାହାଘର ଆଗରୁ ଘରଟା ବଦଳାଇଥିଲେ ଭଲ ହୁଅନ୍ତା ।

ହୋଇଥାଆନ୍ତା ଅବଶ୍ୟ ।

କିନ୍ତୁ ସବୁବେଳେ ତ ଆଉ ଯାହା ଭଲ ହୁଅନ୍ତା ତା ହୁଏ ନାହିଁ । ଘର ଖୋଜି ଖୋଜି ନାକେଦମ୍ ହୋଇଗଲା ନରୋତ୍ତମ, ମିଳିଲାନି । ସାହିରେ ଗୋଟିଏ ବାହାଘର ପାଇଁ ଉଦ୍ଦିଷ୍ଟ ଥିବା ଘରଭଡ଼ା ନେଇ ପୁଅର ବାହାଘର କରାଗଲା । ବେଶ୍ ସମାରୋହରେ । ଭାଇଭଉଣୀ ଦିହିଁଙ୍କ ଆଖିରେ ଆନନ୍ଦର ଅଶ୍ରୁ ଦେଖା ଦେଇଥିଲା ।

ସେଇଛଣକର ପକାଇ ଦେଇ ଯାଇଥିବା ସଦ୍ୟଜାତ ଶିଶୁଟା ଆଜି ଏତେଦିନ ପରେ– ଭାଇନା କହିଲେ, ସବୁ କ୍ରେଡ଼ିଟ୍ ତୋର ।

ଭଉଣୀ କହିଲା– ଚୁପ୍ କର । ସେକାଳିଆ କଥା ରଖ । କହିବାକୁ ହେଲେ କହିବାକୁ ହେବ କ୍ରେଡ଼ିଟ୍ ତମର । ତୁମେ ଯେ ପୁଅଟାର ପିଉସୀକୁ କୋଉ ଚୁଲ୍ଲୀକୁ ପାର୍ କରିଦେବାପାଇଁ ଜିଦ୍ ନ ଧରି ତାକୁ ସୁସ୍ଥ ହୋଇ ରହିବାକୁ ଦେଇଥିଲ, ସେଇଟାହିଁ ଅସଲ କଥା ।

ଭାଇନା ତୁନି ତୁନି ହୋଇ କହିଲେ, ବୋହୂଟ 'ସବୁ'ର କିଛି ଯୋଗ୍ୟ ହେଇନି ନା କ'ଣ କହୁଛୁ ?

– ସେତିକିରେ ତ ତମ ପୁଅ ମୁଣ୍ଡ ଲଣ୍ଡା କରି ତପସ୍ୟା କରିଛି ।

– ଯାହାହେଉ, ତୁ ଏତେଦିନକେ ଟିକେ ବିଶ୍ରାମ ପାଇବୁ ।

– ଭାଇନା ଦୟାକରି ମୋର ସୁବିଧା କଥା ଆଉ ଚିନ୍ତା କର ନାହିଁ । କପାଳରେ ସହିବନି । ଖାଲି କହ ଯେ ଖଟି ଖାଇବାର କ୍ଷମତାଟା ଠିକ୍ ଥାଉ । ଆଉ ସେମାନେ ହସି ଖେଳି ରହିଲେ ହିଁ ଆମେ ବର୍ତ୍ତିଯିବା ଭାଇନା ।

କିନ୍ତୁ ସେ ଉତ୍ତମା ନାଁର ଝିଅଟାର ଜନ୍ମ ଲଗ୍ନରେ କ'ଣ ଥିଲା କେଜାଣି !...ଦେଖିବାକୁ ମିଳିଲା ପୁଅ ବୋହୂ ହସି ଖେଳି କଟାଉଛନ୍ତି- ଏ ଦୃଶ୍ୟ ଦେଖିବାକୁ ଆଉ ବେଶିଦିନ ବଞ୍ଚି ନ ଥିଲା ନରୋତ୍ତମ । ଦିନେ ଦିପହରରେ 'ସୋମ୍ ଷ୍ଟୋର୍ସ୍'ର କବାଟ ବନ୍ଦ କରି ଫେରିଆସିଲା ଦେହଟା କେମିତି ଲାଗୁଛି ବୋଲି । ଆଉ କେଉଁଦିନ ସେ ଗଲାନି ସେ କବାଟ ଖୋଲିବାକୁ ।

ତେବେବେ– ଆଶ୍ଚର୍ଯ୍ୟ, ତେବେବେ ମହାମାୟା ଲେନ୍‌ର ସେହି ବସାଟାରେ ସଂସାର ଲୀଳା ଅଟକି ରହିଲାନି । ଆଉ ସର୍ବୋତ୍ତମ ନାମକ ପୁଅଟା ବାପା ମରିଯିବା ପରେ ଆଠ ଦଶଦିନ ଟିକିଏ ମନମାରି ରହିଲା ପରେ ବେଶ୍ ହସି-ଖେଳି କଟାଇବାକୁ ଲାଗିଲା ଦିନ ।

ଆଉ ତାର ପିଉସୀ ?

ହଁ, ତାକୁ ମଧ୍ୟ ସେହି ଏକପ୍ରକାର ଅବସ୍ଥାରେ ଦେଖିବାକୁ ମିଳିଲା । ଉଚ୍ଛ୍ୱସିତ ଝଙ୍କାରରେ ଘରକୁ ପକାଇ ଉଠାଇ ବୁଲୁଛି । ଆଉ ପ୍ରତିଦିନ ତାଗିଦା କରୁଛି– ଘର ଗୋଟେ ଦେଖେ ବାପା ! ସେ ତୁଳସୀବାବୁର ତ ଆଖିକୁ ଦିଶୁନି ଯେ ଘରଟାକୁ ଏ ପଚାଶ ବର୍ଷ ଭିତରେ ମଧ୍ୟ ଟିକେ ମରାମତି କଲାନି । କି ଛୋଟ ଲୋକ ! ଆଉ ଜାଣିଛୁ, ଯା ପରେ ପୁଣି ପ୍ରତି ମାସ ଭଡ଼ା ନେବାକୁ ଆସି କହେ ଆପଣମାନେ ଏ ଘର ଛାଡ଼ିଦେଲେ ଏ ଘରର ଭଡ଼ା ଏବେ ହଜାରେ କି ଦେଢ଼ହଜାର ହେବ । ବେଶି ତ ନୁହେଁ, ଅଥଚ ଆପଣମାନେ ସେ ପୁରୁଣା ଭଡ଼ାରେ ଚେର ମାଡ଼ି ବସିଛନ୍ତି ।

ଦିନ ଗଡ଼ି ଚାଲିଲା । 'ସବୁ'ର ସ୍ତ୍ରୀ ବେଶ୍ ଗୃହିଣୀ ହୋଇଗଲାଣି । ସଂସାର ପରିଚାଳନାରେ ପିଉସୀ-ଶାଶୁକୁ ଅନେଇ ବସି ରହେନି ଆଉ ।

ନ ରହୁ, ପିଉସୀର ତ ତେଣେ ନିଜର କର୍ମଜୀବନର ଅନେକ କାମ, ଅନେକ ଦାୟିତ୍ୱ ବଢ଼ିଗଲାଣି । ସ୍କୁଲଟା ବିରାଟ ହୋଇଗଲାଣି । ବନ୍ୟାଜଳ ଭଳି ଛାତ୍ରୀ ନାଁ ଲେଖାଇବାକୁ ଆସିବାର ପ୍ରାବଲ୍ୟରେ ଆଉ ଗୋଟିଏ ବିଲ୍ଡ଼ିଂ ବଢ଼ାଇବାକୁ ପଡ଼ିଛି । ଆହୁରି ଟିକିଏ ଏକ୍ସଟେନ୍‌ସେନ୍ କରିପାରିଲେ ଭଲ ହୁଅନ୍ତା । ଆଉ ଉରମା ସୋମ୍ ଏବେ ସେ ସ୍କୁଲ୍‌ର ହେଡ୍ ମିଷ୍ଟ୍ରେସ୍ ।

ଘରେ ମଧ୍ୟ ଗୋଟିଏ କାମ ବଢ଼ିଛି । ଫୁଲ ଭଳି ଝିଅଟିଏ ଟିପେଇ ଟିପେଇ ଚାଲିବାଠାରୁ ଦଉଡ଼ିବାକୁ ଆରମ୍ଭ କଲାଣି ।

ତା'ର ବାପର ପିଉସୀ କହେ– ଆଉ ଦିଇଟା ବର୍ଷ ଯାଉ । ମୁଁ ଥାଉ ଥାଉ ମୋ' ସ୍କୁଲରେ ନାଁ ଲେଖାଇଦେବି । ରିଟାୟାର୍ ସମୟ ତ ପ୍ରାୟ ହୋଇଗଲା ।

ଝିଅର ମା ବିରସ ମୁଖରେ କହିଲା– ସେଇଟା ତ ବଙ୍ଗଳା ମିଡ଼ିୟମ୍ ସ୍କୁଲ ।

– ଏ ମା' ! ବଙ୍ଗଳା ମିଡ଼ିୟମ୍‌ର ପିଲାଏ କ'ଣ 'ମଣିଷ' ନୁହଁନ୍ତି ? ଛାତ୍ରୀ ସଂଖ୍ୟା କେତେ ଜାଣିଛୁ ?

– ସେ କଥା ଜାଣିନି । ତେବେ ଜାଣିଛି ସେଥିରେ ନାଁ ଲେଖାଇବାକୁ ମନା କରନ୍ତି ନାହିଁ ।

ଅତଏବ ଯୋଉଥିରେ ମନା କରିବା ଅଛି ତାରି ଦ୍ୱାରସ୍ଥ ହେବାକୁ ଧାଁ ଧପଡ଼ କରି ବୁଲିବାକୁ ଲାଗିଲା ସର୍ବୋତ୍ତମର ସ୍ତ୍ରୀ ବିପାଶା ।

ଉତ୍ତମା କହିଲା, ବାଃ ବାଃ । ଏ ଯେ କନ୍ୟା ଦାୟଠୁ ଅଧିକ । କି ସଉକ୍ ବାପା !

କିନ୍ତୁ ସର୍ବୋତ୍ତମ ?

ସେ ତ ଢୋଲ ପାଖରେ ବେଙ୍ଗବାଇଦ, ଗୋଟିପୋକ ପଛରେ ତେଲୁଣିଆ ପୋକ, ଯାହାର ପଛରେ ବନ୍ଧା ଉଙ୍ଗାଟିଏ ।

ତା'ହେଲେ କ'ଣ ହେବ, ବିପାଶା ନିଜର ଜନ୍ମକଲା ଝିଅଟାକୁ ଜବତ୍ କରିପାରୁନି । ଇଂଲିସ୍ ମିଡ଼ିୟମ୍‌ରେ ନାଁ ଲେଖାଇବା ପରେ ମଧ୍ୟ ନୁହେଁ ।

ବିପାଶାର ଝିଅ ଅତି ଅନାୟାସରେ ମା'ର ମୁହଁ ଉପରେ କହେ- ତମେ ଆଉ ମତେ ଖୁଆଇବାକୁ ଆସନି । ଯେମିତି ଗୋଦରା ଗୋଦରା ହାତ ନା ! ଠିକ୍ ଯେମିତି ପାଉଁରୁଟି ! ଆଈର କେମିତି ସରୁ ସରୁ ଆଙ୍ଗୁଠି । ମୁଁ ତାଙ୍କ ପାଖରେ ଖାଇବି ।... ଝିଅଟି ଅକ୍ଳେଶରେ କହେ– ତମ ପାଖରେ ଶୋଇବାକୁ ମୋର ଗରଜ ପଡ଼ିଛି । ଖାଲି ପିଟିବ । ମୁଁ ଯେମିତି ତବଲା । ଆଈ କେମିତି ଆସ୍ତେ ଆସ୍ତେ ଗୀତ ଗାଇ ଶୁଆଇ ପକାଉଛି । ...ମା, ତମେ ଆଈ ଭଳି ସୁନ୍ଦର କରି ସଜେଇ ଦେଇପାରୁନ ? ଆଈ କେମିତି ସଜେଇ ଦେଉଛି ଦେଖିଛ ? ଠିକ୍ ଯେମିତି ଆମ ସ୍କୁଲର ଆଣ୍ଟି ! ଆଉ ତମେ ? ଏତେ ଏତେ ସବୁ କ'ଣ ଯେ ଲଗାଉଛ, ଛିଃ ଖରାପ ଲାଗୁଛି ! ହେଲେ ତମେ ଆଉ କ'ଣ ଆଈ ଭଳି ହୋଇପାରିବ କି ? ଯାଅ କେଡ଼େ ମୋଟା ତମେ !

ସବୁବେଳେ ଛି, ଛି କରି କଥା ସାରେ; ସର୍ବୋତ୍ତମର ଭାଗ୍ୟ ! ସେ ପ୍ରେମ କରିଥିଲା ଗୋଟିଏ ବା'ଷଠି କେ.ଜି.ର ଝିଅକୁ, କେତେଟା ବର୍ଷ ଭିତରେ ସେ ପ୍ରିୟା ତାର ହୋଇଗଲା ଶହେ ବା'ଷଠି କେ.ଜି. !

ଝିଅର ଏ ବେପରୁଆ ମନ୍ତବ୍ୟ ଶୁଣି ତା'ର ବାପା ଥରିଯାଏ ଏବଂ ମନ୍ତବ୍ୟ ପରେ ଝିଅ ଉପରେ ନିର୍ଯାତନାର ମାତ୍ରା ଦେଖି ଦୁଃଖରେ ବିଗଳିତ ହୁଏ କିନ୍ତୁ ପ୍ରତିକାରର ସାହସ ସଞ୍ଚୟ କରିପାରେ ନାହିଁ ।

ଝିଅଟାର ଆଈ ପରେ ନାତୁଣୀ ମୁହଁରୁ ତା'ର ମା'ଠାରୁ ଯେଉଁ ଶାସ୍ତିମୂଳକ ବ୍ୟବହାରର କଥା ଶୁଣେ, ସେଥିରେ ଅବାକ୍ ହୋଇଯାଏ । ଏଇ ଫୁଲ ପରି ଝିଅଟା ! ତୁନି ତୁନି ହୋଇ ସାନ୍ତ୍ୱନା ଦିଏ, ଆଚ୍ଛା ଦେଖିବୁ ତ ଆଉ କେତେଦିନ

ପରେ ମୁଁ ରିଟାୟାର୍ କରିବି । ଦିନଟାଯାକ ଘରେ ରହିବି, ସେତେବେଳେ କିଏ ମାରିବ ଦେଖିବି !

କିନ୍ତୁ ସେହି ପ୍ରାର୍ଥିତ ଦିନ ଆସିବାର କିଛି ପରେ ହିଁ ଘଟିଗଲା ଏକ ଅପୂର୍ବ ଘଟନା ! ପୁଣି ମୃତ୍ୟୁ ?...ନାଃ ମୃତ୍ୟୁ ନୁହେଁ । କିମ୍ବା ମୃତ୍ୟୁ ହିଁ । ଚିରଦିନର ନିଶ୍ଚିନ୍ତ ବିଶ୍ୱାସର ଆକସ୍ମିକ ମୃତ୍ୟୁ ।

ଉତ୍ତମା ଭାବିଥିଲା– ସେହି ବୁଢ଼ା ଭଦ୍ରଲୋକଙ୍କୁ ସଂକ୍ଷେପରେ ନିଜର ଜୀବନୀ ଶୁଣେଇଦେବ । ସେଥିପାଇଁ ସଂକ୍ଷିପ୍ତ ଭାଷଣର ରିହାର୍ସଲ କରୁଥିଲା ମନେ ମନେ । ହେଲେ କିପରି ସଂକ୍ଷେପ କରିବ ? ଏ ଯେ ସରିବାକୁ ଚାହୁଁନି । ଯେମିତି ଗୁଡ଼ାଇ ରଖିଥିବା ଲଟେଇର ସୂତାଟାର ଖୋଲା ମୁହଁଟା ହାତ ଆଗରେ ଗୁଡ଼େଇ ହୋଇଯାଇ ଅବିରତ ଖୋଲିଯାଉଛି ।

କେମିତି ଆହୁରି ସଂକ୍ଷେପ କରିହେବ ? ଭାବୁ ଭାବୁ ଆଉ ଗୋଟିଏ ଅସୁବିଧା ଆସି ଦେଖାଦେଲା । ...କଥାଟା ହୋଇଗଲା ଠିକ୍ ସେହିଭଳି, ଯେମିତି ସିନେମାର ପର୍ଦ୍ଦାରେ କିଏ କୌଣସି କାହାଣୀ ବର୍ଣ୍ଣନା କରୁଛି– ହଠାତ୍ ଫ୍ଲାଶ୍ ବ୍ୟାକ୍‌ରେ ଘଟନାର ଛବିଟା ପୂରା ଦିଶିଗଲା ।

ଉତ୍ତମା ଫ୍ଲାଶ୍‌ବ୍ୟାକ୍‌ର ସେ ଛବିଟା ଦେଖିଲା ।

ଛୁଟି ସକାଳର ଚା ସଭା । ଅନ୍ୟଦିନ୍ ଅପେକ୍ଷା ଆଜି ଚା'ଟା ବିଶେଷ ପ୍ରକାରର ହୋଇଛି । ଅବଶ୍ୟ ସଭାଟା ଆଉ କେତେ ବଡ଼ ? ଉତ୍ତମା, ସର୍ବୋତ୍ତମ, ବିପାଶା ଆଉ କୁନି ତୁତୁନ୍ ।

ସର୍ବୋତ୍ତମ ଚଉକି ଟାଣି ବସିଲାକ୍ଷଣି ଗୋଟିଏ ସେହିକ୍ଷଣି ଭଜା ହୋଇଥିବା ମଟର-ପୁରଦିଆ କଚୁରୀ କାମୁଡ଼ି ଦେଇ କହିଉଠିଲା- ଆଚ୍ଛା ପିଉସୀ, ମୋ' ଛଡ଼ା ତିନିକୁଳରେ ତମର ଆଉ କିଏ ଉତ୍ତରାଧିକାରୀ ଅଛି ?

ଆଗ ସର୍ବୋତ୍ତମ ଘର ତିଆରି ଯାହାକିଛି ଜଳଖିଆ ଚୋବାଇ ଦେଇ କହୁଥାଏ-ଗ୍ରାଣ୍ଡ୍ ! ଅଥବା ମାର୍ଭେଲସ୍, କି ଫାଇନ୍ ! ମୋଟ କଥା, ପ୍ରଶଂସା ବାକ୍ୟ ଗୋଟିଏ ଧ୍ୱନିତ ହୁଏ ନିଶ୍ଚୟ । ଏବେ ଆଉକିଛି କହିବାକୁ ସାହସ କରେନି । କେଜାଣି କାହାର ହାତରେ ତିଆରି । ଯଦି ପିଉସୀର ହୋଇଥାଏ, ପ୍ରଶଂସା ଶୁଣିଲାକ୍ଷଣି ବିପାଶାର ମୁହଁ ଅନ୍ଧକାର ହୋଇଯାଏ । ଯେମିତି ପିଉସୀର କାମର ପ୍ରଶଂସାର ଅର୍ଥ ହିଁ ହେଉଛି ବିପାଶାର ନିନ୍ଦା । ଏ ଗୋଟିଏ ଅଦ୍ଭୁତ ଦୁର୍ବଳତା ।

ଉତ୍ତମା ଯେ ବୁଝିପାରେନି ତା ନୁହେଁ, ତେବେ ସହଜ ଉଦାରତାରେ ଖାଲି ମନେ ମନେ କୌତୁକ ବୋଧ କରୁଥାଏ । ଭାବୁଥାଏ- ପିଲାଳିଆ ।

ଆଜି ଆଉ ସେସବୁ ଭାବିବାର ପ୍ରଶ୍ନ ଉଠିଲାନି । ହୁମ୍‌କିନା ସର୍ବୋତ୍ତମ ଗୋଟାଏ ଅଦ୍ଭୁତ ପ୍ରଶ୍ନ କରିଦେଲା ।

ତେବେକେ ଉତ୍ତମା ହସିଦେଇ କହିଲା— ତୋର ପିଉସୀର ତିନିଟା କୁଳ ପୁଣି କୋଉଠୁ ପାଉଛୁ ଯେ ? ଖାଲି ତ ଗୋଟାଏ କୁଳ । ଆଉ ଜାଣିଛୁ ତ ସେ କୁଳରେ ତୁ ହିଁ ଏକମାତ୍ର ନୀଳମଣି !

ଠିକ୍ ?

ଏକଦମ୍ ଠିକ୍ ।

ଗୁଡ୍ । ତାହେଲେ ତମେ ମରିଗଲେ ତମ ଟଙ୍କାତକ ସବୁ ମୁଁ ପାଇବି ?

ଶୁଣି ବିପାଶା କପାଳ କୁଞ୍ଚିତ କରି କହିଲା- କଥାର ଏମିତି ଧରଣ କ'ଣ ?

— ମୋ କଥାରେ କେବେ ଆଉ ଧରଣ ଧାରଣ ଥିଲା ଯେ ? ତା'ହେଲେ ପିଉସୀ, କହୁଛ ତ ତମର ଯାହା କିଛି ସବୁ ଭବିଷ୍ୟତ୍‌ରେ ମୋର ହେବ ?

ଉତ୍ତମା ଭାରି ଖୁସୀ ହେଲା । ଭାବିଲା ପିଲାଟା ନିଜସ୍ୱ ଭଙ୍ଗୀକୁ ଫେରି ଆସିଛି । କି ଏକ ସିରିଅସ୍ ମାର୍କା ଝିଅକୁ ବାହାହୋଇ ପିଲାଟା ଦିନକୁ ଦିନ ମୂକ ହୋଇଯାଉଥିଲା । ହସି ହସି କହିଲା- ଅଫ୍‌କୋର୍ସ ।

— ଠିକ୍ ତ ? ତା'ହେଲେ ସେ ଭବିଷ୍ୟତ୍‌ର ପାଉଣାରୁ ଏବେ ସାଙ୍ଗେ ସାଙ୍ଗେ ମତେ କିଛି ଦେଇ ଦେଉନ ? ଗୋଟାଏ ଖୁବ୍ ବଡ଼ ଉପକାର ହେବ ତା'ହେଲେ ।

ଉତ୍ତମା ଜୋର୍‌ରେ ହସିଲା, କହିଲା-ଭାରି ତ ଟଙ୍କା । ସେଥିରୁ ପୁଣି କିଛି ? ସବୁତକ ନେଇଯାଉନୁ ?

ବିପାଶା କହିଲା-କି ଆଶ୍ଚର୍ଯ୍ୟ ! ଏମିତି ପ୍ରଶ୍ରୟ ଦେଉଛନ୍ତି କାହିଁକି ଯେ ? ଆପଣଙ୍କର ନିଜର ଭବିଷ୍ୟତ୍ କଥା ଭାବିବେନି ?

ଆରେ ବାପା ! ମୋର ପୁଣି ଅଲଗା ଭବିଷ୍ୟତ୍ କ'ଣ ? ତୁମେମାନେ ହିଁ ତ ମୋର ଭବିଷ୍ୟତ୍ । ...ହେଲେ ସବୁ, ହଠାତ୍ କି ଘଟଣା ହେଇଛି ? ସ୍ତ୍ରୀ

ଆଉ ଝିଅଙ୍କୁ ଧରି ଭ୍ରମଣ ପ୍ରମଣରେ ଯିବାକୁ ଇଚ୍ଛା ହେଉଛି ନା କ'ଣ ? ଭାରି ସବୁ ବିଜ୍ଞାପନ ତ ଦେଖୁଛି– 'ପ୍ରକୃତିର ଏହି ଲୀଳାଭୂମିକୁ ଚାଲିଆସନ୍ତୁ । ଅମୁକ ଟୁରିଷ୍ଟ କମ୍ପାନୀ ଆପଣଙ୍କର ସବୁ ଭାର ନେବ ।'

– ଆରେ ଯାଅ ! ସେସବୁ ସୌଖୀନ୍ ବାସନା ଭିତରେ ସର୍ବୋତ୍ତମ ସୋମ ନାହିଁ । ଘଟଣାଟା ଏକାବେଳେ ଭିନ୍ନ । ଭାବୁଛି ଏ ସୁଯୋଗ ହାତରୁ ଛାଡ଼ିଦେଲେ ହୁଏତ-

– ହେଲେ ଆସ୍ତେ ଆସ୍ତେ କଥାଟା ଫିଟାଉଛୁ କାହିଁକି ବାପା ? ଚଟ୍‌କିନା କହି ଦେଉନୁ !

– ଚଟ୍‌ପଟ୍ ? ତା'ହେଲେ କହି ଦେଉଛି । ଆମର ମହାନୁଭବ କମ୍ପାନୀ ତାର ଅଫିସର୍ସ ଷ୍ଟାଫ୍‌ମାନଙ୍କ ପାଇଁ 'ଗଲ୍‌ଫ୍ ଗ୍ରୀନ୍'ରେ କେତୋଟି ଫ୍ଲାଟ୍ ତିଆରି ରଖିଛି । କହିବାକୁ ଗଲେ ଦାତବ୍ୟ ହିସାବରେ ଧରାଯିବ, ତେବେ ଟିକିଏ କେଁ କରିଛି । ଫ୍ଲାଟ୍‌ଗୁଡିକ ତିଆରି କରିବାକୁ ଯେତେ ଖର୍ଚ୍ଚ ପଡ଼ିଛି, ତାର ଚତୁର୍ଥାଂଶ ଦେବାକୁ ପଡ଼ିବ ପ୍ରାପକଙ୍କୁ । ଆଉ ଦେବାକୁ ପଡ଼ିବ ଲଟେରୀ ଉଠିବା ଆଗରୁ-

– ଲଟେରୀ ? କେଉଁଥିର ଲଟେରୀ ?

– ଲଟେରୀ ହେଉଛି ଫ୍ଲାଟ୍‌ର ପୋଜିସନ୍ ହିସାବରେ ମାଲିକାନାର । ସବୁ ଫ୍ଲାଟ୍ ସମାନ ଦାମ ହେଲେ ମଧ୍ୟ, ସମାନ 'କ୍ଷେତ୍ର'ରେ ନୁହେଁ ! କିଏ ଦକ୍ଷିଣମୁଖୀ ତ କିଏ ପଶ୍ଚିମମୁଖୀ । କମ୍ପାନୀବାଲାମାନେ ନିଜେ ବାଣ୍ଟିଲେ ସମସ୍ତଙ୍କୁ ସନ୍ତୁଷ୍ଟ କରିପାରିବେନି ତ ! ପଶ୍ଚିମମୁଖୀର ନିଶ୍ଚେ ରାଗ ହେବ । ଅତଏବ ଫ୍ଲାଟ୍‌ର ନମ୍ବର ଓ ପ୍ରାପକର ନାଁ ନେଇ ଲଟେରୀ ଉଠିବ । ଯାହାର ଭାଗ୍ୟ ଯାହା । କାହାରି ଆଉ ରାଗିବାର ଉପାୟ ନ ଥିବ ।

– ହଁ, ଏତ ଭାରି ଭଲ ବ୍ୟବସ୍ଥାରେ । ...ଉତ୍ତମା ଉତ୍‌ଫୁଲ୍ଲ ହୋଇ କହିଲା । - ଫ୍ଲାଟ୍‌ଗୁଡ଼ାକ ହୋଇଯାଇଛି ?

– ଏକଦମ୍ କମ୍‌ପ୍ଲିଟ୍ । ସେହି ଲଟେରୀ ହେଲା ମାତ୍ରେ- ହ୍ୟାଣ୍ଡଓଭର୍ କରିଦେବେ ।

ଉତ୍ତମା ଆହୁରି ବେଶି ଆନନ୍ଦ ହୋଇ କହିଲା– ହଁରେ, ଫ୍ଲାଟ୍‌ଗୁଡ଼ାକ କେମିତି ?

– ଚମତ୍କାର ।

ଅସତର୍କତାବଶତଃ ବୋଧହୁଏ ସର୍ବୋତ୍ତମ ଏଭଳି ଉଚ୍ଛ୍ୱାସ ଦେଖାଇଲା, ନହେଲେ ସ୍ତ୍ରୀ ତ କହି ରଖିଥିଲା– ଢଗି ରଖି କହିବ ।

ସୁପରାମର୍ଶକୁ ଭୁଲିଯାଇ ସର୍ବୋତ୍ତମ ମହାଉତ୍ସାହରେ କହିଲା ।

– ଖୋଲା ପୂରା, ଆଗରେ କମ୍ପାଉଣ୍ଡ୍ । ମୋଜାଇକ୍ ଟାଇଲ୍‌ର ଚଟାଣ, କାନ୍ଥରେ ପ୍ଲାଷ୍ଟିକ୍ ପେଇଣ୍ଟ, ଝରକା ସବୁ କାଚର । ତା'ଛଡ଼ା କିଚେନ୍, ଷ୍ଟୋର୍ସ, ବାଥରୁମ୍ ସବୁଯାକ ଅତି ମଡର୍ଣ୍ଣ । ଆଉ ଶୁଣିବାକୁ ତ ଟୁ ରୁମ୍‌ସ୍ ଫ୍ଲାଟ୍ କିନ୍ତୁ ଡ୍ରଇଂରୁମ୍, ଡାଇନିଂ ସ୍ପେଶ୍‌ଟିର ଯେଉଁ ମାପ ହୋଇଛି ସେଥିରେ ଆହୁରି ଦୁଇଟା ବଖରା ତିଆରି ହୋଇଯାଇଥାନ୍ତା । ତା ଛଡ଼ା ସର୍ଭେଣ୍ଟ୍‌ସ୍ କ୍ୱାଟର୍ସ ରହିଛି ତଳ ମହଲାରେ । ସେମାନଙ୍କ ପାଇଁ ମଧ୍ୟ ଯାହା ବ୍ୟବସ୍ଥା ହୋଇଛି ପିଉସୀ, ଆମେ ନିଜେ ସାରା ଜୀବନ ଧରି ସେହିପରି ଘରଟିଏର ସ୍ୱପ୍ନ ଦେଖୁଥିଲେ ।

ବିପାଶା ହଠାତ୍ ବିରକ୍ତ ହୋଇ କହିଲା- ଯା ତ ଲଗାମ ନ ଥିବା ଆତିଶଯ୍ୟ । ଆଜିକାଲି ଫ୍ଲାଟ୍‌ଘରମାନେ ତ ମଡର୍ଣ୍ଣ ଟାଇପ୍‌ରହିଁ ହେବ । ହେଲେ କମ୍ପାନୀ ତ ତାର ଅଫିସରମାନଙ୍କ ପାଇଁ ତିଆରି କରିଛନ୍ତି, ସେ ଜିନିଷ ଭଲ ହେବ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ସର୍ବୋତ୍ତମ ଟିକିଏ ସଙ୍କୁଚିତ ହୋଇଗଲା ।

ଉତ୍ତମା କିନ୍ତୁ ସଂକୁଚିତ ହେଲାନି । ଉତ୍ତମା ବରାବର ଏ ବୋହୂଟିକୁ ଟିକିଏ ବୋକା ଆଉ ସିରିୟସ୍ ପେଟର୍ଣ୍ଣର ବୋଲି କୌତୁକବୋଧ କରୁଥିଲା । ସେଥିପାଇଁ ଉତ୍ତମା ନିଜର ଉତ୍ସାହଟାକୁ ବଞ୍ଚାଇ ରଖିଲା– ହଁରେ, ବାରଣ୍ଡା ଅଛି ?

– ନିଶ୍ଚୟ । ପ୍ରତ୍ୟେକ ଫ୍ଲାଟ୍‌ରେ । ତେବେ ଛୋଟ ଛୋଟ । ଅବଶ୍ୟ ଯାହା ଭାଗ୍ୟରେ ତଳମହଲା ଜୁଟିବ, ତାର ବାରଣ୍ଡା ଆଉ ଶୂନ୍ୟ ନୁହେଁ; ମାଟି ପାଖରେ । ହେଲେବି ସେମିତି ପୁଣି ସେମାନେ ଆଗରେ କେତେ ଫୁଟ ଜମି ବଗିଚା କରିବା ପାଇଁ ପାଇବେ ଯେ ।

ଉତ୍ତମା ଆହ୍ଲାଦଭରା ଗଳାରେ କହିଲା– ତୋ କମ୍ପାନୀକୁ ଭାରି ମହାନ୍ ବୋଲି କହିବାକୁ ପଡ଼ିବ । ହେଲେ କେବେ ସେ ଲଟେରୀ ଉଠିବ ?

ଆସନ୍ତା ମାସର ଦଶ ତାରିଖରେ ।

ହେଲେ ସେହି ଏକ ଚତୁର୍ଥାଂଶଟା କେତେ ? ମାନେ କେତେ ଟଙ୍କା ?

ସର୍ବୋତ୍ତମ ଟିକିଏ ବିଚଳିତ ଗଳାରେ କହିଲା— ଆଜିକାଲିର ହିସାବରେ ଫ୍ଲାଟ୍ ପକ୍ଷରେ କିଛି ନୁହେଁ । ତେବେ ମୋ ପକ୍ଷରେ ତ ଅନେକ କିଛି ! ସେଇଟାର ଅଙ୍କ ହେଉଛି ଅଠାନବେ ହଜାର ।

ଉତ୍ତମା ଟିକିଏ ଚମକି ପଡ଼ିଲା । ସେ ଅବଶ୍ୟ ଏତେ ବେଶି ବୋଲି ଧାରଣା କରି ନ ଥିଲା । ତେବେକେ ଭାବିଲା— ତା ସତ, ଆଜିକାଲିର ଦର ଯାହା ହୋଇଛି ନା ! ସେଥିପାଇଁ ଟିକିଏ ହସି କହିଲା— ଅଠାନବେ ହଜାର ! ବାଟା ଦୋକାନର ଜୋତା ଦାମ୍‌ର ଷ୍ଟାଇଲ୍ । ସିଧାସଳଖ ଲକ୍ଷେ ବୋଲି ତ କହିଥାନ୍ତେ । ହଁ ରେ 'ସବୁ', ମୋର ପି. ଏଫ୍ ଆଉ ଆହୁରି ସବୁ ମିଶି ଯାହା ମିଳିଛି ସେଥିରେ ଏଇଟା ହୋଇଯିବନି ? ତୁ ନିଜେ ତ ସେତେବେଳେ ହିସାବପତ୍ର ଦେଖିଥିଲୁ ।

ଟିକିଏ କୁଣ୍ଠିତ ଗଳାରେ କହିଲା ସର୍ବୋତ୍ତମ, ହୋଇଯିବ ମାନେ ପ୍ରାୟ ସବୁତକ କାଢ଼ି ଦେବାକୁ ପଡ଼ିବ ।

ତୁ ନେଇ ଯା । ଚଟ୍‌ପଟ୍ ନେଇ ଯା ! କହୁଛୁ ତ ଲଟେରୀ ଡେଟ୍ ଆଗରୁ ଟଙ୍କା ଜମା ନ ଦେଲେ ନାଁ ବାହାରିବନି ।

ପଥର ଗଳାରେ ବିପାଶା କହିଲା- ତା'ବୋଲି ଆପଣଙ୍କର ସାରା ଜୀବନର ସମସ୍ତ ସଞ୍ଚୟତକ ଏମିତି-

ଉତ୍ତମା କହିଲା- ହେଲେ ଲୋକେ ତ ଏଇସବୁ କାମପାଇଁ ସଞ୍ଚୟକୁ ଲଗାନ୍ତି- ଘର, ଝିଅର ବାହା ! ହେଲେ ତମ ପିଉସୀର ତ ଆଉ ଝିଅ ବାହା କରିବାର ଦାୟିତ୍ୱ ନାହିଁ, ହସି ପକାଇ କହିଲା ଉତ୍ତମା, ତୁତୁନ୍‌ଟାର ବାହାଘରର ଦାୟଟା ତ ଆଉ ମୋର କନ୍ୟାଦାୟ ହେବନି ? ତମମାନଙ୍କର ହେବ । ଏ ସବୁ ତୁ ଆଉ ଡେରି କରନା ବାପା । ସାଙ୍ଗେ ସାଙ୍ଗେ ଟଙ୍କାଟା 'ଫିକ୍‌ସଡ୍'ରୁ କାଢ଼ିବା ବ୍ୟବସ୍ଥା କରେ । ନିଜର ଜିନିଷ ହେଲେବି ଅସମୟରେ ଉଠେଇବାକୁ ତ ଅନେକ କଥା ଲାଗିବ । ତେବେ ନିୟମ ତ ରହିଛି, ଦରକାର ହେଲେ କାଢ଼ି ନେଇ ହେବ ।

— ତା ଅବଶ୍ୟ ଅଛି । ଏଇଲେ ତ ସାଙ୍ଗେ ସାଙ୍ଗେ ରଖାହୋଇଛି ।

— ସେଥିରେ କ'ଣ ହେଲା ? ଆଉ ଭାବନା ଚିନ୍ତାର କାର୍ଯ୍ୟ ନାହିଁ ! ଆହା ସେମିତି ଗୋଟିଏ ଘରେ ରହିବା ମୋର ଚିରଦିନର ସ୍ୱପ୍ନରେ ।

ବିପାଶା ପୂର୍ବପରି ପଥୁରିଆ ଗଳାରେ କହିଲା- ମୁଁ କିନ୍ତୁ ଏଇଟାକୁ ଆଲାଉ କରିପାରୁନି । ଆପଣ କାହିଁକି ନିଜର ଭବିଷ୍ୟତ୍ ନ ଭାବି ଆପଣଙ୍କର ସବୁତକ–

ସେତେବେଳେ ଉତ୍ତମା ମନେ ମନେ ଟିକିଏ ଗମ୍ଭୀର ହୋଇ ମଧ୍ୟ ମୁହଁ ଉପରେ ହସି କହିଲା– ତୋର ଆଲାଉ– ନା ଆଲାଉରେ କ'ଣ ଯାଏ ଆସେ ଝିଅ ? ମୁଁ ଘରର ପୁଅ ସାଙ୍ଗରେ କଥା ହେଉଛି । ପର ଝିଅର ସେଥିରେ କଥା କହିବାର କ'ଣ ଅଛି ? ତମର ସେହି ଗାଁର ପିଉସୀ ସହିତ କ'ଣ 'ସବୁ'ର ପିଉସୀର ତୁଳନା କରୁଛୁ ? ମୋର ପୁଣି ଭବିଷ୍ୟତ୍ ଚିନ୍ତା କ'ଣ ଅଛି ? ବୁଢ଼ା ଦିନେ ରୋଗ ବୈରାଗ ହେଲେ ପେନ୍‌ସନ୍‌ଟା ତ ଅଛି ସବୁ'ରେ ! ଫ୍ଲାଟ୍‌ଟାର ବର୍ଣ୍ଣନା ଶୁଣି ମୋର ଆଉ ଧୈର୍ଯ୍ୟ ରହୁନି । ଟଙ୍କାଟା ଉଠାଇ ନେଇ କମ୍ପାନୀରେ ଜମା ଦେଇଦେଲେ ତୁ ଆମର ମହାନୁଭବ ଘରବାଲାଟାର ନାକ ଆଗରେ ସଟାଙ୍ଗ୍ କରି ଘର ଛାଡ଼ିବାର ନୋଟିସ୍‌ଟା ପକାଇଦେ । ଓଃ, ଆଜିକାଲି ଯାହା ଅସଭ୍ୟତା କରୁଛି ଲୋକଟା !

ସର୍ବୋତ୍ତମ ଟିକିଏ ସାବଧାନରେ କହିଲା– ଧୀରେ, ପିଉସୀ ଧୀରେ । ଆଜିକାଲି କିଏ ଏମିତି ଝପ୍‌କିନା ଗୋଟାଏ ପୁରୁଣା ଭଡ଼ାଘର ଛାଡ଼ି ଦିଏନି । ସେସବୁ ଭାବିଚିନ୍ତି କରିବାକୁ ପଡ଼ିବ ।

ଉତ୍ତମା କହିଲା– ତୋର ଏତେ ଭାବିବା ଚିନ୍ତିବା ଜାଣିନି ବାପା । ଆଜିକାଲି ଲୋକଟା ଏତେ ଅଭଦ୍ର ହୋଇଯାଇଛି । ଦେଖୁଛୁ ତ ଦି' ଦି ମାସ ହେଲା ଆଉ ଏକଥା ସେକଥା କହି ଘରଭଡ଼ାର ରସିଦ ଦେଉନି । କ'ଣ ମତଲବ ତାର କେଜାଣି । ଖାଲି କହୁଛି, ଆପଣମାନେ ଛାଡ଼ିଦେଲା ମାତ୍ରେ ଏ ଘରୁ ମୁଁ ସୁନାର ଦାମ୍ ପାଇବି ।

– ହଁ ତା ପାଇପାରେ- ସର୍ବୋତ୍ତମ ହସିଉଠି କହିଲା, ତେବେ ତାକୁ ସେଇଟା ପାଇବାକୁ ଦେବାନି । 'ମତଲବ' ରଖି କିଛି କରିପାରିବନି ସେ ।

ସର୍ବୋତ୍ତମ ଉଠିପଡ଼ିଲା । କଥା ଫାଙ୍କରେ ଅବଶ୍ୟ ଖାଇବା ପର୍ବ ସରିଯାଇଛି । ଉଠି ପଡ଼ିବାର ହେତୁ ଅବଶ୍ୟ ବିପାଶାର ଚାଲିଯିବା । ସ୍ତ୍ରୀ ଘରୁ ଚାଲିଯିବା ପରେ ବେଶି ସମୟ ରହିବାକୁ ତାକୁ ସ୍ୱସ୍ତି ଲାଗେ ନାହିଁ ।

ତୁତୁନ୍ କହିଲା- ଆଈ, ଆମେ ଭାରି ସୁନ୍ଦର ଗୋଟାଏ ଘରେ ରହିବାକୁ ଯିବା ?

ରହିବାକୁ ଯିବା କ'ଣଲୋ ବୋକୀ ? କହ ରହିବା । ତୁ ଆଉ ମୁଁ ବାରଣ୍ଡାରେ ବେତର ଚଉକି ପକାଇ ବସି ମନ ଅନନ୍ଦରେ ରାସ୍ତା ଦେଖିବା ଆଉ ଗପ କରିବା ।

— କି ମଜା ! କି ମଜା !- ତୁତୁନ୍ ତାଳିମାରି କହିଥିଲା- ଭାରି ସୁନ୍ଦର ଘର ନା ଆଈ ? ଏ ଘରଟା ଗନ୍ଧିଆ, ଅସନା ।

ପ୍ରଥମେ ଯେତେବେଳେ ତୁତୁନ୍ କଥା କହିଲା ବାପାଙ୍କ ଦେଖାଦେଖି ବାପାଙ୍କ ପିଉସୀକୁ ପିଉସୀ କହୁଥିଲା । ବିପାଶା ରାଗି ରାଗି ବକି ବକି ଛଡ଼େଇଛି । —ପିଉସୀ ପୁଣି କ'ଣ ? କହୁଛି ନା ଆଈ ହେବେ ? ଆଈ କହ ।

ଉତ୍ତମା କହିଥିଲା- ପିଲାଲୋକ ଯାହାଇଚ୍ଛା କହୁ ବିପାଶା । ଡାକିବାରେ କ'ଣ ଯାଏ ଆସେ ?

— କାହିଁକି ଯିବନି ? ପିଲାଦିନର ଅଭ୍ୟାସ ରହିଯିବ । ବାପ ମଧ କହୁଛନ୍ତି ପିଉସୀ, ଝିଅ ମଧ କହୁଛି ପିଉସୀ ! ଓଲଟ ପାଲଟ କଥା ମୁଁ ଦେଖି ପାରେନା ।

ହୁଏତ 'ଆଈ' ଡାକଟା ଭିତରେ ଟିକିଏ ବାର୍ଦ୍ଧକ୍ୟର ସ୍ପର୍ଶ ରହିଛି ବୋଲି ସେଇଟାକୁ ହିଁ ଗ୍ରହଣଯୋଗ୍ୟ ମନେକରିଥିଲା ବିପାଶା । ଏକ୍‌ରେ ତ ପିଉସୀ ଶାଶୁ ଚେହେରା ଚରିତ୍ରରେ, ଚଳଣି ଆଚାରରେ 'ଚିରତରୁଣୀ', ତା' ଉପରେ ପୁଣି 'ପିଉସୀ' ଡାକଟି ଚିରକାଳ ପାଇଁ ରହିଥିବ ? କାହିଁକି ? ନିଜେ ଦିନକୁ ଦିନ ମୋଟା ହୋଇଯାଇ ବୁଢ଼ୀ ହୋଇଯାଉଛି ବୋଲି ପିଉସୀଶାଶୁ ଉପରେ ବିପାଶାର ଗୋଟିଏ ଚପା ଆକ୍ରୋଶ ରହିଛି ।

ହଁ, ତାପରେ ?

ତା'ପରେ ସେଇ ଗୋଟାଏ ଦିନ ? ହଠାତ୍ ବଜ୍ର ପଡ଼ିଗଲାନି ?

ଉତ୍ତମାର ଜଣେ ପ୍ରାକ୍ତନ ଛାତ୍ରୀର ପୁଅର ଅନ୍ନପ୍ରାଶନକୁ ନିମନ୍ତ୍ରଣ ଥିଲା । ନିମନ୍ତ୍ରଣ ଖାଇ ଫେରି ଦୋତାଲାରେ ଚଢୁ ଚଢୁ ପାହାଚ ପାଖରେ କାନ ଉପରେ ସେ ବଜ୍ରପାତଟା ଘଟିଲା ।

– ତମେ କ'ଣ ଭାବୁଛ ପିଉସୀଙ୍କୁ ମଧ୍ୟ ନୂଆ ଫ୍ଲାଟ୍‌କୁ ନେଇଯିବ ?

ଉତ୍ତମା ଠିଆ ହୋଇପଡ଼ିଥିଲା । ନା, କାନ ପାତିବାକୁ ନୁହେଁ । ପାଦ ଦୁଇଟା ଚାଲିବାର କ୍ଷମତା ହରାଇବାରୁ ।

ସେମାନେ ହୁଏତ ଭାବି ନ ଥିଲେ ଦି'ପହରର ନିମନ୍ତ୍ରଣ ଏତେ ଶୀଘ୍ର ସରିଯିବ । ସେଥିପାଇଁ ନିଜସ୍ୱ 'ଆଳାପ ଚାରିତା'ରେ ଗଳାର ସ୍ୱର ନିମ୍ନ ହୋଇ ନ ଥିଲା । ଆଉ ଉତ୍ତମା ବିନା ଶବ୍ଦରେ ସହଜରେ ଘରେ ପଶିପାରିଥିଲା, କାରଣ ଠିକା ବାସନ ମଜା ଚାକରାଣୀ ଦୁଆର ଖୋଲା ରଖି ଅଗଣାରେ ବସି ବାସନ ମାଜୁଥିଲା ।

ସେକାଳିଆ ଘରର ଯାହା ଗଢ଼ଣ । ଦାଣ୍ଡ ଦୁଆରେ ପଶିଲାକ୍ଷଣି ଅଗଣାରେ ବାସନ ମାଜିବା ପାଇଁ କଳ ଆଉ ପାଣିକୁଣ୍ଡ ଦେଖିବ । ଯାହା ଉତ୍ତମା ଆଜନ୍ମ ଦେଖିଥିଲେ ମଧ୍ୟ ସବୁବେଳେ ତାହାପାଇଁ ଦି'ଆଖିର ବିଷ ବୋଲି ତାକୁ ମନେ ହୋଇଛି । ଆଜି ମଧ୍ୟ ପଶିଲାକ୍ଷଣି ମନେହୋଇଥିଲା-ଏ କୁଦୃଶ୍ୟଟା ଆଉ ବେଶିଦିନ ସହିବାକୁ ପଡ଼ିବନି ।

ବର୍ତ୍ତମାନ ପାଦ ଅଟକି ଯିବାରୁ ହଠାତ୍ ସାରା ପୃଥିବୀ ଭିତରେ ଉତ୍ତମା ନାଁର ଗୋଟାଏ ନିଶ୍ୱାସ ରୁଦ୍ଧ ହୋଇ ଆସିବା ପ୍ରାଣୀ ଶୁଣିବାକୁ ପାଇଲା- ହେଇଟି ଦେଖ ! ତା'ହେଲେ ତ ତମେ ମୋର ପ୍ଲାନ୍‌ଟାକୁ ଭାରି ବୁଝିଛ ଦେଖୁଛି ? କହିଲି, ନା ଏବେ ଗୃହପ୍ରବେଶ ନା କଣ ସେଥିକୁ ସାଙ୍ଗରେ ନେଇଯିବା, ପୂଜାର ଯୋଗାଡ଼ତ ତାଙ୍କୁହିଁ କରିବାକୁ ପଡ଼ିବ, ତେଣୁ ତାଙ୍କର ରହିବା ଦରକାର ! ଦୁଇ ତିନିଦିନ ପରେ ଯେମିତି କୁହାଯାଇଛି ଏ ଘରଟାକୁ ଅଟକାଇ ରଖିବାର ଆଳରେ ଏଠାକୁ ଆଉଥରେ ନେଇ ଆସିବା । ଘରବାଲାକୁ ତ କହିଛି ମୁଁ ନୂଆ ଫ୍ଲାଟ୍‌କୁ ଗଲେ ମଧ୍ୟ ମୋ ଫ୍ୟାମିଲିର କିଛି ଅଂଶ ଏଠି ରହିଥିବେ-ତେଣୁ ଘର ଛାଡ଼ିବାର ଆଉ ପ୍ରଶ୍ନ ଉଠୁନି ।

ଏ କାହାର ସ୍ୱର ? ଏ କାହାର ଭାଷା ?

ଏ ସ୍ୱର କ'ଣ ଯା ପୂର୍ବରୁ କେବେ ଶୁଣିଥିଲା ଉତ୍ତମା ? ଆଉ ଏ ଭାଷା ? ... ଯେଉଁ ସ୍ୱର ସେତେବେଳେ ମଧ୍ୟ ନିଃଶଙ୍କ ଚିତ୍ତରେ କହି ଚାଲିଥିଲା- ହଁ, ହଁ, ନିଶ୍ଚିନ୍ତରେ ରହ, ତମର ଭିଣେଇ ରିଟାୟାର୍ କରି କଲିକତାକୁ ଚାଲିଆସି ଏ ଘରଟାକୁ ପାଇବେ । ଭୟ ନାହିଁ । ତେବେ ଟେନେଣ୍ଟ୍ ହିସାବରେ ମୋର ନାଁଟା

ରହିଥିବ । କାରଣ ବଦଳାଇବାକୁ ଗଲାକ୍ଷଣି ବିପଦରେ ପଡ଼ିବା । ସେଥିରେ ତ ଆହୁରି ଅଧିକ ସୁବିଧା ହେବ– ପିଉସୀ ରହିଥିବ । ମୋର ଫ୍ୟାମିଲି । ଆରେ ବାବା, ଏସବୁ ତ ଆମର ପ୍ଲାନ୍‌ରେ ଅଛି । ତମର ନାନୀ ଓ ଭିଣୋଇ ମାତ୍ର ଦି ଜଣ ଲୋକଙ୍କର ସଂସାର, ଖାଲି ଦୋତାଲାଟା ହେଲେ ଚଳିଯିବ । ତଳ ମହଲାଟା ପିଉସୀର ହୋଇ ରହିବ । ଘରର ଅଧେ ଭଡ଼ା ମୁଁ ନିଜେ ଦେବି । କି କଥା...ସେ ଜିନିଷପତ୍ର ସଜାଡୁଛନ୍ତି ବୋଲି କ'ଣ ଏମିତି– ଟିକିଏ କାଇଦା କରି ମ୍ୟାନେଜ୍ କରିବାକୁ ପଡ଼ିବ ।

ତା'ପରେ ଗୋଟିଏ ପରିଚିତ ସ୍ୱର କାନକୁ ଶୁଭିଲା, ଠିକ୍ ଅଛି । ଏ ବ୍ୟବସ୍ଥାର ଯେମିତି ଏପଟ କି ସେପଟ ହେବନି । କାଳକଯାକ ଗୋଟେ ବୁଢ଼ୀ ଅଭିଆଡ଼ୀ ପିଉସୀଶାଶୁଙ୍କୁ ମୁଣ୍ଡରେ ବୋହି ବୋହି ପ୍ରାଣଗଲା । ପୁଣି ସ୍ୱର୍ଗକୁ ଯାଇ ମଧ ଢେଙ୍କି ଧାନ କୁଟିବ ?

କିନ୍ତୁ ଉତ୍ତମାର ପୁତୁରାକୁ ମଧ ଏକ ପ୍ରଚଣ୍ଡ ବଜ୍ରାଘାତରେ ଆକାଶରୁ କଚାଡ଼ି ପଡ଼ିବାକୁ ହେଲାନି ?

ସେହି କଚାଡ଼ି ପଡ଼ିବାର ସକ୍‌ରୁ ସମ୍ଭାଳି କଥା କହିବାକୁ ତାକୁ ଅନେକ ସମୟ ଲାଗିଥିଲା ।

ତା'ପରେ କହିଥିଲା– ଭାବି ଦେଖିଲ ଯେ- ?

ଉତ୍ତମାର ମନେପଡୁନି କିପରି ଏହି 'ନବଜୀବନ'ର ବ୍ୟବସ୍ଥାଟା କରିଦେଇଥିଲା ସେ ।

ଉତ୍ତମା ଜାଣିନି କିପରି ପୁତୁରା ପାଖରେ କଥାଟା କହିଥିଲା । ଅଥଚ କହିଥିଲା– ହଁ, ଭାବି ଦେଖିଲି, ଏ ବୁଢ଼ା ବୟସରେ ଏମିତି ଆଉ ନିଜର ଖାଇବା ରହିବାର ଝାମେଲା ନେଇ ଖଟି ମରିବା ଦେହରେ ଯିବନି । ସେଇ ଓଲ୍‌ଡ଼୍ ହୋମ୍‌ରେ ଯାଇ ପଡ଼ି ରହିବା ଭଲ । ତୋର ଦେଢ଼ଶାଶୁ ସବୁ ଯେତେଦିନ ପର୍ଯ୍ୟନ୍ତ ନ ଆସନ୍ତି, ସେତେଦିନ ପର୍ଯ୍ୟନ୍ତ, ଅନ୍ତତଃ ଘରଟାକୁ ଜଗି ରହିବି ?...ହେଉ, ତା କେମିତି ହେବ ? ସେଠି ବ୍ୟବସ୍ଥା କରିଦେଇଛି । ଖାଲି ଘର ପାଇଲେ

ଘରବାଲା ଜୋର୍ କରି ଦଖଲ କରିବ ? ମୁଁ କ'ଣ କରିବି ? ସେମିତି ହିଂସ୍ର ହୋଇଥିଲେ ଖାଲି ଘରଟାରେ ଗୋଟାଏ ମଡ଼ା ଭଳି ବୁଢ଼ୀକୁ ଖତମ କରି ପକାଇ ମଧ୍ୟ ଦଖଲ କରିବା ହୋଇଯିବରେ ବାପା ! ... ସେଠାର ଖର୍ଚ୍ଚ ? ସେ କଥା ତୁ ଆଉ ମୁଣ୍ଡ ଘୂରାନାରେ ବାପ । ମୋର ସେ ଲାଇଫ୍‌ଇନ୍‌ସିଓରେନ୍ସ୍‌ଟା ମାଚିଓର୍ କରିଗଲାଣି ଜାଣିଛୁ ତ । ଆଉ ଜାଣିଛୁ- ସ୍କୁଲଟା କେବେଠାରୁ 'ସରକାରୀ' ହୋଇଯାଇଛି ? ତେବେ ? ପେନ୍‌ସନ୍‌ଟି କୁଆଡ଼େ ଯିବ ?

ବିପାଶାର ନାନୀ କହିଥିଲା- ମଣିଷ ଏତେ ନିମକହାରାମ୍ ହୁଏ କିଲୋ ? ଜୀବନ ସାରା ତମେମାନେ ତାକୁ ଦେଖିଲ, ଆଉ ସେ ତମମାନଙ୍କର ଏ ଟିକକ ଉପକାର କରିପାରିଲାନି ? ବରଂ ଚାଲିଯିବାବେଳେ ଶତ୍ରୁତା କରି ଘରର ଚାବିଟା ଘରବାଲା ହାତରେ ଦେଇଗଲା ?

– ତା'ହେଲେ ତ ଜାଣୁଛୁ ନାନୀ, କି 'ଜିନିଷ' ନେଇ ଏତେଦିନ ହେଲା ମତେ ଘର କରିବାକୁ ପଡ଼ିଛି ? ... ଥରକୁ ଥର ପଚରାଗଲା । ଆପଣ ସେଠିକୁ କେବେ ଯିବେ, କୋଉ ତାରିଖରେ ଯିବେ କହନ୍ତୁ । ସେଦିନ ଆମେ କେହି ଆସି ଚାବିଟା ନେଇଯିବୁ । କଦାପି ତାରିଖ ବତାଇଲେନି । - ଦେଖିବି, ଏବେ ମଧ୍ୟ ଠିକ୍‌ରୂପେ କାଗଜପତ୍ର ପାଇନି କହିଲେ । ବିଶ୍ୱାସଘାତକ । ଏକ ନମ୍ବର ବିଶ୍ୱାସଘାତକ । ... ହେଲେ ସେ କଥା କ'ଣ ତୋର ଭଉଣୀଜୋଇଁ ବୁଝୁଛନ୍ତି ? ତାଙ୍କ କଥା ଟିକିଏ କହିବାକୁ ଗଲାକ୍ଷଣି କହନ୍ତି– ଥାଉ ସେସବୁ କଥା । ମୋର ଭାଗ୍ୟ ଚାରିଆଡୁ ସମାନ । ନିଜର ଜନ୍ମକଲା ଝିଅଟା ସୁଦ୍ଧା ଯେତେବେଳେ ସେତେବେଳେ କହୁଛି - ତୁମେ ପାଉଁଶ, ତୁମେ ଗନ୍ଧିଆ । ତମ ପାଖରେ ରହିବିନି, ଆଈ ପାଖକୁ ଚାଲିଯିବି । ଆଈକୁ ତମେ ତଡ଼ି ଦେଇଛ ।

ଏ ମା' ! ଏ ପୁଣି କି କଥା ? ଝିଅ ତ ତୋର ଭାରି ପକ୍‌କା ଜଣେ ହୋଇଛି ?

ହେବନି ? ଜନ୍ମରୁ ତ ପକ୍‌କା କଥା ଶୁଣୁଛି । ... ଝିଅଟାର କୁଶିକ୍ଷାର ଡରରେ ମଧ୍ୟ ତାଙ୍କୁ ମୁଣ୍ଡରେ ଲଦି ଆଣିବା ବିରୋଧରେ ଆହୁରି ଅଧିକ ଏତେ କାଠ ପୋଡ଼ିଥିଲି ମୁଁ !

ଉରମାର ବିଶ୍ୱାସଘାତକତାରେ ବିପାଶାର ନାନୀ ଭିଣେଇ ନିଶ୍ଚିନ୍ତ ଆଶ୍ରୟଟିରୁ ବଞ୍ଚିତ ହୋଇଛନ୍ତି । ଘରବାଲା ଚାବିଟା ହାତରେ ପାଇଲାମାତ୍ରେ ଘରେ ମିସ୍ତ୍ରୀ ମୂଲିଆ ଲଗାଇ ଚଟ୍‌ପଟ୍ ସବୁ ଭଙ୍ଗାଭଙ୍ଗି ଆରମ୍ଭ କରିଦେଇଛି । ସେମାନେ ଏଇଲେ ଯେତେଦିନ ଘର ପାଇନାହାନ୍ତି ସାନଭଉଣୀର ନୂଆ ଫ୍ଲାଟ୍‌ରେ ଓହ୍ଲାଇ ଡେରା ମାଡ଼ି ବସିଛନ୍ତି ।

ଅବଶ୍ୟ ଅସୁବିଧା ହେଉନି । ଫ୍ଲାଟ୍‌ଟାରେ ଦୁଇଟା ବେଡ୍‌ରୁମ୍ । ପ୍ରଚୁର ଜାଗା ଅଛି । ଆଉ ସେମାନେ ତ ମାତ୍ର ଦୁଇପ୍ରାଣୀ ।

ଏସବୁ କଥା ଅବଶ୍ୟ ଉରମାର ଜାଣିପାରିବାର କଥା ନୁହେଁ । ତେବେ ଉରମାର ସେହି ମହାମାୟା ଲେନ୍‌ର ଚିରଦିନର ବାନ୍ଧବୀ, ଶିଶିରବାବୁଙ୍କ ବିଧବା ଭଉଣୀ ମନୋରମା ମଝି ମଝିରେ ଆସେ ଦେଖା କରିବାକୁ । ବାହିର ଯେତେସବୁ ଖବର କହିଦେଇଯାଏ । କହେ...ସେ ଅଣତିରିଶି ନମ୍ବର ଘରଟାର ଏକାବେଳେ ଚେହେରା ବଦଳିଗଲାଣି ।

ଉରମା ହସେ- ସେଇଟା ଆଉ କାହାର ବଦଳୁନି କହିଲୁ ?

ନବଜୀବନ ଭବନରେ ରବିବାର ଦିନଟା ହେଉଛି ନିୟମ ଅନୁସାରେ 'ଭିଜିଟାର୍ସ ଡେ' । ଅନ୍ୟଦିନ ଆସିଲେ କ'ଣ ଆଉ ଦେଖା କରି ପାରନ୍ତିନି ? ନା, ପାରନ୍ତି । ତେବେ ଆଗରୁ ଟିକିଏ ଜଣାଇଦେବାକୁ ହୁଏ । ଆଉ ରବିବାର ଦିନ ଥାଏ ଅବାଧ ଅଧିକାର । ଅତଏବ ରବିବାରରେ ଅଳ୍ପ ଭିଡ଼ ହୁଏ ।

ଅବଶ୍ୟ ବେଶି କିଛି ନୁହେଁ । ଏହି ଗୃହଚ୍ୟୁତ ବୁଢ଼ାବୁଢ଼ୀଙ୍କ ପାଇଁ ମନ କେମିତି ହେବା ପାଇଁ ଧାଇଁ ଆସିବା ଲୋକ ଆଉ କାହାନ୍ତି ? ବେଶି ଭାଗରେ କର୍ତ୍ତବ୍ୟ ଯୋଗୁ ଆସିବା ଲୋକ ଥାଆନ୍ତି ।

'ଅନେକଦିନ ହେଲା ଯିବା ହେଇନି, ଖରାପ ଦିଶୁଛି । ମା' କ'ଣ ଭାବୁଥିବେ, 'ଅଥବା 'ବାପା କ'ଣ ଭାବୁଥିବେ' ? - ଏହି ମନୋଭାବ ନେଇହିଁ ଆସିବା ପ୍ରଭୃତି ତେବେ ମାସର ପ୍ରଥମ ରବିବାରରେ ଭିଡ଼ ହୋଇଥାଏ । ସେଦିନ ପେମେଣ୍ଟର ଦିନ । ଯଦିଚ ଅନେକଙ୍କ ପାଖରେ ନିଜ ନିଜର ଚେକ୍ ବହି ଅଛି । ସେମାନଙ୍କ ପାଇଁ ଆଉ ଆତ୍ମୀୟମାନେ ପେମେଣ୍ଟ୍ କରିବାକୁ ଆସନ୍ତି ନାହିଁ । ସେମାନଙ୍କର ପେମେଣ୍ଟ୍ ହୁଏ ନିଜ ନିଜ ଅମାନତର ସୁଧରୁ ଅଥବା ବ୍ୟାଙ୍କ୍ ମାରଫତ୍ ପାଇଥିବା ପେନ୍‌ସନ୍‌ରୁ ।

ଆଜି ରବିବାର । ମାସର ପ୍ରଥମ ରବିବାର ।

ମିସ୍ ମଲ୍ଲିକଙ୍କ ପାଖକୁ ଜଣେ ପୁତୁରା ଆସିଥିଲା । ଆହ୍ଲାଦରେ ଭାସୁଥିଲେ ମିସ୍ ମଲ୍ଲିକ । ତାକୁ ଧରି ବସିଥିଲେ କମନରୁମ୍‌ରେ । ସେହି ଆଳରେ ଚା' ମଗାଇଛନ୍ତି । ଥରକୁ ଥର କହୁଛନ୍ତି– ଏଠାରେ ତାଙ୍କୁହିଁ କେମିତି ବିଶେଷ ସମାଦରରେ ରଖାଯାଉଛି ।

ଦର୍ଶନ ଦିବସରେ କାହାରି କାହାରି କେହି ଆସନ୍ତି, ଅନେକଙ୍କର ଆସନ୍ତି ନାହିଁ । ଯେଉଁମାନଙ୍କର ଆସନ୍ତି ସେମାନେ ଯେପରି ଏକ ବିଶେଷ 'ଗୌରବର ପୋଷ୍ଟ'କୁ ଉଠିଯାଆନ୍ତି । ଯେଉଁମାନଙ୍କର କେହି ଆସନ୍ତି ନାହିଁ ମୁହଁ ଶୁଖାଇ ରହନ୍ତି ସେମାନେ ।

ତେଣୁ ରବିବାରଟା ଅନେକଙ୍କର ଦୁଃଖଦ ଦିନ । କାହାର କାହାର ବା ସୁଖର ।

ଉତ୍ତମା ସୋମ୍ ଆଉ ଦେବଜ୍ୟୋତି ବୋଷ୍‌ଙ୍କର ଅବସ୍ଥା କ'ଣ ?

ସେମାନେ ଆଜି ଏକ ଦୁର୍ଲଭ ସୁଖ ଆହରଣ କରିପକାଇଛନ୍ତି । ଆଜି ସେ ଦୁହିଁଙ୍କର ଦୁଃଖ କିଛି ନାହିଁ ।

ଆଜି ସକାଳେ କେତେ ଘଣ୍ଟା ଆଶ୍ରମ ଛାଡ଼ି ଯିବାପାଇଁ ଉତ୍ତମା ଛାଡ଼ପତ୍ର ପାଉଛି । ତାର ଜଣେ ପୂର୍ବତନ ସହକର୍ମିଣୀ ପାଖକୁ ବେଲୁଡ଼୍‌କୁ ଆଜି ସକାଳୁ ସେ ଚାଲିଗଲାଣି ।

ଆଉ ଦେବଜ୍ୟୋତି ବୋଷ୍ ? ତାଙ୍କର ମଧ ସେଇୟା, ଜଣେ ଅସୁସ୍ଥ ନିକଟ ଆତ୍ମୀୟଙ୍କୁ ଦେଖାକରିବାକୁ ଅନୁମତି ନେଇ ଚାଲିଯାଇଛନ୍ତି । ହଁ, ଆଶ୍ରମର ଏହିପରି କେତୋଟି ନିୟମ ରହିଛି । ବାହାରିବା ଆଗରୁ ଆଶ୍ରମ ଖାତାରେ ଲେଖି ଦେଇ ଯିବାକୁ ହୁଏ- ସହରର କେଉଁଆଡ଼କୁ କେଉଁ ଠିକଣାରେ ତୁମେ ଯାଉଛ ଏବଂ କେତେ ସମୟ ପାଇଁ । ଫେରିଆସି ପୁଣି ଖାତାରେ ସ୍ୱାକ୍ଷର କରିବାକୁ ହୁଏ - ସମୟଟା ଉଲ୍ଲେଖ କରିବାକୁ ପଡ଼େ ।

ଉତ୍ତମା କହିଥିଲା– ମନୋଜ, ଯେ ତ ଜେଲ୍‌ଖାନାଠାରୁ ମଧ ଅଧିକ । କଏଦୀମାନଙ୍କ ପାଇଁ ମଧ ଏମିତି କଟକଣା ନାହିଁ ।

ମନୋଜ କହିଥିଲା– କ'ଣ କରାଯିବ କହନ୍ତୁ ମାଉସୀ ? ବୁଢ଼ା ମଣିଷମାନଙ୍କ ପାଇଁ ମଧ ଗୋଟାଏ ଦାୟିତ୍ୱ ରହିଛି ତ ? ରାସ୍ତାରେ କେଉଁଠି କିଛି

ବିପଦ ଆପଦ ଘଟିଲେ ଭବନର ବଦନାମ ହୋଇଯିବ। ଧରନ୍ତୁ କେହି ବୁଲିଆସୁଛି କହି ଆଉ ଫେରିଆସିବେନି– କୋଉ ବାଟେ ଯାଇ ତାଙ୍କୁ ଖୋଜିବୁ ?

ସବୁ ଓଲ୍ଡ୍ ହୋମ୍‌ରେ କ'ଣ ଏହି ଏକାପରି ବ୍ୟବସ୍ଥା ?

ତା ତ କହିପାରିବିନି ମାଉସୀ। ଆମ ସାର୍‌ଙ୍କର ଏସବୁ ଆଇନକାନୁନ୍ ଅଛି। କିନ୍ତୁ ଆଇନ୍ କାନୁନ୍ ଯାହା ହୋଇଥାଉ ପଛକେ ଦୁଇଜଣ ଲୋକଙ୍କ ଭିତରେ ଯଦି ଜଣଙ୍କର ଗନ୍ତବ୍ୟସ୍ଥଳ ହେଲା- 'ବେଲୁଡ଼', ଆରଜଣଙ୍କର 'ବାଲି'। ଆଉ ଦିହିଁଙ୍କର ଯଦି ଇଚ୍ଛା ହେଲା- ଏତେ ଦୂର ଆସିଛେ ଥରେ ବେଲୁଡ଼ର ମନ୍ଦିରଟିକୁ ଦେଖିଦେଇ ଯିବା, ସେଇଟା ନିଶ୍ଚେ ବେଆଇନ୍ ନୁହେଁ।

ଦେବଜ୍ୟୋତି କହିଲେ- ଏ ଗଙ୍ଗା ତୀରଟି କେଡ଼େ ସୁନ୍ଦର, କି ଅପୂର୍ବ। ଭାବୁଛି 'ସେ' ଚାଲିଯିବା ପରେ ଘରେ ଯେତେବେଳେ ଏକା ଥିଲି, ପ୍ରତିଦିନ ଭୋର୍‌ରୁ ଏଠାକୁ ଚାଲିଆସି ଟିକିଏ ବୁଲି ଯାଉନଥିଲି କାହିଁକି ? ଖାଲି ବସି ରହିଲେ ମଧ୍ୟ ମନ ଭିତରେ ପୂର୍ଣ୍ଣତା ଆସୁଛି।

ଉତ୍ତମା କହିଲା- ମୁଁ ମଧ୍ୟ ଠିକ୍ ସେଇ କଥା ଭାବୁଥିଲି। ଆମେ ଖାଲି 'ଘର', 'ଘର' ବୋଲି ମରୁଛୁ ଆଉ ସମୟ ଅଭାବର ଆଳ ଦେଖାଉଛୁ, ତେଣୁ ଏଭଳି ସବୁ ଭଲ ଲାଗିବା ଜାଗାକୁ ଆସିପାରୁନୁ। କିନ୍ତୁ ଆଳଟା କାହାକୁ ଦେଖାଉଛୁ ? ନିଜକୁ। ନୁହେଁ ?

– ଠିକ୍ କଥା। ମୋଉ ଅସୁସ୍ଥ ମାମୁପୁଅ ଭାଇକୁ ଦେଖିବାକୁ ବାଲିକୁ ଆସିଥିଲି ତାର ଏମିତି ଅଭ୍ୟାସ ଥିଲା ଯେ ପ୍ରତି ରବିବାର ସକାଳେ ଏ ମନ୍ଦିରକୁ ନିଶ୍ଚେ ଚାଲି ଆସିବ। ଏବେ ଦେହଖରାପ ହେବାରୁ ଆଉ ଆସୁନି। ଆସି ପାରୁନି।

– କ'ଣ ହେଇଛି ତାଙ୍କର ?

– ମାରାତ୍ମକ ଖରାପ କିଛି ନୁହେଁ। ତେବେ ଅସୁବିଧାଜନକ। ଏମିତି ଦଉଡ଼ ଧାପଡ଼ କରିବା ଲୋକଟା ଏବେ ବାତରୋଗରେ ପଡ଼ି ଏକାବେଳେ ଅଚଳ ହୋଇଯାଇଛି। ମୁଁ ଭବନକୁ ଚାଲିଆସିବା ପରେ ସେ ଜଣେ କେବଳ ମୋ'ପାଖକୁ ଚିଠିପତ୍ର ଦିଏ।

– ଶୁଣିଛି ଯୋଗବ୍ୟାୟାମରେ କୁଆଡ଼େ ଏସବୁ ରୋଗ ଭଲ ହେଉଛି।

– ହଁ, ସେଇଆ କହୁଥିଲା । କରୁଛି ବୋଧହୁଏ । ତେବେକେ ହସି ହସି କହୁଥିଲା, ସାରା ଦେହଟା ଭିତରେ ପାଦ ଦୁଇଟାହିଁ ହେଉଛି ସବୁଠାରୁ ଦାମିକା, ଦେଖୁ ଭାଇନା । ମୁଁ ତ କହୁଛି, କିଏ ଯଦି କହିବ-ମୋର ମୁଣ୍ଡଟା ବଦଳରେ ପାଦ ଦୁଇଟାକୁ ସଚଳ କରିଦେବ, ମୁଁ ହସି ହସି ମୋ' ମୁଣ୍ଡଟା ନିଜ ହାତରେ କାଟି ଦେଇ ତା ହାତରେ ଦେଇ ପକାଇବି ।

ଉତ୍ତମା ହସି ପକାଇଲା । କହିଲା, ଭଦ୍ରଲୋକ ତ ବେଶ୍ ମଜା କଥା କହନ୍ତି ।

– ହଁ, ସବୁବେଳେ । ସେଥିପାଇଁ ତ.ମୋ ସ୍ତ୍ରୀ ସଙ୍ଗେ ତାର ସବୁବେଳେ ଶ୍ରଦ୍ଧା ସ୍ନେହର ସମ୍ପର୍କ ଥିଲା । ଦିଅର -ଭାଉଜ ଏକାଠି ହେଲେ ଆଉ ରକ୍ଷା ନାହିଁ, ମାତ୍ର ଦି'ଜଣ ଲୋକ ଭିତରେ ଏକାବେଳେ ଗୋଟାଏ ସଭା ହୋଇ ଯାଉଥିଲା ।

– ମାତ୍ର ଦି'ଜଣ ? କାହିଁକି ଆପଣ ?

– ମୁଁ ? ମୋର କଥା ଛାଡ଼ି ଦିଅନ୍ତୁ ? ଖାଲି ଭଲ ଶ୍ରୋତା ହେବାର କ୍ୟାପାସିଟି ମୋର ଅଛି ।

– ଆରେ ବାବା ! ସେଇଟା ମଧ କମ୍ ନା କ'ଣ ?

– ଆଶ୍ଚର୍ଯ୍ୟ ! ସେ ମଧ ସେଇୟା କହୁଥିଲା । କହୁଥିଲା- ଦୁଇରେ ମହାସୁଖ, ତିନିରେ କଳି । ମାନେ ତିନିଜଣ ଏକା ସଙ୍ଗେ କଥା କହିଲେ ଗୋଳମାଳ —

ଉତ୍ତମା ହସିପକାଇ କହିଲା- ବୁଝିଲି ।

– ଆପଣ ଏତେ ସହଜରେ ସବୁ ବୁଝିପାରନ୍ତି । ଆଜି ମାନୁ ସହିତ କଥା ହେଉ ହେଉ—ମାନେ ମୋର ସେ ଭାଇ ମାନସର କଥା କହୁଛି— ହଁ, ତା ସହିତ କଥା କହୁ କହୁ ବାରମ୍ବାର ମନେ ହେଉଥିଲା ତା ସହିତ ଆପଣଙ୍କୁ ପରିଚୟ କରାଯାଇଥାନ୍ତା ।

ଅବାକ୍ ହୋଇଗଲାପରି ଉତ୍ତମା କହିଲା- ତାଙ୍କ ସହିତ ମୋର ? କ'ଣ ହୁଅନ୍ତା ?

ଦେବଜ୍ୟୋତି ଟିକିଏ ନିସ୍ତବ୍ଧ ହୋଇଯାଇ କହିଲେ— ନା, ଅନ୍ୟକିଛି ନୁହେଁ । ଆପଣ ଦୁଇଜଣ ଏକାଠି ହୋଇଥିଲେ ନିଶ୍ଚୟ ଭାରି ସରଗରମ୍ ହୋଇଥାନ୍ତା ମଜ୍‌ଲିସ୍‌ଟା ।

ଉତ୍ତମା ହସି ହସି କହିଲା– ନିଜେ ତ ମଉଜିଆ ନୁହଁନ୍ତି ତଥାପି ସେଥିରେ ଷୋହଳଅଣା ଆକର୍ଷଣ ତ ରହିଛି-

ଦେବଜ୍ୟୋତି ଦାର୍ଶନିକର ଗଳାରେ କହିଲେ– ସେଇଟା ହିଁ ହେଉଛି ତ ମଣିଷ ଧର୍ମ ମିସ୍ ସୋମ୍ । ଯାହା ନିଜ ଭିତରେ ଅଭାବ, ଅନ୍ୟ ଭିତରେ ତାହା ଦେଖିଲାକ୍ଷଣି– ହେଲେ ସେ କଥା ଥାଉ । ଆଜି ଯେତେବେଳେ ଦୈବକ୍ରମରେ କଥା କହିବାର ଏପରି ଗୋଟାଏ ସୁଯୋଗ ମିଳିଯାଇଛି, ଆଜି ଆପଣ ନିଜର କଥା କହନ୍ତୁ । ଓଃ, ଆପଣଙ୍କୁ ଗେଟ୍ ଆଗରେ ଦେଖି-

ଦୈବକ୍ରମ ! ମନେ ମନେ ଟିକିଏ ହସିଲା ଉତ୍ତମା । ଏହାକୁ ଏକ ଘଟାଇ ଦେବା ଦୈବ ବୋଲି କୁହାଯାଇପାରିବ । ...ଗତକାଲି ତମେ ମହାଶୟ ଯେତେବେଳେ ମନୋଜକୁ କହିଥିଲ ବାଲିରୁ ଟିକିଏ ବେଲୁଡ଼ ମଠକୁ ଯାଇ ବୁଲି ଆସିପାରିବି, ଫେରିବାକୁ ସାଢ଼େ ବାରଟା ବାଜିଯାଇପାରେ, ...ସେତେବେଳେ ଯାଇ ମୋର ବେଲୁଡ଼ର ବାସିନ୍ଦା ସାଙ୍ଗ ଶମ୍ପା ପାଇଁ ମନଟା ଭୀଷଣ ଘାଉରି ହେଲା । ... ଆଚ୍ଛା, କାହିଁକି ? କାହିଁକି ପୁଣି, ଏହି ବୋଧବୁଦ୍ଧିହୀନ ଆକୁଳତା-ମାର୍କା ବିଚରା 'ବିଧବା' ଲୋକଟା ପାଇଁ ଟିକିଏ ମାୟାମମତା କରୁଣା ଅଛି ବୋଲି ! ...ଅନେକକ୍ଷଣ ଧରି କଥା କହିବାର ସୁଯୋଗ ନ ପାଇଲେ ତାକୁ ମୋର ଜୀବନ-ବୃତ୍ତାନ୍ତ ଶୁଣାଇଁବି କିପରି ? ଶୁଣି ତାଙ୍କର କି ସ୍ୱର୍ଗ ଲାଭ ହେବ କେଜାଣି ଭଗବାନ ଜାଣନ୍ତି । ଯାଉ– ଆଜି ଶୁଣାଇଦିଏ ।

ଫେରିଲାବେଳକୁ ବସ୍‌ରେ ବସି ଦେବଜ୍ୟୋତି ନିଃଶ୍ୱାସ ପକାଇ କହିଲେ, ଆପଣଙ୍କର ଦୁଃଖର ଉତ୍ସ କେଉଁଠି ସେ କଥା ବୁଝିପାରିଲି ।

ଉତ୍ତମା ହସିଦେଇ କହିଲା– ବାଃ, ଆପଣ ମଧ ତ ବେଶ୍ ଚଟ୍‌କିନା କଥାଟା ବୁଝିପାରିଲେ ?

ଦେବଜ୍ୟୋତି କହିଲେ– ହୁଏତ ଅନୁଭୂତିବଶତଃ ।

– ହୁଁଃ । ତେବେ ମଝି ମଝିରେ ଭାବେ, ଯେଉଁମାନଙ୍କର କିଛି ଆର୍ଥିକ ସାମର୍ଥ୍ୟ ଅଛି ସେମାନଙ୍କର ତ ତେବେକେ ସ୍ନେହହୀନ ମରୁଭୂମିରୁ ଘୁଞ୍ଚି ଆସିବାର

କୌଣସି ପଥ ଥାଏ । କିନ୍ତୁ ଯେଉଁମାନେ ନିତାନ୍ତ ଆର୍ଥିକ ସାମର୍ଥ୍ୟହୀନ ? ଯେଉଁମାନେ ନିତାନ୍ତ ଅନ୍ନବସ୍ତ୍ର ପାଇଁ ସେହି ନିଷ୍ଠୁର ସଂସାର ଭିତରେହିଁ ପଡ଼ି ରହିବାକୁ ବାଧ ହୁଅନ୍ତି ?

ଆପଣ ଭାବନ୍ତି ମିସ୍ ସୋମ୍ ? ମୁଁ ମଧ ମଝି ମଝିରେ ଭାବେ- ମୋର ଯଦି ବୟସ ଥାଆନ୍ତା– ଆଉ ଅନେକ ଟଙ୍କା ଥାଆନ୍ତା, ସେହି ନିରୁପାୟମାନଙ୍କ ପାଇଁ ଏଭଳି ଗୋଟାଏ ଭବନ ତିଆରି କରିଥାନ୍ତି ।

ଉତ୍ତମା ହସିଲା– କ'ଣ କହିବି, ମୋର ମଧ ମଝି ମଝିରେ ସେଇୟା ମନେ ହୁଏ । ଅବଶ୍ୟ ଏତେ ବେଶି ଆରାମ ଆୟସର ଆୟୋଜନ କରାଯିବ ନାହିଁ । ମୋଟାମୋଟି 'ଫ୍ରୀ' ଧରଣର ତ ହେବ ! ତେବେ ନିହାତି 'ଦାତବ୍ୟ' ହେଲେ ପୁଣି ଅନେକଙ୍କର ସମ୍ମାନହାନି ହୋଇପାରେ । ଯାଉ– ସେ ସବୁ ତ କଳ୍ପନା-କୁସୁମ । ଏବେ ଭାବୁଛି– ଆପଣ ଆଉ ମୁଁ ଏକା ସାଙ୍ଗରେ ଗେଟ୍‌ରେ ନ ପହଞ୍ଚିଲେ ଭଲ, ଲୋକେ ଭାବିବେ ଏକା ସାଙ୍ଗରେ ବୋଧହୁଏ ବୁଲିବାକୁ ଯାଇଥିଲୁ ।

ଦେବଜ୍ୟୋତି ଉଡ଼ାଇ ଦେବାର ଭଙ୍ଗୀରେ କହିଲେ- କିଏ ଆମ ଆଡ଼କୁ କ'ଣ ଚାହିଁ ରହିଛନ୍ତି ?

– କେହି ନ ରହନ୍ତୁ । ମିସ୍ ମଲ୍ଲିକ ଚାହିଁଥିବେ ।

– ମିସ୍ ମଲ୍ଲିକ ?

– ହଁ । ସେ ବହୁତ ବେଶି ସଜାଇ ହେଉଥିବା ମହିଳା ଜଣକ ।

ସେ ସବୁବେଳେ ଆମର ଗତିବିଧି ପ୍ରତି ନଜର ରଖୁଛନ୍ତି । ଆମେ ଯେମିତି ଦି'ଜଣ ଟିନ୍-ଏଜର୍ । ...ହି ହି ହି ।

ଦେବଜ୍ୟୋତି ହଠାତ୍ ଗମ୍ଭୀର ହୋଇଗଲେ । ଆସ୍ତେ କହିଲେ- ତାଙ୍କୁ ଦୋଷ ଦେଇ ହେବନି ମିସ୍ ସୋମ୍, ମତେ ନିଜକୁ ହଠାତ୍ ଭାରି କମ୍ ବୟସର ବୋଲି ମନେହେଉଛି । ଭୁଲିଯାଉଛି ଏତେଗୁଡ଼ାଏ ବର୍ଷ ମୋ ଉପର ଦେଇ ବହିଯାଇଛି । କେତେ ଝଡ଼ ବୋହି ଯାଇଛି । ମନେ ହେଉଛି ସେହି କଲେଜ ଲାଇଫ୍‌ରେ ଉତ୍ତମା ସହିତ ଦେଖା ହେବାର ଆଶାରେ– କ୍ଷମା କରିବେ ମିସ୍ ସୋମ୍ । ପୁରୁଣା ସ୍ମୃତି ଉଚ୍ଛୁଳି ଉଠି ହଠାତ୍– ଆଚ୍ଛା, ମୁଁ ଏଇ ଷ୍ପେଚ୍‌ଟାରେ ଓହ୍ଲାଇ ପଡୁଛି । ଟିକିଏ ଚାଲି ଚାଲି ଯାଉ ଯାଉ ଆପଣ ପହଞ୍ଚିଯିବେ ।

ଉତ୍ତମା ଭାବିଲା-ନାଃ ! ମାୟାମମତା ଟିକିଏ କମାଇବାକୁ ପଡ଼ିବ । ଏଇ ଅଧପାଗଳ 'ବୁଢ଼ାକୁ ଆଉ ପ୍ରଶ୍ରୟ ଦେବା ଚଳିବନି ।

•

ଏ ଆଶ୍ରମରେ ମୋଟାମୋଟି ମହିଳାମାନଙ୍କ ଭିତରେ ଆଲୋଚନାଟା ହୁଏ, କାହିଁକି ଘର ଛାଡ଼ି ଚାଲିଆସିଲି ! ସେ ପ୍ରସଙ୍ଗର ମଧ୍ୟମଣି ଅବଶ୍ୟ ସେମାନଙ୍କର ନିଜ ନିଜର ପୁତ୍ରବଧୂ ।

ସମସ୍ତେ କିଛି ଧନବତୀ ବୋଲି କେବଳ ସେସବୁ ଭୟଙ୍କରୀମାନଙ୍କ ହାତରୁ ବାହାରି ଆସି ଭବନରେ ଶାନ୍ତିରେ ଅଛନ୍ତି ।

ମଣିମାଳା ଆଉ ସରଯୂ ଦେବୀ କଥା ହୁଅନ୍ତି– ପୁଅ ତ ମୋର ମହାଦେବଙ୍କ ପରି । ଅଶେଷ ଗୁଣବାନ୍ । ହେଲେ ସ୍ତ୍ରୀର ଭୟରେ 'ମା' ବୋଲି ଡାକି ପାଖକୁ ଟିକିଏ ଆସିବାକୁ ମଧ୍ୟ ସାହସ କରେନି । ମହାଦୁଷ୍ଟ ସ୍ତ୍ରୀ । ସବୁବେଳେ ତା ପାଖରେ ଯୋଡ଼ହସ୍ତ ହୋଇ ରହିବାକୁ ପଡ଼େ ।

– ଦେଖୁ ନାହାନ୍ତି ନାନୀ, ସମସ୍ତଙ୍କର ଜ୍ୱାଳା ତ ଗୋଟିଏ ! ଏଇ ଯେ ମୋ ପୁଅ ମତେ ଏଠାରେ ରଖିଦେଇଗଲା, ସେଇ ଜ୍ୱାଳାରେ, ସ୍ତ୍ରୀର କୁପରାମର୍ଶରେ । ଯେଉଁଦିନ ଦେଖିବାକୁ ଆସେ, ଚୋର ଭଳି ଆସେ । ଖାଲି ପଚାରେ– ମା',ତମର କିଛି ଅସୁବିଧା ହେଉନି ତ ?

– ଆହାଃ । ତମର ହେଲେ ପୁଅ ଏକୁଟିଆ ଆସେ । ମୋ କଥା ଦେଖୁଛନ୍ତି- ସବୁବେଳେ ପହରାବାଲା ଭଳି ବୋହୂ ଆସିବ । ଏବେ ମଧ୍ୟ ଡର, କାଳେ ପୁଅ ମା'କୁ ବେଶି ସ୍ନେହ କରିପକାଇବ । ହେଲେ ନିଜର ମଧ୍ୟ ତ ଦିନ ଆସୁଛି । ପୁଅର ବାହା ଦେଲୁଣି । ଦେଖିବୁନି !

ସୁକୁମାରୀ ଦେବୀଙ୍କର ପୁଣି ଅନ୍ୟପ୍ରକାର ଜ୍ୱାଳା । ସ୍ୱାମୀ ଥାଉଣୁ ତିନିପୁଅ ଚାକିରି କରିଯାଇଥିଲେ ତିନି ଜାଗାରେ । ଛୁଟିରେ ଘରକୁ ଆସୁଥାନ୍ତି । ଯାହାର ଯେତେବେଳେ ସୁବିଧା । ତେଣୁ ଭାଇ ଭାଇ ଭିତରେ ଯେ ଗୋଟାଏ ବେଶି ସ୍ନେହ ଥିଲା ତା ନୁହେଁ । ସମସ୍ତଙ୍କର ଚଳଣି ଏକାପ୍ରକାରର । କଲିକତାକୁ ଆସିଲେ ସାଙ୍ଗେ ସାଙ୍ଗେ ସ୍ତ୍ରୀ ପିଲାଙ୍କୁ ସ୍ତ୍ରୀର ବାପଘରେ ଛାଡ଼ିଦେଇ ନିଜେ ଆସନ୍ତି ବାପା

ମା' ପାଖକୁ । ନାଁ କୁ ଆସନ୍ତି । ପ୍ରତିଦିନ ସେମାନଙ୍କ ଶଶୁରଘରେ ନିମନ୍ତ୍ରଣ ଥାଏ । ଆଉ ଥାଏ ସ୍ତ୍ରୀର ହୁକୁମ୍‌କୁ ତାଲିମ୍ କରିବା କାମ । ପନ୍ଦରଦିନ ଭିତରେ ମା'ପାଖରେ ତିନିଓଳି ଖଣ୍ଡେ ଖାଆନ୍ତି ତ ଢେର୍ ବେଶି । ବାପ ମା'ତ ପୁଅକୁ ଆଖିରେ ଦେଖିବାକୁ ପାଆନ୍ତି ନାହିଁ । ନାତି-ନାତୁଣୀମାନଙ୍କୁ ଦେଖିବାକୁ ବିକଳ ହୋଇଥାଆନ୍ତି । ...ହଁ, ଛୁଟିରେ ଫେରିଗଲାବେଳକୁ ହୁଏତ ଓଳିଏ କି ଦିନଟାଏ ଘରକୁ ଆସି ନିମନ୍ତ୍ରଣ ଖାଇ ବିଦାୟ ଗ୍ରହଣ କରନ୍ତି ସେମାନେ !

ମଜାଟା ହେଉଛି- ତିନି ବୟସର ଏବଂ ତିନି ପ୍ରକୃତିର ତିନୋଟି ଭାଇ । କିନ୍ତୁ ଏହି ଗୋଟିକ ବିଷୟରେ ଆଚରଣବିଧି ହେଉଛି ଏକାବେଳେ ଏକ ।

ଯେତେଦିନ ଗୃହସ୍ଥ ବଞ୍ଚିଥିଲେ, ପୁରୁଣା କାମିକା ଲୋକବାକ ଥିଲେ, ସେତେବେଳେ ଏକପ୍ରକାର କଟିଯାଉଥିଲା । ଗୃହସ୍ଥ ଦେହରକ୍ଷା କରିବା ପରେ ଆସିଲା ମହାସଙ୍କଟ । ମା' ନିଜେ ସାହସ କଲେ ମଧ ହେଲାନି । ସବୁ କାଳର ସାହି, ପୁରୁଣା ଚାକର ଚାକରାଣୀ, ପାଖରେ ଚିହ୍ନା ଡାକ୍ତର ଏବଂ ଆଖପାଖରେ କେତେଜଣ ଆତ୍ମୀୟ-ସ୍ୱଜନଙ୍କ ଭରସା ଥିଲା । କାମ କରିବା ପାଇଁ ତିନି ତିନିଟା ଲୋକ, ଫ୍ରିଜ୍, ଟି.ଭି, ଟେଲିଫୋନ୍, ମଟର ଡ୍ରାଇଭର ! ଆରେ ବାବା ! ଭାବି ହେଉନି । ସ୍ତ୍ରୀ ଜାତିଟା ଯେତେଦିନ ଦୁଇଜଣ ସେତେଦିନ ମୂଲ୍ୟବାନ୍ । ଯେମିତି 'ଜଣେ' ହୋଇଗଲେ ସାଙ୍ଗେ ସାଙ୍ଗେ ତମର ବଜାର ଦର ଏକାବେଳକେ ଖସିଯିବ ।

ଆଗ ଯେତେବେଳେ ପୁଅମାନେ ଏ ପଡ଼ାର ଘରଟାରେ ସଜଡ଼ା ହୋଇଥିବା ସଂସାରଟାରେ ଆସି ରହୁଥିଲେ, ସବୁ ଦେଖୁଛନ୍ତି, ହେଲେ ସେତେବେଳେ ଅପଚୟଟା ଏଭଳି ଧରା ପଡ଼ିନଥିଲା ସେମାନଙ୍କ ଆଖିରେ ! କି ଅପଚୟ ! ବାପ ଗଲାକ୍ଷଣି ହଠାତ୍ ଆଖି ଖୋଲିଗଲା ପୁଅଙ୍କର ! ଅଥବା କୁହାଯାଇପାରେ ଆଖି ଗୁଡ଼ାକ କପାଳକୁ ଉଠିଗଲା । ଦୁଇଟା ବୁଢ଼ାବୁଢ଼ୀ ମିଶି ଏତେଦିନ ହେଲା ଏମିତି ପଇସା ନଷ୍ଟକରି ଚାଲିଥିଲେ ? ହେଉ ପଛକେ ବ୍ୟବସାୟର ଟଙ୍କା, ତେବେ ଭାବିବା ତ ଉଚିତ ଥିଲା । ଏ ବ୍ୟବସାୟଟି ସବୁକାଳେ ରହିବନି (ଯେପରି ସେମାନଙ୍କର ମୋଟା ଦରମାର ଉଚ୍ଚପଦର ଚାକିରିଗୁଡ଼ାକ ଚିରଦିନ ରହିବ । କାହିଁ ପରିଣାମ ଭାବି କ'ଣ ନିଜ ନିଜର ଦିଲ୍ଲୀ, ବମ୍ବେ, ପାଟନାର ଜୀବନରେ କିଛି ଆଡ଼ମ୍ବର କମୁଛି ?)

ଯାଉ, ଯେଉଁମାନଙ୍କର ଭାବିବା ଉଚିତ ଥିଲା, ସେମାନେ ନ ଭାବିଲାରୁ, ପୁଅମାନେ ହିଁ ଭାବିଲେ ଏବଂ ଦେଖାଗଲା ଏହି ଗୋଟିକ କଥାରେ ମଧ ତିନି ପ୍ରକୃତିର ତିନୋଟି ଭାଇଙ୍କ ଭିତରେ ଆଶ୍ଚର୍ଯ୍ୟ ଏକତା ରହିଛି ।

ଅତଏବ ତିନିଜଣଙ୍କର ସମବେତ ଚାପରେ ସୁକୁମାରୀଙ୍କୁ ସ୍ୱାମୀଙ୍କ ବ୍ୟବସାୟ ଆଉ ବିରାଟ ଘରଟା ବିକିଦେବା ସିଦ୍ଧାନ୍ତରେ ମତ ଦେବାକୁ ପଡ଼ିଥିଲା ।

ବିଦ୍ୟାରେ ଟିକିଏ କମ୍ ମୋଟା ବୁଦ୍ଧିର କାରବାରୀ ବରକୁ ମନେ ମନେ ସୁକୁମାରୀ ସମାଜରେ ସେଭଳି କୁଳୀନ ବୋଲି ଗଣୁ ନ ଥିଲେ । ଅବଶ୍ୟ ଶ୍ରଦ୍ଧା ଓ ସ୍ନେହ ଯଥେଷ୍ଟ ଥିଲା ! ବର ସଙ୍ଗେ ଲଢ଼େଇ କରି ପୁଅମାନଙ୍କୁ ଉଚ୍ଚଶିକ୍ଷା ଦେଇଥିଲେ, ନିଜେ ଉଚ୍ଚଶିକ୍ଷିତା ନ ହେଲେ ବି ।

ସ୍ୱାମୀ କହିଥିଲେ- ଗୋଟେ ପୁଅ ହେଲେ ଅନ୍ତତଃ ବ୍ୟବସାୟଟା ଦେଖିଥାନ୍ତା..

ସୁକୁମାରୀ କହିଥିଲେ– ତମକୁ ମୋ'ରାଣ, ମୋ ପୁଅମାନଙ୍କୁ ତମର ସେଇ ଷ୍ଟିଲ୍‌ଟ୍ରଙ୍କ୍ ଆଉ ଲେଦର୍ ସୁଟ୍‌କେସ୍‌ର ବ୍ୟବସାୟ କରିବାକୁ ଦେବିନି ମୁଁ । ସେମାନଙ୍କର ପିଲାଦିନରୁ ମୋର ବଡ଼ ଇଚ୍ଛା, ମୋ ମାମୁଙ୍କ ପିଲାମାନଙ୍କ ପରି ସୁଟ୍ ଟାଇ ପିନ୍ଧି ଅଫିସକୁ ସେମାନେ ଯିବେ ।

ହଁ, ସେ ଇଚ୍ଛା ପୂରଣ ହୋଇଥିଲା ସୁକୁମାରୀଙ୍କର ।

ତେବେବି ଆଶ୍ଚର୍ଯ୍ୟ ! ପୁଅମାନେ ଯେତେବେଳେ ବାପାଙ୍କର ସେ ବ୍ୟବସାୟ ଭାଙ୍ଗିଦେଲେ, ସୁକୁମାରୀଙ୍କର ଛାତି ଫାଟି ଯାଇଥିଲା ।

ଆଉ ଘରଟାକୁ ବିକିଦେବାବେଳେ ?

ସେ କଥା ଆଉ ନ ଭାବିବାହିଁ ଭଲ । ଏବେ ମଧ ମନେପଡ଼ିଲେ ପ୍ରାଣଟା ଶହେ ଖଣ୍ଡ ହୋଇଯାଏ । ସେ କହିଥିଲେ– ମୁଁ ମରିବା ପର୍ଯ୍ୟନ୍ତ ଏବେ ଟିକିଏ ଅପେକ୍ଷା କରିଯାଅ । ପରେ ବିକି ଦେବ ।

ସାନବୋହୂ ହି ହି ହୋଇ ହସି କହିଥିଲା– ତା ମାନେ ଆପଣ ଚାହାନ୍ତି ପୁଅମାନେ ଆପଣଙ୍କର 'ମରଣ'କୁ ତ୍ୱରାନ୍ୱିତ କରିବା ପାଇଁ ପ୍ରାର୍ଥନା ସଭା ବସାଇବେ ?

ମଝିଆବୋହୂ କହିଥିଲା– ପୁଅମାନଙ୍କର ସ୍ୱସ୍ତି-ଅସ୍ୱସ୍ତି କଥା ତ ପୁଣି ଆପଣଙ୍କର ଦେଖିବା ଉଚିତ ! ଆପଣଙ୍କୁ ଏଭଳି ଏକା ରଖି–

ହଁ, ସୁକୁମାରୀଙ୍କ ପିଲାମାନେ ଅବିଚକ୍ଷଣ ନୁହନ୍ତି । ସେମାନେ ଘର ବିକିବା ଟଙ୍କାକୁ ସମାନ ଭାଗରେ ଚାରି ଭାଗ କରି, ମା'ଙ୍କ ଭାଗଟାକୁ ବ୍ୟାଙ୍କ୍‌ରେ ଜମା ରଖିଦେଇ ବ୍ୟବସ୍ଥା କରିନେଇଥିଲେ, ମା ବର୍ଷକୁ ଚାରିମାସ ଜଣେ ଜଣେ ପୁଅ ପାଖରେ ରହିବେ ଏବଂ ମା'ଙ୍କର ହାତ ଖର୍ଚ୍ଚ ଅଥବା ପିନ୍ଧିବା-ଖାଇବା, ରୋଗ ବ୍ୟାଧିର ବ୍ୟୟ ନିର୍ବାହ ହେବ ସୁଧ ଟଙ୍କାରୁ ।

ଖାଇବା ଖର୍ଚ୍ଚ ଅବଶ୍ୟ ପିଲାମାନେ ଦେବେ । ଯେତେବେଳେ ଯାହା ପାଖରେ ରହିବେ ରାଜା ପରି ରହିବେ । ଆଉ ଲଗାଣ ଗୋଟାଏ ଜାଗାରେ ରହିବାଠାରୁ ବେଶି ଆଦର ଆଉ ଆନନ୍ଦ ଭିତରେ ରହିବେ ।

କିନ୍ତୁ ବୁଦ୍ଧି ତ ପୋଡ଼ା । ଏତେ ସୁନ୍ଦର ସୁବ୍ୟବସ୍ଥାରେ ରାଜି ହେଲେ ନାହିଁ ସୁକୁମାରୀ । ଚିରଦିନ ପୁତ୍ରଗର୍ବରେ ଗର୍ବିତା ସୁକୁମାରୀଙ୍କର ହଠାତ୍ ମନେ ପଡ଼ିଗଲା ପିଲାଦିନେ କେବେ କେଉଁଠି ଯେପରି ପଢ଼ିଥିଲେ-

"ଯଦ୍ୟପି ବିଧବା ନାରୀ ରାଜମାତା ହୁଏ ।

ତଥାପି ସମାଜ ତାକୁ ଅଭାଗିନୀ କହେ ।"

ସେତେବେଳେ ପଢ଼ି ବହୁତ ରାଗ ଲାଗିଥିଲା । ମନେହୋଇଥିଲା, ଯେଉଁମାନେ ପୁଅକୁ ମଣିଷ ପରି ମଣିଷଟିଏ କରିପାରନ୍ତି ନାହିଁ ସେମାନେ ହିଁ ଏପରି ଅସଙ୍ଗତ ଭାବନା ଭାବିପାରନ୍ତି ।

କିନ୍ତୁ ଏବେ ସୁକୁମାରୀ କହିଲେ- ବର୍ଷକୁ ତିନିଥର ଠାଆରୁ ଉଠିବି ? ଏ ବୟସରେ କରିପାରିବିନି ବାପା । ତା'ଠାରୁ ବରଂ ତମେମାନେ ଏଇଠି କୋଉଠି ମୋ ପାଇଁ ଗୋଟାଏ ଛୋଟ ଧରଣର ବ୍ୟବସ୍ଥା କରିଦିଅ ।

ଛୋଟ ଧରଣର ? ତମେ ରହିବ କେଉଁଠି ? ଭଲ ପଡ଼ାରେ ଗୋଟିଏ ବଖରାର ଫ୍ଲାଟ୍ ମଧ ଆଜିକାଲି ହଜାରେ ଟଙ୍କା । ତା'ପରେ ପୁଣି ଏଷ୍ଟାବ୍ଲିଶ୍‌ମେଣ୍ଟର ସବୁ ଖର୍ଚ୍ଚ ରହିଛି । ଷ୍ଟୋଭ୍ ଜାଳି ଜଣକ ପାଇଁ ହେଲା ପରି ରନ୍ଧା ରାନ୍ଧି ଯଦିବା ଖାଇପାରିବ, ବାସନ ମାଜିପାରିବ ? ଘର ପୋଛି ପାରିବ ? ଲୁଗା କାଚି ପାରିବ ? ଦୋକାନ ବଜାର କରିପାରିବ ? ଅତଏବ ଗୋଟାଏ ଲୋକ ଦରକାର । ତା'ପରେ...

ବଡ଼ବୋହୂ କହିଲା- ଠାଆ ନ ବଦଳାଇବାର କ'ଣ ଅଛି ଯେ ? ଆପଣଙ୍କୁ ତ ଆଉ ଶଗଡ଼ରେ ବସି ଗାଁ ଗହଳିକୁ ଯିବାକୁ ପଡ଼ିବନି । ଫାର୍ଷ୍ଟ କ୍ଲାସ୍ ଟ୍ରେନ୍‌ରେ ଜର୍ଣ୍ଣି ! ତା ଛଡ଼ା ନିଜ ପାଇଁ ତ ଆଉ କୌଣସି ଦାୟିତ୍ୱ ରହୁନି !

ଏ କଥାଟା ମଧ୍ୟ ମନେ ମନେ ଭାବି ନେଇଥିଲା ବଡ଼ ବୋହୂ, ଶାଶୁ ଥିଲାବେଳେ ପଢୁଥିବା ପୁଅଝିଅଙ୍କୁ ତାଙ୍କ ଦାୟିତ୍ୱରେ ରଖିଦେଇ ଦୁହେଁଯାକ ନିଜେ କୁଆଡ଼ୁ ବୁଲିଦେଇ ଆସିପାରିବେ । ପିଲାମାନେ ବଡ଼ ହେଲା ପର୍ଯ୍ୟନ୍ତ ସେମାନଙ୍କର ସ୍କୁଲ ଆଉ ପରୀକ୍ଷା ପାଇଁରେ ବାପା ମା' ବନ୍ଦୀ । ହେଲେ ମା' 'ଜନନୀ'ସେ ଭାବନାରେ ବାଦ ସାଧିଲେ ।

ମଝିଆ ଓ ଛୋଟ ମଧ୍ୟ ଭାବି ଦେଇଥିଲେ ବୁଢ଼ୀ ଏକାବେଳେ ସବୁଦିନ ପାଇଁ ମୁଣ୍ଡରେ ବୋଝ ହେଲେ ଅସୁବିଧା । ଏଥିରେ ସୁବିଧା ଅଛି । ଅନ୍ୟ-ଯା'ଟାକୁ ଜିଣି ଦେଇ ଆଦର-ଯତ୍ନ କରି ଦେଖାଇଦେବି ।

ହେଲେ ସମସ୍ତଙ୍କ ଗୁଡ଼ରେ ବାଲି ପଡ଼ିଗଲା ।

ସୁକୁମାରୀ ଭାବିଲେ— ଏ ଭଙ୍ଗା ଦେହ ମନ ଧରି ବିରାଡି ପିଲା କୁକୁର ପିଲା ଭଳି ହେବି ? ନା ବାପା, କାହିଁକି ସାନପୁଅ କ'ଣ କହିପାରନ୍ତା ନାହିଁ, ମା', ତମେ ମୋ ପାଖରେ ରହିବ ଚାଲ !

ସାନପୁଅ ପାଖରେ ରହିବାଟା ହିଁ ସ୍ୱାଭାବିକ । ବେଶି ଭାଗ ମା' ମାନେ ତ ସେମିତି ରହନ୍ତି ! ତା ଛଡ଼ା ପାଟନାରେ ସୁକୁମାରୀଙ୍କର ନିଜ ନାନୀଙ୍କର ପିଲାମାନେ ମଧ୍ୟ ଅଛନ୍ତି । ତା' ଛଡ଼ା ଆଉ କେତେ ଜଣ ଆତ୍ମୀୟ ମଧ୍ୟ ଅଛନ୍ତି ଦୁଇ କୂଳର । ମଝିରେ ମଝିରେ ସେମାନଙ୍କ ସହିତ ଦେଖାସାକ୍ଷାତ ହୋଇପାରନ୍ତା । ମୋଟ ଉପରେ ସେଠି ସୁକୁମାରୀ ଭଲରେ ରହିପାରିଥାନ୍ତେ ।

କିନ୍ତୁ ଖାଲି ଆମରି ପାଖରେ ରହ- ଏମିତି କଥା ମୁହଁକୁ ସୁଦ୍ଧା ଆଣିନି ସାନ ପୁଅ । ଭାଇନା ଭାଉଜଙ୍କ ସଙ୍ଗେ ଆଲୋଚନା କରିବାକୁ ବସିଛି— ବର୍ଷର କେଉଁ ସମୟଟା ମା କାହା ପାଖରେ ରହିଲେ କାହାର ସେଭଳି କିଛି ଅସୁବିଧା ହେବନି ।

ନିଜ ପ୍ରତି ବଡ଼ ଧିକ୍‌କାର ଆସିଥିଲା ସୁକୁମାରୀଙ୍କର ।

ଅଥଚ ଭାଗରେ 'ମା' ଶବ୍ଦଟା ଯେ ସେ ଶୁଣି ନ ଥିଲେ, ତା ନୁହେଁ । ଶବ୍ଦଟା ଯେ ଖାଲି ଏ ଯୁଗର ସୃଷ୍ଟି ତା ମଧ୍ୟ ନୁହେଁ । ତେବେକେ ନିଜକୁ ସେଇୟା ବୋଲି ବିଶ୍ୱାସ କରି ପାରୁ ନ ଥିଲେ । ଯେମିତି ସ୍ୱାମୀଙ୍କ ମୃତ୍ୟୁ ପରେ ମଧ୍ୟ ନିଜକୁ ଆଉ ପାଞ୍ଚଜଣ ବିଧବାଙ୍କ ଭଳି ଭାବି ପାରି ନ ଥିଲେ ।

ଭବନରେ ରହିବା ପ୍ରସ୍ତାବଟାକୁ ନିଜେ ବାଢ଼ିଲେ । କେବେ ଗୋଟାଏ ଟି.ଭି.ରେ ଦେଖିଥିଲେ ସେ । ପିଲାଙ୍କୁ କହିଲେ, ସେଠାରେ ଖବର ନେ ।

ପୁଅମାନେ ଚମକି ପଡ଼ିଲେ, ଓଲଡ୍ ହୋମ୍ ? ସେଠି ରହିବାକୁ ଚାହୁଁଛ ? ତା' ଅର୍ଥ ଆମମାନଙ୍କ ମୁହଁରେ ଚୂନକାଳି ଦେବ ?

— ବାଃ, ତା କାହିଁକି ? ସେଠି ଦୁସ୍ଥ, ଦୁଃଖୀ ନାହାନ୍ତି, ଭଲ ଭଲ ଘରର ଲୋକ ରହିଛନ୍ତି ।

ଚାର୍ଜ ଶୁଣି ପୁଅମାନେ ଥରିଗଲେ ଆଉ ଥରେ— ମାସକୁ ଦୁଇହଜାର ଟଙ୍କା ! ଜଣେ ନିହାତି ସ୍ୱଳ୍ପାହାରୀ ଶୀର୍ଣ୍ଣଦେହୀ ବୁଢ଼ୀ ପାଇଁ ?

ସୁକୁମାରୀ ତଥାପି ଜିଦ୍ ଧରିଲେ । କହିଲେ ବ୍ୟବସାୟ ଓ ଘରବିକା ଟଙ୍କାର ମୋ ଭାଗରେ କର, ନ ଅଣ୍ଟିଲେ ତମେମାନେ ଦେବ । ଚାରିମାସ ଲେଖାଏଁ ରଖି ଖାଇବାକୁ ତ ଦେଇଥାନ୍ତରେ, ସେଥିରେ କ'ଣ ଟଙ୍କା ଖର୍ଚ୍ଚ ହୁଅନ୍ତା ନାହିଁ ?

ବୋହୂମାନେ କହିଲେ— ଶାଶୁଙ୍କୁ ଦେଖିଲେ ମନେହୁଏ ସେ ବଡ଼ ଇନୋସେଣ୍ଟ୍ । ବିଷୟ ବୁଦ୍ଧି କିଛି ନାହିଁ । ହି, ହି, ହି ଏଇଲେ ତ ଦିଶିଲାଣି-

ତା'ପରେ ସେମାନେ ମା'ଙ୍କୁ ଏଠି ରଖାଇଦେଇ ଯେ ଯାହାର କର୍ମସ୍ଥଳକୁ ଚାଲିଗଲେ ।

ମଝିରେ ମଝିରେ ଅବଶ୍ୟ କାମ ପଡ଼ିଲେ କଲିକତାକୁ ଆସନ୍ତି, ମା'କୁ ଦେଖିଯାଆନ୍ତି । ଏବେ ସେମାନଙ୍କର ମନେ ହେଉଛି— ବ୍ୟବସ୍ଥାଟି ସର୍ବସୁବିଧାଯୁକ୍ତ ହୋଇଛି, କାରଣ ଚାରିମାସ କହିଲେ ଯେ ଠିକ୍ ଚାରିମାସ ହୋଇଥାନ୍ତା ସେଥିର ନିଶ୍ଚୟତା କ'ଣ ଅଛି ? ଏ ବୟସରେ ମଣିଷ ବେମାର ପଡ଼ିପାରେ । ଅସାବଧାନରେ କଚାଡ଼ି ହୋଇପଡ଼ି ହାତ-ଗୋଡ଼ ଭାଙ୍ଗି ପାରେ, ପାରାଲିସିସ୍ ହୋଇ ଅନନ୍ତକାଳ ବିଛଣାରେ ପଡ଼ି ରହିବା ମଧ୍ୟ ବିଚିତ୍ର ନୁହେଁ । ସେତେବେଳେ ? ସେତେବେଳେ

ତ ଯାହା ପାଖରେ ରହିଲାବେଳେ ଏଭଳି ଘଟିବ, ତା'ର ଜୀବନ ମହାନିଶାରେ ପରିଣତ ହୋଇଯିବ । ଏ ବ୍ୟବସ୍ଥାରେ ତ ମଣିଷ ଏକାବେଳେ ଶେଷ ଦିନ ପର୍ଯ୍ୟନ୍ତ ନିଶ୍ଚିନ୍ତ । କାହାରି ଦେହ ଟିକିଏ ହେଲେ ଆଞ୍ଚୁଡ଼ି ହେବନି ଏବଂ କେହି କାହାକୁ ଦୋଷାରୋପ କରିପାରିବେନି ।

ଏହାପରେ ଯେ ଯେତେବେଳେ ଆସିଛି, ଦେଖିଛି ଏଠାର ଅଧିବାସୀମାନେ ସତରେ ବେଶ୍ ଅଭିଜାତ । ଏମାନେ ଯଦି ରହିପାରିଛନ୍ତି ତେବେ ତାଙ୍କ ମା'ଙ୍କ କଥାରେ ନିନ୍ଦାର କ'ଣ ଅଛି ? ତା'ଛଡ଼ା— କ୍ରମେ ତ ଦେଖା ଯାଉଛି ଏ ଦେଶରେ ମଧ 'ଓଲ୍ଡ୍ ହୋମ୍' ବେଶ୍ ଜାତିରେ ମିଶି ଚାଲୁ ହୋଇଗଲାଣି । ଯେମିତି କେତେବର୍ଷ ଆଗରୁ ମଧ 'ସମାଜ' 'ଡିଭୋର୍ସ' ଝିଅ ଶୁଣିଲାକ୍ଷଣି କାଠ ପାଲଟି ଯାଉଥାଏ, ଏବେ କ'ଣ ଆଉ ସେମିତି ହେଉଛି ?

ପିଲାଏ ଏବେ ଆସିଲେ କହନ୍ତି— ମା' ! ତମେ ବେଶ୍ ଭଲରେ ଅଛ । କିଛି ଦାୟିତ୍ୱ ନାହିଁ । ଲୋନ୍‌ଲି ଫିଲ୍ କରିବାର ପ୍ରଶ୍ନ ନାହିଁ । ତମର କେତେ ସମବୟସୀ ଏଠାରେ ଅଛନ୍ତି । ଘରେ ଥିଲେ ଏତେ ବୁଢ଼ୀ ତମେ କୋଉଠୁ ପାଇଥାନ୍ତ ! ଓଃ, ତମକୁ ଦେଖି ହିଂସା ହେଉଛି । ଆମମାନଙ୍କର ଯେ କେତେ ଜ୍ୱାଳା ।

ଏହିପରି ଆହୁରି ଅନେକ ଅଛନ୍ତି ଏ ଭବନରେ ।

ଅସଲ କଥା ହେଉଛି- ଯାହାର ଯେମିତି ପରିବେଶ ଥାଉ ପଛକେ ମୂଳ କଥା ଗୋଟାଏ । ଯେପରି ଦାରିଦ୍ର୍ୟ-ପୀଡ଼ିତମାନଙ୍କ କ୍ଷେତ୍ରରେ ଲୋକେ ଯେତେପ୍ରକାର ଦୁଃଖଦୁର୍ଦ୍ଦଶାରେ ଧକ୍କା ଖାଇ ଖାଇ ଦିନାତିପାତ ବା ଜୀବନାତିପାତ କରନ୍ତି ସେମାନଙ୍କର ସେହିସବୁ ଜୀବନ-ଇତିହାସ ସରୁ ଚାଲୁଣିରେ ଛାଣିଦେଲେ ଦିଶିବ ଏକପ୍ରକାରର ହିଁ ବସ୍ତୁଚୂର୍ଣ୍ଣ ! ଅଭାବ । ଅର୍ଥାଭାବରୁହିଁ ଜାଗତିକ ସବୁ ପ୍ରକାରର ଅଭାବର ମୁକାବିଲା କରିବାକୁ ପଡ଼େ ।

ବାର୍ଦ୍ଧକ୍ୟ ପୀଡ଼ିତମାନଙ୍କ କ୍ଷେତ୍ରରେ ମଧ ସେହି ଏକା କଥା । ଯାହାର ଯେପରି ବର୍ଣ୍ଣ-ବୈଚିତ୍ର୍ୟ ଥାଉ, ସମସ୍ତଙ୍କର ଇତିହାସଗୁଡ଼ିକ ଏକାଠି କରି ସରୁ ଚାଲୁଣିରେ ଚଳେଇ ଦେଖିଲେ ଚିକ୍‌କଣ ଧୂଳିରେ ଝରି ପଡ଼ିବ ସେହି ଏକ ବସ୍ତୁ— 'ମୂଲ୍ୟ ହରାଇବା', 'ଅପ୍ରୟୋଜନୀୟତା' 'ଆଉ ଅଦରକାରୀ' ହୋଇଯିବା । ନିରୁପାୟତା, ଅସହାୟତା ଏବଂ କେନ୍ଦ୍ରଚ୍ୟୁତି । ଏକଦା ଯେଉଁଠି ସର୍ବୋଚ୍ଚ ଶିଖରରେ କେନ୍ଦ୍ରବିନ୍ଦୁରେ ମଧମଣିରୂପେ ଶାସନ ଚଳାଇ ସବୁକିଛିକୁ ମୁଠା ଭିତରେ

ଚିପି ଧରି କର୍ତ୍ତୃତ୍ୱ କରିଆସିଛନ୍ତି ସେମାନେ, ସେହିଠାରେ ହିଁ ଆଉ ପାଦତଳେ ଟାଣ ମାଟି ଖୋଜି ପାଆନ୍ତି ନାହିଁ। ମୁଠା ଢିଲା ହୋଇଯାଇ ସବୁ କିଛି ବାହାରି ଯାଉଛି। ବିଧାତାଙ୍କ ନିୟମ ପରି ଏହି ଅକାଟ୍ୟ ନିୟମଟିକୁ ମାନି ନେଇପାରିଲେ ହିଁ ସବୁ ଗୋଳମାଳ ତୁଟି ଯାଇପାରନ୍ତା, କିନ୍ତୁ ମାନିନେବାଟା ଯେ ବଡ଼ କଠିନ ! ମୃତ୍ୟୁ ମଧ ତ ଅକାଟ୍ୟ। ତେବେକେ ଏକାନ୍ତ ପ୍ରିୟଜନ କ୍ଷେତ୍ରରେ ସେହି ଚିରସତ୍ୟ ଟିକକକୁ କ'ଣ ସହଜରେ ମାନି ନେଇପାରିବା ? କେତେ ବେଦନା, କେତେ ହାହାକାର, କେତେ ମୁଣ୍ଡ ପିଟା !

ଏ କଥା ମଧ ପ୍ରାୟ ସେହିପରି। ଯେଉଁଠାରେ 'ମୁଁ' ଏକଛତ୍ରାଧିପତି ଥିଲି, ସେଠାରେ ମୋର ଅସ୍ତିତ୍ୱର କିଛିମାତ୍ର ସ୍ୱୀକୃତି ନାହିଁ। ଅତଏବ ହାହାକାରଟା ମୃତ୍ୟୁଶୋକ ପରି। ନିଜେ ହେଉଛନ୍ତି ମୃତଜନ।

ଆଜି ସୁକୁମାରୀଙ୍କ ଘରକୁ ମଧ ଭିଜିଟର୍ ଆସିଛନ୍ତି। ମଝିଆପୁଅ ଆଉ ମଝିଆବୋହୂ। ସୁକୁମାରୀଙ୍କୁ ଭାରି ଆନନ୍ଦ ଲାଗୁଛି। ଯେପରି ସ୍ୱୟଂ ଭଗବାନ୍ ଆସି ଠିଆ ହୋଇଛନ୍ତି ସୁକୁମାରୀଙ୍କ ଘରେ।

କହିଥିଲେ– ଭିଜିଟର୍‌ମାନଙ୍କ ପାଇଁ ଚା'ବ୍ୟବସ୍ଥା ଅଛି। କହିଲେ ଦେବେ। ଯାଇ ଦେଖିବି ?

ବୋହୂ ଅମାୟିକଭାବରେ କହିଲା-ନା, ନା। ଏସବୁ ନେଇ ଆପଣଙ୍କୁ ବ୍ୟସ୍ତ ହେବାକୁ ପଡ଼ିବନି। କେମିତି ଅଛନ୍ତି କୁହନ୍ତୁ !

ଦେହତ ଭଲ ଅଛି ମା'।

ପୁଅ କହିଲା– ତା' ହେଲେ ଆଉ ଅନ୍ୟ କିଛି ଅସୁବିଧା ନାହିଁ ତ ?

– ନା, ଅନ୍ୟ କିଛି ନୁହେଁ। ତମେ ସମସ୍ତେ ଭଲ ଅଛ ଜାଣିପାରିଲେ ମନଟା ଥଣ୍ଡା ରହେ। - ମଝି ମଝିରେ ଗୋଟେ-ଅଧେ ଚିଠି ପାଉଥିଲେ-

ପୁଅ କହିଲା– ମୋ କଥା ତ ଜାଣିଛ ତମେ ମା', ଚିଠିପତ୍ର ଲେଖି ଆସେନି। ଆଉ ତମର ଏ ବୋହୂଟିତ ଆହୁରି ଚାଖଣ୍ଡେ। ହେଲେ ଭାଇନା ଆଉ ସାନ ତ ନିୟମିତ ଲେଖୁଥିବେ।

ଆଶ୍ଚର୍ଯ୍ୟ ହୋଇ ସୁକୁମାରୀ କହିଲେ– କାହିଁ ମ ? କିଏ କହିଲା ?

— ନା ମୁଁ ଭାବିଥିଲି, ସେମାନେ ତ ଆଉ ମୋ ଭଳି ଲଗାମଛଡ଼ା ହୋଇ ନାହାନ୍ତି ! ସୁକୁମାରୀଙ୍କ ମନ ଭିତରେ ଝଡ଼ ଉଠିଥିଲା । ତେବେବି ଏ ଅମୂଲ୍ୟ ସମୟ ଟିକକ ଝଡ଼ର ଆଘାତରେ ନଷ୍ଟ କରିଦେବାକୁ ଚାହିଁଲେନି ସେ । ସହଜ କଣ୍ଠରେ କହିଲେ— ସମସ୍ତେ ତ ନିଜ ନିଜ କାମରେ ବ୍ୟସ୍ତ ବାପା । ତମମାନଙ୍କୁ ଦେଖି ପ୍ରାଣଟା ଥଣ୍ଡା ହୋଇଗଲା । ମୋ' ପାଖରେ ତ ଏଠି କିଛି ନାହିଁ, ଯୋଉ ଫଳ ମିଠା ଆଣିଛ ସେଥିରୁ ଟିକିଏ ଖାଅ ।

— ତମେ ବ୍ୟସ୍ତ ହେଉଛ କାହିଁକି ମା' ?

ଅମାୟିକ ମଝିଆବୋହୂ ଶାଶୁଙ୍କ ଆକୁଳତା ନିବାରଣ ପାଇଁ ଦୁଇଟା ମିଠା କାଢ଼ି ନେଲା । ତାପରେ କହିଲା— ଖାଇବେ ନିଶ୍ଚୟ । ଆପଣ କ୍ଷୀରଗଜା ଭଲପାଆନ୍ତି ବୋଲି ସେଇୟା ଆଣିଛି ।

ସୁକୁମାରୀ ଏକାବେଳେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଯେ କ୍ଷୀରଗଜା ଭଲ ପାଆନ୍ତି ଏ କଥା ତ ସେ ନିଜେ ଜାଣିନଥିଲେ ! ବିଗଳିତ ଗଳାରେ କହିଲେ— ଏ କଥା ମଧ୍ୟ ମନେରଖିଛୁ ମା' ?

ହେଲେ ସୁକୁମାରୀଙ୍କର ମନ ଭିତରେ ଝଡ଼ ବହୁଥିଲା— ସାତଜନ୍ମରେ ଖଣ୍ଡେ ଚିଠି ନ ଆସିବା ଯେ କି ଲାଜର କଥା ତମେମାନେ ବୁଝିପାରିବ ? ବର୍ଷକୁ ଥରେ କି ଦି'ଥର ମା'କୁ ଦେଖିବାକୁ ଆସିଲାବେଳେ ସମାରୋହ କରି ଗଦାଏ ଫଳ ଆଉ ମିଠା ଆଣିବାର ଦରକାର କ'ଣ ବାପା ? ମୁଁ କ'ଣ ବନ୍ଧୁବାନ୍ଧବ ? ବରଂ ଯଦି ପିଲାଙ୍କ ହାତରେ ଖଣ୍ଡେ ପୋଷ୍ଟକାର୍ଡ଼ ଲେଖାଇ ପଠାନ୍ତ ! କ'ଣ ଆଉ କହିବି ? ବଡ଼ପୁଅର ବଡ଼ ହୋଇଯାଇଥିବା ପୁଅଝିଅମାନେ ମଧ୍ୟ କୁଆଡ଼େ ବଙ୍ଗଳା ଲେଖିବା ଜାଣନ୍ତିନି ! ଖାଲି ଜାଣିଛନ୍ତି, ଇଂରେଜୀ ଆଉ ହିନ୍ଦୀ । ସେଥିରେ ଚିଠି ଲେଖିଲେ ବୁଢ଼ୀମା ତ ପଢ଼ିପାରିବନି !

ସୁକୁମାରୀ ଭାବିଲେ— ଏ ଯୁଗରେ ମଣିଷର ସମୟ ଜିନିଷଟା ଏତେ ସଂକ୍ଷିପ୍ତ ହୋଇଗଲା କାହିଁକି ? ଘଣ୍ଟା କଣ୍ଟାର ନିୟମରେ ମଧ୍ୟ କ'ଣ ବଦଳ ହୋଇଗଲା ? ସେମାନେ ନିଜେ ତ ସବୁକାଳେ ବହୁତ ଆତ୍ମୀୟ ବନ୍ଧୁମାନଙ୍କ ସହିତ ଯୋଗାଯୋଗ ରଖି ଆସୁଥିଲେ । ଆଉ ସେ ସମ୍ବନ୍ଧ ରଖିବାଟା କେବଳମାତ୍ର ସୌଜନ୍ୟପାଇଁ ନ ଥିଲା, ସ୍ନେହର ସ୍ପର୍ଶ ମଧ୍ୟ ଥିଲା ଯଥେଷ୍ଟ । ଆଉ ପ୍ରବାସରେ ହୋଇଥିଲେ ତ ସମସ୍ତେ ଯେମିତି ଗୋଟିଏ ପରିବାରର ହୋଇ ଯାଉଥିଲେ ।

ପିଲାଦିନେ ତ ଦେଖିଛି । ମୋ ବାପାଙ୍କ ଚାକିରି ଜୀବନ ବାହାରେ କଟିଛି । ସେମାନଙ୍କୁ ସବୁ ସମୟ ମିଳୁଥିଲା କିପରି ? ସେତେବେଳେ ତ ବରଂ ଜୀବନଯାତ୍ରା ନିର୍ବାହର କ୍ଷେତ୍ରରେ ଏତେ ପ୍ରକାର ଯାନ୍ତ୍ରିକ ସୁବିଧା ନ ଥିଲା । ସେତେବେଳେ ଅତିଥିମାନଙ୍କୁ ଚର୍ଚ୍ଚା କରିବାକୁ ଗୃହିଣୀମାନେ କୋଇଲା ଚୁଲ୍ଲୀ ଧରାଉଥିଲେ । ଆଜିକାଲିପରି ଏମିତି ଚଟାପଟ୍ ସରଞ୍ଜାମ ନ ଥିଲା । ବରଫ ଆଲମାରିରେ ତିଆରି ଖାଦ୍ୟ ସଞ୍ଚିତ ହୋଇ ରହୁନଥିଲା । ଅଥଚ ଭାବିବାକୁ ଗଲାକ୍ଷଣି ଆଖି ଆଗରେ ଅଜସ୍ର ଛବି ଭାସି ଉଠୁଛି ।

ପୁଅ ଓ ବୋହୂ ଚାଲିଯିବା ପରେ ଅନେକ ସମୟ ପର୍ଯ୍ୟନ୍ତ ନିଜର ଘରଟାରୁ ସୁକୁମାରୀ ବାହାରି ପାରିନଥିଲେ, ବସି ରହିଥିଲେ ।

ନାଃ । ମାୟାମମତା ଟିକିଏ ଉଣା କରିବାକୁ ପଡ଼ିବ । ଏ ଅଧପାଗଳ ବୁଢ଼ାକୁ ଆଉ ପ୍ରଶ୍ରୟ ଦେବା ଉଚିତ ନୁହେଁ । ଦି'ପହରର ବିଶ୍ରାମ ସମୟରେ ହାତର ବହିଟାକୁ ପାଖରେ ରଖିଦେଇ ଭାବିବାକୁ ଲାଗିଲା ଉତ୍ତମା ସୋମ୍– ମାୟା କରିବାକୁ ଯାଇ ଶେଷକୁ ମୋର ମଧ୍ୟ ପାଗଳାମି ରୋଗ ଧରିବ । ଅଥଚ ଲୋକଟା ଉପରେ ମାୟା ନ ହୋଇ ଉପାୟ ମଧ୍ୟ ନାହିଁ । ଆରମ୍ଭରେ ତ ଭାବୁଥିଲି ଲୋକଟା 'ବଦ୍‌ବୁଢ଼ା' ଟାଇପ୍‌ର । ସ୍ତ୍ରୀକୁ ହରାଇ ମୁଣ୍ଡ ଭିତରେ କିଛି ସ୍କ୍ରୁ ଢ଼ିଲା ହୋଇଯାଇଛି । ନହେଲେ କହୁଛି କ'ଣନା, 'ପ୍ଲାନ୍‌ଚେଟ୍' କରି କେତେ ଚେଷ୍ଟା କରିଛି, କିଛି ଅସ୍ତିତ୍ୱ ଜାଣିପାରିନି । ଲୋକେ କହିଛନ୍ତି ଜଣେ ଭଲ ମିଡ଼ିୟମ୍ ଦରକାର । କେଜାଣି କୋଉଠି ସେମିତି ଭଲ ମିଡ଼ିଏମ୍‌ଟେ ମିଳିବ । ମିସ୍ ସୋମ୍, ଆପଣ ଏ ବିଷୟ ନେଇ କେବେ ଚର୍ଚ୍ଚା କରିଛନ୍ତି ?

କଥା ଶୁଣ ! ସାତଜନ୍ମରେ ମଧ୍ୟ ମୋର ଏସବୁ ଆଧିଭୌତିକ ଆଉ ଆଧିଦୈବିକ କଥାରେ ଇଣ୍ଟରେଷ୍ଟ ନାହିଁ ବାବା । ମୋ ଧାରଣା, ସେଗୁଡ଼ାକ ସବୁ ଖାଲି ଗୁଲି । ଅଥବା ନିଜର ମନକୁହିଁ ଆଖି ଠାରିବା । ଅଥଚ ଚିରକାଳ ହେଲା ଚାଲି ଆସିଛି ମଧ୍ୟ । ଯେମିତି ଚିରକାଳ ହେଲା ଚାଲିଆସିଛି 'ଗୁଣି ଗାରୁଡ଼ି', 'ଝଡ଼ାଫୁଙ୍କା', 'ଚେରମୂଳି' ।

ଦି'ପହରେ ଖାଇବା ଟେବୁଲ୍‌ରେ ବସି ମିସ୍ ମଲ୍ଲିକ କହିଥିଲେ– ମିସ୍ ସୋମ୍, ଆଜି ଆପଣ କୁଆଡ଼େ ବୁଲିଯାଇଥିଲେ ?

– ହଁ, ଜଣେ ପୁରୁଣା କୋଲିଗ୍ ଘରକୁ ଯାଇଥିଲି ।

– ସେଇଟା କୋଉଠି ?

ଉତ୍ତମାର ଛାତି ଭିତରେ ଯେମିତି ଗୋଟିଏ ହାତୁଡ଼ି ବସିଲା । ଏ ପ୍ରଶ୍ନର ଉଦ୍ଦେଶ୍ୟ କ'ଣ ? ତେବେକେ ଉତ୍ତର ଦେବାକୁ ପଡ଼ିଲା- ସେଇଟା ? ବେଲୁଡ଼ରେ ।

ନା, ମିସ୍ ମଲ୍ଲିକ ଆହୁରି ଗଭୀରତାକୁ ଡୁବୁରିଟାକୁ ଓହ୍ଲାଇଲେନି, ଖାଲି କହିଲେ- ଆପଣଙ୍କର ଭାରି ମଜା ।

– ମଜା ?

– ବାଃ, ମଜା ନୁହେଁ । ଇଚ୍ଛା ହେଲା ବୁଲି ଆସିଲେ । ମୋର ତ ସେଇଟା କରିବା ଉପାୟ ନାହିଁ ।

– କାହିଁକି, ବାଧା କ'ଣ ? ଏମାନଙ୍କର ଅବଶ୍ୟ ଅନେକ ନିୟମ କାନୁନ୍ ଅଛି, ସେଗୁଡ଼ାକ ମାନିଲେ ଯାଇ ବାହରିବା କଥା । ହେଲେ ଯେ କୌଣସି ପ୍ରତିଷ୍ଠାନରେ ଏମିତି ସବୁ ନିୟମ...

ନା, ସେସବୁ ନିୟମକାନୁନ୍ କଥା କହୁନି । ସେସବୁକୁ ମୁଁ ଖାତିର କରେନି । ବାଧା ମୋ' ନିଜ ଭିତରେ । ଦୁଇ ଦୁଇଥର ହାର୍ଟ ଆଟାକ୍ ହୋଇଯାଇଛି-

ସତେ ନା କ'ଣ ? ତା'ହେଲେ ତ ଏକୁଟିଆ ବାହାରକୁ ବାହାରିବା ଉଚିତ ନୁହେଁ ଆପଣଙ୍କର ।

– ସେଇଟା ତ ଭାଗ୍ୟ ! ଅଥଚ ଆପଣ ମୋ' ଠାରୁ ବୟସରେ ଆଉ ବିଶେଷ.... ହେଲେ ଆଜି ନାନୀର ପୁଅ ଜଣେ ଆସିଥିଲା ଦେଖା କରିବାକୁ । ମତେ ଭାରି ଭଲପାଏ, କହିଲା- କୁନି ମାଉସୀ, ତମର ଏମିତି ଅବସ୍ଥା ହେବ ବୋଲି କିଏ ଭାବିଥିଲା ? ତମେ କି ଚଳି ଥିଲ । ବାହାଘରମାନଙ୍କରେ – ତମେତ ସାରା ସଭାଟାକୁ ସରଗରମ କରି ରଖୁଥିଲ ।

– "ସେଥିପାଇଁ ଚିରକାଳର କଥା ହେଉଛି-ସ୍ୱାସ୍ଥ୍ୟ ହେଉଛି ସମ୍ପଦ ।" ଧୀରେ କହିଲା ଉତ୍ତମା ।

ଆପଣ ତ ସ୍ୱାସ୍ଥ୍ୟଟିକୁ ଭାରି ଭଲ ରଖିଛନ୍ତି । ...କ'ଣ କହୁଛ, ମିସେସ୍ ରାୟଚୌଧୁରୀ ।

ଉତ୍ତମା ମନେ ମନେ କହିଲା– କର ବାପା, ମୋ ସ୍ୱାସ୍ଥ୍ୟ ଦେଖି ପ୍ରାଣଭରା ହିଂସା କର । ଦୟା କରି ଯେ ସେ ବେଲୁଡ୍‌ର ପ୍ରସଙ୍ଗଠାରୁ ଦୂରେଇ ଆସିଲ, ସେତିକିରେ ରକ୍ଷା ପାଇଗଲି ।

ଏ ହେଲା ଖାଇବା ଟେବୁଲ୍‌ର କଥା । ଏବେ ଦି'ପହରେ– ନିଜ ଘରର ଝରକା ଦୁଆରରେ ମୋଟା ପର୍ଦ୍ଦାଗୁଡ଼ାକ ଟାଣି ଦେଇ ଆଉ ପଙ୍ଖା ଖୋଲି ଦେଇ ହାତର ବହିଟାକୁ ପାଖରେ ପକାଇ ରଖି ମନେ ମନେ ଉତ୍ତମା ଭାବିଲା– ଆଚ୍ଛା, ବୟସ ସମୟଟାକୁ କ'ଣ କେମିତି ମୁଁ କଟାଇଛି ? ସାତ ଜନ୍ମରେ ଗୋଟାଏ ପ୍ରେମ ପ୍ରେମ ତ କରିପାରିନି । କଥାଟା ସବୁଦିନ ମତେ ବଡ଼ ପିଲାଳିଆ ବୋଲି ମନେହୋଇଛି, ମୂର୍ଖାମୀ ବୋଲି ମନେ ହୋଇଛି । ଅଥଚ ଏ ବୁଢ଼ା ବୟସରେ ଗୋଟାଏ ଭଦ୍ରଲୋକ ସଙ୍ଗେ ଦି'ପଦ କଥା ହୋଇଛି, ଏଥିରେ ଏମିତି ନବୀନବାଳା ପରି ଅସ୍ୱସ୍ତି ଆସୁଛି କାହିଁକି ? ଏଇଟା ଖାଲି ସେ ମିସ୍ ମଲ୍ଲିକର ସନ୍ଦିଗ୍ଧ ଦୃଷ୍ଟି ହେତୁ ହେଉଛି । ଦେଖିଲେ ତ ମନେ ହୁଏ, ମହିଳାର ପରଳ ପଡ଼ିଲାଣି, ତେବେକେ ଦୃଷ୍ଟିଟା ଏତେ ତୀକ୍ଷ୍ଣ କେମିତି ହେଉଛି ବାବା ! ...ମୁଁ ଯଦି ଏହିକ୍ଷଣି ତାଙ୍କ ପାଖରେ ସେହି ସ୍ତ୍ରୀ-ହରା ଦେବଜ୍ୟୋତିର ପାଗଳାମି ନେଇ ହସାହସି କରିବି, ସାଙ୍ଗେ ସାଙ୍ଗେ ପ୍ରବ୍ଲେମ୍ ସଲ୍‌ଭ୍ ହୋଇଯିବ... ।

...ହେଲେ ସେଭଳି ଇଚ୍ଛା ମୋର ଜମା ହେଉନି । ଭଦ୍ରଲୋକଟି ବଡ଼ ବିଶ୍ୱସ୍ତ । ସେହି ବିଶ୍ୱସ୍ତ ହୃଦୟକୁ ଧରି ସେ ମୋ ପାଖରେ ତାଙ୍କର ମନର କଥା ଅଜାଡ଼ି ଦେଇଛନ୍ତି ! ତେଣୁ– ସମସ୍ୟା ସମାଧାନ ପାଇଁ ସେଭଳି କାମ ହେବ ନିହାତି ବିଶ୍ୱାସଘାତକତା ! ଭଦ୍ରଲୋକ ଆଜି ତାଙ୍କର ସେହି ପରଲୋକଗତାର ଗୋଟିଏ ଫଟୋ ଦେଖାଇଲେ– ମହିଳାଙ୍କୁ ବୟସ ହେବ ପଚାଶ ବର୍ଷ ପାଖାପାଖି । ତା'ପରର ଆଉ କୌଣସି ଫଟୋ ନାହିଁ । ରହିବ ବା କାହିଁକି ? ଘରର ଗୃହିଣୀଙ୍କର ତ ଆଉ ପ୍ରତିଦିନ କିଏ ଫଟୋ ଉଠାନ୍ତି ନାହିଁ ! ତାପରେ ତ– ଆହା ! ମୁଁ ତ ବାବା ଫଟୋଟା ସାଙ୍ଗରେ ନିଜର କୌଣସି ସାଦୃଶ୍ୟ ଦେଖି ପାରିଲିନି । ହିଁ, ଗଢ଼ଣଟା ମୋ ଭଳି ସତ (ହି ହି ହି-ମିସ୍ ମଲ୍ଲିକ ଭଳି ମୋଟା ନୁହଁନ୍ତି ।) ଆଉ ହାଇଟ୍‌ଟା ମଧ୍ୟ ବୋଧହୁଏ ମୋ ପରି । ବାଳ କୁଣ୍ଡାଇବାରେ ସାମାନ୍ୟ ସାଦୃଶ୍ୟ

ଥିଲେ ଥାଇପାରେ । ଫଟୋଟାକୁ ଆଣି ନିଜର କୋଉ ଫଟୋ ସହିତ ମିଳାଇ ଦେଖିପାରିଲେ ହୁଏତ ବା କିଛି ବୁଝାପଡ଼ନ୍ତା । ଅଥଚ ଭଦ୍ରଲୋକ ବିଗଳିତ ଗଳାରେ କହିଲେ କ'ଣ ନା, କାହିଁକି ପ୍ରଥମଦିନ ଆପଣଙ୍କୁ ଦେଖିଲାକ୍ଷଣି ଏମିତି ଅପସେଟ୍ ହୋଇଯାଇଥିଲି ବୁଝିପାରୁଛନ୍ତି ?

ବହି ଆଉ ପଢ଼ା ହେଲା ନାହିଁ, ହିମାଳୟ ଭ୍ରମଣର କାହାଣୀ । ଭବନ ଲାଇବ୍ରେରୀର । ମନୋଜର ଅଳ୍ପ କିଛି ବହିଥିବା ଲାଇବ୍ରେରୀ । ହଠାତ୍ ଚାରିଟା ବାଜିବାର ଘଣ୍ଟା ଶୁଣିଲା ଉତ୍ତମା ।

ଶୋଭନର ମା' ପୁଅକୁ କହିଲେ– ତୋର ସେ ଭବନର କିଚେନ୍‌ରୁ ମୋ ଖାଇବାଟା କାହିଁକି ଯେ ପଠାଉଛୁ ! ନିଜ ପାଇଁ କରିବା କ୍ଷମତା ଟିକକ ଏବେ ମଧ୍ୟ ଅଛି ମୋର ।

ଶୋଭନ କହିଲା– ସେ କ୍ଷମତା ଟିକକ ପୋସ୍ତ ଚଡ଼ଚଡ଼ି ଆଉ ଘାଣ୍ଟ ରାନ୍ଧି ଖର୍ଚ୍ଚ ନ କରି ଅନ୍ୟ ଭଲ କାମରେ ବ୍ୟୟ କଲେ ତ ଭଲ ହେବ ମା' ।

– ନିଜ ହାତରେ କିଛି ରାନ୍ଧି ବାଢ଼ି ତତେ ଟିକିଏ ଖୁଆଇବାକୁ ଇଚ୍ଛା ହୁଏ ବାପା ।

– ଜୀବନଟାଯାକ ତ ସେ ଇଚ୍ଛା ଧାରଣ କରିଆସିଛ ମା' । ଏତେ ବୟସ ହେଲେ ମଧ୍ୟ କ'ଣ ସେ ଇଚ୍ଛା ମରିନି ?

ମା' ଟିକିଏ ହସିଲେ– 'ଇଚ୍ଛା'ଟା ନ ମରିବା ଅର୍ଥ ହିଁ ହେଉଛି ବଞ୍ଚି ରହିବା । 'ଇଚ୍ଛା' ଜିନିଷଟା ମରିଗଲାକ୍ଷଣି ତ ମୃତ୍ୟୁ ହୁଏ । ଦେହ ପଛକେ ଯେତେ ଟାଣ ରହିଥାଉ ।

ତାପରେ ଚିରକାଳୀନ କ୍ଷୋଭକୁ ପ୍ରକାଶ କଲେ– ହେଲେ ମରଣରେ କିଛି ଦୁଃଖ ନାହିଁରେ । ତୁ ଯଦି ଘର-ସଂସାରୀ ହୋଇଥାନ୍ତୁ, ଏବେ ହସି ହସି ମରିଥାନ୍ତି ।

– ଘର ସଂସାର ! ମା' ଗୋ ! ସେସବୁ ବଡ଼ଲୋକ ବୁଢ଼ୀମାନଙ୍କ ଦେଖି ଦେଖି ମଧ୍ୟ ତମର କ'ଣ ଚୈତନ୍ୟ ହୋଇନି ମା' ? ତମର ଏକମାତ୍ର ପୁଅଟା ଯଦି ଘରସଂସାର କରିଥାନ୍ତା– ସାଙ୍ଗେ ସାଙ୍ଗେ ତମର ଘରସଂସାର କରିବାଟା

ଖତମ୍ ହୋଇଯାଇଥାନ୍ତା । ତମକୁ ୱେଷ୍ଟ୍ ପେପର୍ ବାକ୍ସରେ ପକାଇ ଦିଆଯାଇଥାନ୍ତା ।

– ଯାଇଥାନ୍ତା ତ ଯାଇଥାନ୍ତା । ...ମା' ରାଗିଯାଇ କହିଲେ– ମୁଁ ଏମିତି ସ୍ୱାର୍ଥପର ନୁହେଁ ଯେ ସବୁଦିନ ମୁଁ ସଂସାର କରିବି, ଭାବିବି । ଅଫିସରମାନେ ତ ରିଟାୟାର୍ କରନ୍ତି !

– ଗୋଳମାଳଟା ହେଉଛି ଅଫିସ ପରେ ଗୋଟାଏ ଘର ଥାଏ ଲୋକଙ୍କର । କିନ୍ତୁ ଘରୁ ରିଟାୟାର୍ ହୋଇଗଲେ ? ମା..., ତମର ଯେ ସବୁକାଳେ କାହିଁକି ସୁଖରେ ରହୁଥିଲେ ମଧ ଭୂତଠାରୁ ବିଧା ଖାଇବାର ସଉକ ହେଉଛି ! ଏକମାତ୍ର ନୀଳମଣି ତମର ପୁଅଟା ଯେ ତମର ହୋଇଅଛି, ରହିବ, ଏଇଟା କ'ଣ ଭଲ ନୁହେଁ ? ତାକୁ ବାଣ୍ଟି ଦେବାପାଇଁ ତମ ପ୍ରାଣ ଏତେ ଅସ୍ଥିର ହେଉଛି କାହିଁକି ?

ମା ତର୍କ କଲେ– ବାଃ, ବାଣ୍ଟିଦେବା କ'ଣ ଯେ ? ମା'ର ଜାଗାରେ ମା' ଥାଏ, ସ୍ତ୍ରୀର ଜାଗାରେ ସ୍ତ୍ରୀ ରହିବ । ଗୋଳମାଳଟା କେଉଁଠି ହେବ ?

ଶୋଭନ ଟିକିଏ ଶୋଭନ ହସ ହସି କହିଲା– ହେବ ମା' । ସେହି ବୋହୂ ନାମକ ଜୀବଟି ଯଦି ତା'ର ଠିକ୍ ଜାଗାର ଆଇନଟା ମାନି ଚଳନ୍ତା । ତା'ର ତ ଆସିଲାକ୍ଷଣି ମନେ ହେବ ଗୋଟାଯାକ ଜାଗା ମୋ ଦଖଲରେ ରହୁ ।

– ହଁ, ତତେ କହୁଛନ୍ତି ! ସବୁ ସ୍ତ୍ରୀ ଲୋକମାନେ କ'ଣ ଏଭଳି ? ଆମେମାନେ ତ ପୁଣି ବୋହୂ ହୋଇ ଆସିଥିଲୁ !

– ତମମାନଙ୍କ କାଳକୁ ବାଦ୍ ଦିଅ ମା' ! ଯେତେସବୁ ରାମବୋକାମାନଙ୍କର କାଳ ସେଇଟା । ଏ କାଳ ଅନ୍ୟ ଧାତୁରେ ଗଢ଼ା । ଏ କାଳରେ ବୁଦ୍ଧିର ଚାଷ ବେଶି । ମୋର ସେ ନବଜୀବନ ଭବନର ବୁଢ଼ୀମାନଙ୍କୁ ଦେଖିଲେ ମନେହୁଏ, ଭାଗ୍ୟକୁ ବାହା ହୋଇନି ମୁଁ । ବାହା ହୋଇଥିଲେ ତ ମୋର ମା' ବିଚାରୀର ଏହିପରି ଦଶା ହୋଇଥାନ୍ତା ।

କଥା ମଝିରେ ଫୋନ୍ ବାଜିଲା । ଭବନରୁ ମନୋଜ ଫୋନ୍ କରୁଛି, ପଦ୍ମାସନା ଦେବୀ ହଠାତ୍ ବିଶେଷ ଅସୁସ୍ଥ ହୋଇପଡ଼ିଛନ୍ତି, ଆପଣଙ୍କୁ ତେଣୁ ଜଣାଉଛି । ଡାକ୍ତରବାବୁଙ୍କୁ ସାଙ୍ଗେ ସାଙ୍ଗେ ଖବର ଦେଇଛି, ଆସିଗଲେଣି ।

ଶୋଭନ ଯେଉଁ ଘରଟାରେ ରହୁଛି ସେଇଟା ତା'ର ବାପା ତିଆରି କରିଥିଲେ । ଆଗକାଳର ପରି ଗଢ଼ଣ । ଶୋଭନ କିଛି କିଛି ସୁବିଧା କରି ଦେଇଛି । ତେବେ ବିଶେଷ ସୁବିଧା ଏ ଟେଲିଫୋନ୍‌ଟା । ନିଜ ଘର ସଙ୍ଗେ ଅଲଗା ଗୋଟାଏ ଲାଇନ ଅଛି ।

ହେଲେ ମା' ଅପର୍ଣ୍ଣା ଦେବୀ ରାଗିଯାଇ କହିଲେ– ଦି' ମିନିଟ୍ ପାଇଁ ଘରକୁ ଆସୁଛୁ, ତା ଭିତରେ ମଧ ଡାକି ଦେଉଛନ୍ତି !

ଶୋଭନ କହିଲା– ଶୁଣିଲ ତ ପଦ୍ମାସନା ଦେବୀଙ୍କର ଶ୍ୱାସ ଉଠିଲାଣି ।

– ଶ୍ୱାସ ଉଠିଲାଣି ?

– ଧରି ନେଉଛି ସେଇୟା । ଅବସ୍ଥା ତ ମୃତକଳ୍ପ ହୋଇଥିଲା ।

ପଦ୍ମାସନା ଦେବୀ ଚାଲିଗଲେ ।

ପଦ୍ମାସନା ଏକଦା ରୁପା ଚାମଚ ମୁହଁରେ ଦେଇ ଜନ୍ମ ହୋଇଥିଲେ । ଆଉ ସୁନାର ମୁକୁଟ ମୁଣ୍ଡରେ ଲଗାଇ ଉପାଧିଧାରୀ ଶଶୁରଙ୍କ ଭିଟାରେ ଆସି ଦୁଧ ଅଳତାର ପଥର ଥାଳିଆରେ ପାଦ ରଖିଥିଲେ । ପଦ୍ମାସନା ଦେବୀ ପୃଥିବୀରୁ ବିଦାୟ ନେଲେ ଆତ୍ମୀୟବନ୍ଧୁହୀନ ଏକ କରୁଣାର ପରିବେଶ ଭିତରେ । ଏଥିରେ ବି ଯଦି ପଦ୍ମାସନାଙ୍କ ଶୁଭ ଅଶୁଭ ନକ୍ଷତ୍ରର କାର୍ଯ୍ୟକଳାପକୁ ମାନିବନି ତେବେ କହିବାର କିଛି ନାହିଁ ।

ତେବେକେ ଏହି ନବଜୀବନ ଭବନର ବାସିନ୍ଦାମାନେ ଭାରି ଉତ୍ସୁକ ହୋଇ ତାଙ୍କର ଶେଷ ଯାତ୍ରା ଦେଖିଲେ । ଅନ୍ୟ ବାସିନ୍ଦାମାନେ କେହି ତାଙ୍କୁ ଦେଖୁ ନ ଥିଲେ । ଆଜି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ- ଶ୍ୱେତ ଚାମରର କେଶଗୁଚ୍ଛ ତଳେ-ଏବେ ମଧ ମୁହଁର ବର୍ଣ୍ଣ ଗୋଲାପି ରହିଛି । ଆଉ ମଝିରେ ତିଳଫୁଲ ଗଠନର ନାସିକା ତଳେ ଧଳା ଗୋଲାପର ପାଖୁଡ଼ା ପରି ଦୁଇଟି ଓଠ । ବନ୍ଦ ଆଖି । କୋଟରଗତ । ସେଥିପାଇଁ ପଦ୍ମାସନାଙ୍କର କିପରି ଆଖି ଥିଲା, 'ପୋଟଳ ଚିରା' ନା 'ଖଞ୍ଜନ ଗଞ୍ଜନ' ନା 'ହରିଣୀ ନୟନ', ସେ କଥା ଆଉ ଏବେ ବୁଝିବାର ଉପାୟ ନାହିଁ ।

ନ ଥାଉ, ଏ ଶେଷଶଯ୍ୟାର ଦୃଶ୍ୟଟି ଗୋଟିଏ ମହିମାନ୍ୱିତ ଚେହେରା ଫୁଟାଇଲା ।

ଦୁଇଟା ବ୍ଲକର ଲୋକ ବାହାରି ଆସିଛନ୍ତି । ଅର୍ଥାତ୍ ଯାହାର ଯାହାର ବାହାରିବାର କ୍ଷମତା ଅଛି ।

ସମସ୍ତେ ଭାରି ନିମ୍ନ ଗଳାରେ କଥା କୁହାକୁହି ହେଉଛନ୍ତି ।

ଏତେ ବୟସ ହୋଇଥିଲା ! ଧାରଣା କରି ହେଉନି । ବୟସବେଳେ କି ରୂପସୀ ନ ଥିଲେ ! ... ତେବେ ଗୋଟାଏ ଭଲ ଜାଗାକୁ ଆସିଯାଇଥିଲେ, ତେଣୁ ଶେଷକୃତ୍ୟଟି ଠିକ୍ ପ୍ରକାରେ ହେବ । ସେ କୁଆଡ଼େ ତରଫ୍‌ଦାର୍‌ଙ୍କ ଏକପ୍ରକାର ଆତ୍ମୀୟା ! ... ସେଇୟା ତ ଶୁଣିଛି । ସେ ତ ଗାଡ଼ି ସହିତ ଗଲେ । ଶେଷ କାର୍ଯ୍ୟଟି ସେ ହିଁ ବୋଧହୁଏ କରିବେ ।... ହୋଇପାରେ । କାହାର ଜୀବନର ଶେଷଟା ସେ କେମିତି ହେବ କେହି କହିପାରିବେନି । ଆମମାନଙ୍କୁ ହୁଏତ ଜଣେ ଜଣେ ହୋଇ ଚାଲିଯିବାକୁ ପଡ଼ିବ । ଶେଷ ସମୟରେ ଆତ୍ମୀୟସ୍ୱଜନଙ୍କ ମୁହଁ ଦେଖିପାରିବାନି । ଆତ୍ମୀୟସ୍ୱଜନ ? ଯେଉଁମାନେ ଶେଷ ପର୍ଯ୍ୟନ୍ତ ଜାବୁଡ଼ି ଧରି ନ ଥାନ୍ତି, ହାତରୁ ପକାଇ ଦିଅନ୍ତି, ସେମାନଙ୍କୁ ଆଉ ଆତ୍ମୀୟସ୍ୱଜନ ବୋଲି କହିଲେ ହେବନି । ...ଏହି ପଦ୍ମାସନା ଦେବୀଙ୍କର ମଧ୍ୟ କେତେଜଣ ଆତ୍ମୀୟ ଅଛନ୍ତି ବୋଲି ଶୁଣିଛି, କ'ଣ ହେଲା ?

ଏ ପୃଥିବୀ ! ଅକୃତଜ୍ଞ, ନିଷ୍ଠୁର !

ଏସବୁ ଆଲୋଚନା ହେଉଥିଲା ସ୍ତ୍ରୀଲୋକମାନଙ୍କ ଭିତରେ । ...ମିସେସ୍ ମଜୁମଦାର, ମିସେସ୍ ନାଗ୍, ମିସେସ୍ ରାୟଚୌଧୁରୀ ପ୍ରଭୃତି ଆହୁରି ଅନେକ । ମିସ୍ ମଲ୍ଲିକ ଘର ଭିତରୁ ବାହାରି ନାହାନ୍ତି । ଶବଯାତ୍ରା ଦେଖିଲେ କୁଆଡ଼େ ତାଙ୍କର ଅସୁସ୍ଥତା ଭୀଷଣ ଭାବରେ ବଢ଼ିଯାଏ ।

ପୁରୁଷମାନେ ଏହି ମୃତ୍ୟୁ ନେଇ କୌଣସି ଦାର୍ଶନିକ ଆଲୋଚନା କରିନାହାନ୍ତି ।

ଅନେକ ଲୋକ ଭବନର ଆଗରେ ରାସ୍ତାକୁ ଆସି ଠିଆ ହୋଇଥିଲେ ।

ସତ୍କାର ସମିତିର କଳା ମଟରଟା ବାହାରି ଗଲାକ୍ଷଣି ଉତ୍ତମା ସୋମ୍ ପାଖରେ ଠିଆ ହୋଇଥିବା ମଣିଷଟି ଆଡ଼କୁ ଚାହିଁ କହିଲା— ଏଠାକୁ ଆସିଲା ପରଠୁ କୌଣସି ମୃତ୍ୟୁ ଦେଖିବାର ଦୁର୍ଭାଗ୍ୟ ହୋଇନି । ଯଦିଚ ସେ ପ୍ରାୟ ମୃତ

ପରି ଥିଲେ, ଦେଖି ନିଜର ପରିଣାମ ଭାବି ଆତଙ୍କିତ ହେଉଛି । ମତେ ମଧ ଯଦି ଏତେ ଦିନ ବଞ୍ଚିବାକୁ ପଡ଼ିବ ।

ପାର୍ଶ୍ୱବର୍ତ୍ତୀ ଲୋକ ତରତର ହୋଇ ସାନ୍ତ୍ୱନାର ସ୍ୱରରେ କହିଲେ– ଏ ସବୁ ଭାବି ମନ ଖରାପ କରିବା ଉଚିତ ନୁହେଁ । ସୁସ୍ଥ ରହିଲେ-ବଞ୍ଚିବାରେ ଅସୁବିଧା କ'ଣ ?

ସୁସ୍ଥ ? ଅତିରିକ୍ତ ବୟସଟା ହେଉଛି ତ ଗୋଟିଏ ମସ୍ତ ବଡ଼ ଅସୁସ୍ଥତା ମିଷ୍ଟର ବୋଷ୍ ! ବିଶେଷତଃ ଯେଉଁମାନେ ସମ୍ପୂର୍ଣ୍ଣ ନିଃସଙ୍ଗ ।

ମନ ଖରାପ କରିବେନି ମିସ୍ ସୋମ୍ । ମନ ଖରାପ କରିବେନି । ଏ କଥାଟା ଯେମିତି ଆପଣଙ୍କୁ ମାନୁନି ।

ଉତ୍ତମା କହିଲା– ଆପଣଙ୍କର କ'ଣ ମନେହେଉଛି ମନ ଖରାପ କରିବାର କୌଣସି କାରଣ ନାହିଁ ?

ଦେବଜ୍ୟୋତି କ'ଣ କହିବେ ବୁଝି ନ ପାରି ବ୍ୟସ୍ତସ୍ୱରରେ କହିଲେ– ଇସ୍ ! ମତେ ଏତେ ହାର୍ଟଲେସ୍ ଭାବିବେନି ମିସ୍ ସୋମ୍ । ...ଆଉ ତା'ପରେ ପରେ ବୋକା ପରି କହିଲେ– ଆପଣଙ୍କର ସେ ପୁତୁରା ନା କିଏ ? ସେ ମଝି ମଝିରେ ଆସନ୍ତିନି ?

– ମଝି ମଝିରେ ନୁହେଁ । ଦୈବାତ୍ । ହେଲେ ତା'ର ଆସିବା ନ ଆସିବାରେ କ'ଣ ଅଛି ? ଚକ୍ଷୁଲଜ୍ଜା ଯୋଗୁ ତା'ର ସେ ଆସିବାର କୌଣସି ମୂଲ୍ୟ ନାହିଁ ମୋ ପାଖରେ ।

ତା'ତ ଠିକ୍ । ତା ତ ଠିକ୍ । ଯେ- ମାନେ କ'ଣ କହୁଥିଲି କି, ଏଇଲେ ସାଙ୍ଗେ ସାଙ୍ଗେ ଘର ଭିତରେ ପଶିଯିବେ ?

ଉତ୍ତମା ଅବାକ୍ ହୋଇ କହିଲା– ତେବେ ? ରାସ୍ତାରେ ଠିଆ ହୋଇଥିବି ? ସମସ୍ତେ ତ —

ହଁ, ଦେଖାଗଲା ଯେଉଁମାନେ କଳା ମଟରଟି ଆସିବାରୁ ରାସ୍ତାକୁ ଆସିଥିଲେ, ସେମାନେ ଜଣେ ଜଣେ ହୋଇ ଘର ଭିତରେ ପଶିଗଲେଣି । ବାକି ଅଛନ୍ତି ଉତ୍ତମା ଆଉ ଦେବଜ୍ୟୋତି ।

ଦେବଜ୍ୟୋତି କହିଲେ– ନା, ମାନେ ସେ ଚିଲଡ୍ରେନ୍ସ୍ ପାର୍କଟାରେ ଯାଇ ଟିକିଏ ବସିଲେ ହୁଅନ୍ତା ।

କିଛି ଦୂର ଗଲେ ନାଆଁକୁ ପିଲାଙ୍କ ପାଇଁ ପାର୍କ ବୋଲି ଗୋଟାଏ ଅଛି ସତ। ଉରମା ହସିଦେଇ କହିଲା– ଚିଲଡ୍ରେନ୍ ହୋଇ ?

– କି ମୁଷ୍କିଲ ! ଚିଲଡ୍ରେନ୍ସ୍ ପାର୍କ ବୋଲି କ'ଣ ଆଡଲ୍‌ଟମାନେ ଯାଇ ବସିବେନି ? ହେଇଟି ତ ରିଟାୟାର୍ଡ଼ ପୁଲିସ ଅଫିସର୍ ମହାଶୟ, ରିଟାୟାର୍ଡ଼ ଆର୍ମି ଅଫିସର୍ ମହାଶୟ, ମିଷ୍ଟର ଚାଟାର୍ଜୀ, ମିଷ୍ଟର ଭୌମିକ ଆଉ ସେ ହୁଇଲ କବି ଜଣକ, ଅନେକ ତ ଭୋର୍‌ରୁ ଜଗିଂ ଓ୍ୱାକ୍ କରିବାକୁ ବାହାରି ସେଇଠି ଜଗିଂ କରନ୍ତି ।

ସେଇୟା ନା କ'ଣ ? ଆପଣ ମଧ୍ୟ କ'ଣ ତା କରନ୍ତି ?

ମୁଁ ? ମାନେ– ଦେବଜ୍ୟୋତି ଭୀଷଣ କୁଣ୍ଠିତ ହୋଇ କହିଲେ– ନା, ଜଗିଂ ଟଗିଂ କରେନି ମୁଁ । ତେବେ ମର୍ଣ୍ଣିଂ ଓ୍ୱାକ୍‌ଟା– ଅନେକଦିନର ଅଭ୍ୟାସ ।

ବାଃ, ସେଥିରେ ଏତେ କୁଣ୍ଠିତ ହେଉଛନ୍ତି କାହିଁକି ? ସକାଳୁ ଟିକିଏ ବୁଲିବା ଅଭ୍ୟାସ ତ ଭଲ ।

ଆପଣ କହୁଛନ୍ତି ! ...ଦେବଜ୍ୟୋତି କହିଲେ ବ୍ୟଗ୍ରଭାବରେ– ତା' ହେଲେ ଆପଣ ମଧ୍ୟ ତ ଇଚ୍ଛା କଲେ-ସକାଳେ–

ମନେ ମନେ ଥୋଡ଼ାଏ ହସି ହସି ଉରମା କହିଲା– ସେ ଇଚ୍ଛା ମୁଁ ଜମା କରିବିନି । କାହିଁ ଏଠାରେ କୌଣସି ସ୍ତ୍ରୀଲୋକଙ୍କୁ ବୁଲିବା ଦେଖିଛନ୍ତି ?

ଓଃ, ଆଉ ସମସ୍ତଙ୍କ କଥା ଛାଡ଼ନ୍ତୁ । ଆଉ ସମସ୍ତେ କ'ଣ ଆପଣଙ୍କ ପରି ସ୍ମାର୍ଟ ଆଉ ଏନର୍‌ର୍ଜେଟିକ୍ ? ସେମାନଙ୍କ ସହିତ ଆପଣଙ୍କର ତୁଳନା କରିବେନି ।

ଉରମା ଟିକିଏ ହସି କହିଲା– କାହିଁକି ? ସେମାନେ କ'ଣ ତୁଚ୍ଛ ? ବରଂ ମୁହିଁ ସମସ୍ତଙ୍କ ଭିତରେ ଗରିବ ଘରର !

ସେ କଥା ନାହିଁ..ଦେବଜ୍ୟୋତି ଢୋକ ଗିଳି ଟିକିଏ ସମ୍ଭାଳି ନେଇ କହିଲେ– ଆପଣଙ୍କ ସଙ୍ଗେ କାହାର ତୁଳନା ? ଆପଣ ଅନ୍ୟପ୍ରକାର । ସେ ମଧ୍ୟ ସେଇୟା ଥିଲେ । ମୋର ଅନ୍ୟସବୁ ଆତ୍ମୀୟଙ୍କୁ ତ ଦେଖିଛି, ତାଙ୍କରି ବୟସର– ଏପରିକି ବୟସରେ ତାଙ୍କଠାରୁ ଛୋଟ ମଧ– ସେମାନେ କେମିତି ଯେପରି ଇଏ– କ'ଣ କହନ୍ତି ବୁଢ଼ା ବୁଢ଼ା ଭଳି ହୋଇଯାଇଛନ୍ତି । ଅଥଚ ସେ– ଦେବଜ୍ୟୋତି

ଆବେଗର ଗଳାରେ କହିଲେ– ଠିକ୍ ଆପଣଙ୍କ ଭଳି । ... ଥାଉ, ପାର୍କ ଆଡ଼େ ଆସିବେ କି ?

ନାଃ, ପ୍ରାୟ ସନ୍ଧ୍ୟା ହେଇଗଲାଣି । ନମସ୍କାର ।

ନମସ୍କାର । ମର୍ଣ୍ଣିଂ ୱାକ୍‌ଟା କଥା ଟିକେ ଭାବି ଦେଖିବେ ।

କହିପାରୁନି ।

ଆଜି ଏ ଭବନରେ ଗୋଟାଏ ମୃତ୍ୟୁ ଘଟି ଯାଇଥିଲେ ମଧ– ଜୀବନ-ଯାତ୍ରାର ନିତ୍ୟ ନିୟମ ର ଧାରା ଅବ୍ୟାହତ ରହିଲା । – ଟା' ଟାଇମ୍‌ରେ ଟା' ଆସିଯାଇଛି । ରନ୍ଧାଘରର ଭାରପ୍ରାପ୍ତମାନେ ଯଥାନିୟମରେ ପନିକି, ପରିବା ଆଉ ଚାଉଳ ଅଟା ଧରି ଲାଗିପଡ଼ିଛନ୍ତି । ନା, ବସିବେ କାହିଁକି ? କାହାକୁ ତ ଆଉ ଅଶୌଚ ଲାଗିନି । ଆଉ ଅବଶ୍ୟ ଶୋକ ମଧ ଲାଗିନି । ହୁଏତ କାହା ମନରେ ଟିକିଏ ବିଷଣ୍ଣତା ଦେଖାଦେଇଛି । କେହି କେହି କହିଛନ୍ତି– ବୁଢ଼ୀଟା ଭାରି ଭଲ ମଣିଷ ଥିଲା । କୌଣସି ଗୋଳମାଳ ନ ଥିଲା ।

ଉତ୍ତମାର ଘରର ଠିକ୍ ଆଗ ଘରଟିରେ ପଦ୍ମାସନା ଥିଲେ । ଘର ଦୁଆର ମୁହଁରେ ଠିଆ ହୋଇ ଉତ୍ତମା କିଛି ସମୟ ଚାହିଁରହିଲା ସେ ବନ୍ଦ ଦୁଆରଟା ଆଡ଼େ । ତା'ପରେ କ'ଣ ଭାବି ନିଜ ଘରୁ ଗୋଛାଏ ଧୂପକାଠି ନେଇ ଗୋଟାଏ ଷ୍ଟେନ୍‌ଲେସ୍ ଷ୍ଟିଲ୍ ଗିଲାସରେ ରଖି ଜଳାଇଦେଇ ପଦ୍ମାସନାଙ୍କ ଘର ମଝିରେ ରଖିଦେଇ ଆସିଲା ।

ନିଜ କକ୍ଷକୁ ଆସି ଭାବିଲା– ଈଶ୍ୱର ବୋଲି ଯଦି କେହି ଥାଅ ଏବଂ ମଣିଷ ସମ୍ପର୍କରେ କିଛି କରିବାର କ୍ଷମତା ଥାଏ ତମର, ତ ତାକୁ ଏତେ ଦୀର୍ଘଜୀବନ ଦିଅନି । ଯଦି ତା'ର ଚାରିପଟେ ଆତ୍ମୀୟଜନମାନେ ମଧ ଥାଆନ୍ତି ତେବେବି ଦୀର୍ଘଜୀବନ ବିଡ଼ମ୍ବନାମୟ । ପ୍ରୟୋଜନୀୟତା ସରିଗଲେ ମଣିଷର ଆଉ କ'ଣ ଅଛି ?

ତା'ପରେ ଭାବିଲା– ଅବସ୍ଥାପନ୍ନଙ୍କ କଥା ତେବେବି ଗୋଟାଏ ପ୍ରକାର; କିନ୍ତୁ ଅବସ୍ଥାହୀନମାନେ ? ସେମାନଙ୍କର କର୍ମକ୍ଷମତା ଚାଲିଗଲେ କି ଗ୍ଲାନିର

ଜୀବନ ହୁଏ ! ଯଦି ଆପଣା ଲୋକଙ୍କର ସ୍ନେହଟି ମଧ୍ୟ ଥାଏ ? ପ୍ରୟୋଜନୀୟତା ସରିଗଲେ ସ୍ନେହ ମଧ୍ୟ କ'ଣ ସେମିତି ପ୍ରଗାଢ଼ ରହେ ?

× × × × ×

ଏହି ମୃତ୍ୟୁ ଘଟନା ପରେ ନବଜୀବନ ଭବନରେ ପୁଣି ଗୋଟିଏ ଚାଞ୍ଚଲ୍ୟକର ଘଟନା ଘଟିଗଲା ।

ହଠାତ୍ ଅନିର୍ବାଣ ଆଢ୍ୟ କେମିତି କେଜାଣି ନିରୁଦ୍ଦେଶ ହୋଇଗଲେ ! କିନ୍ତୁ ଖାଲି କ'ଣ ସାଦାସିଧା ନିରୁଦ୍ଦେଶ ? ସକାଳୁ ତାଙ୍କୁ ଦେଖି ନ ପାରି ଚା' ଦେଉଥିବା ପିଲାଟା ବନ୍ଦ ଦୁଆର ବାହାରୁ ଟିକିଏ ଠକ୍ ଠକ୍ କରି ଡାକି ଫେରିଯାଇ କହିଥିଲା ବୁଢ଼ା ଏବେ ମଧ୍ୟ ଶୋଇଛି ।

କିଛି ସମୟ ପରେ ଟୋକାଟା ଆଉ ଥରେ ଆସି ଦୁଆରରେ ଜୋର୍‌ରେ ବାଡ଼େଇବାରୁ ଦୁଆରଟା ଆପେ ଖୋଲି ଯାଇଥିଲା । 'ଏ ବାପା' କହି ଉର୍ଦ୍ଧ୍ୱଶ୍ୱାସରେ ପଳାଇ ଯାଇ ମେନେଜର୍ ବାବୁଙ୍କୁ କହିଥିଲା ।

ମେନେଜର ମନୋଜ ବିଶ୍ୱାସ ଘଟଣାସ୍ଥଳକୁ ଆସିଲା । ଚକ୍ଷୁ ସ୍ଥିର ହୋଇଗଲା ତା'ର ।

ଘରେ ଅନିର୍ବାଣ ନାହାନ୍ତି । କିନ୍ତୁ ତାହାହିଁ ଶେଷ କଥା ନୁହେଁ । ସେହି ଶେଷ କଥାଟି ହେଉଛି ପଙ୍ଖାର ସିଲିଂରୁ ଗୋଟାଏ ଦଉଡ଼ିର ଫାଶ ଝୁଲୁଛି ! ଫାଶି ଦଉଡ଼ି ପରି ଗୋଲ ଫାଶ ପଡ଼ି !

ଯାର ଅର୍ଥ କ'ଣ ?

ଅର୍ଥ ଆଉ କ'ଣ ? ଗଳାରେ ଫାଶ ଲଗାଇ ପୃଥିବୀରୁ ଚାଲିଯିବାର ଚେଷ୍ଟା ସମାରୋହରେ କରି ହଠାତ୍ ନର୍ଭସ୍ ହୋଇଯାଇ ଏ ଆଶ୍ରୟରୁ ଲୋକଟା ଚାଲିଯାଇଛି !

ଏ କି ଗୋଳମାଳିଆ ଘଟନାରେ ବାପା !

ଶୋଭନ ଆସିଲେ, ଡାକ୍ତର୍ ଆସିଲେ । ବୋର୍ଡ଼ରମାନେ ମଧ୍ୟ ଆସିଲେ । ତା'ପରେ ଆବିଷ୍କାର କରାଗଲା ଟେବୁଲ୍ ଉପର କାଗଜପତ୍ର ଭିତରେ ଖଣ୍ଡିଏ ସ୍ୱାକ୍ଷରିତ କାଗଜ । କାଗଜରେ ଲେଖା ହୋଇଛି-

ଭାବି ଦେଖିଲି, ବେକରେ ଫାଶ ଲଗାଇ ଝୁଲି ପଡ଼ିବା ପାଇଁ ଏ ଜାଗାଟା ଉପଯୁକ୍ତ ଜାଗା ନୁହେଁ । ଏଥିରେ ନବଜୀବନ ଭବନର ଅନିଷ୍ଟ ହୋଇଯିବ । ମାଲିକ ଭଦ୍ରଲୋକଙ୍କୁ ବ୍ୟସ୍ତ କରାହେବ । ଦେଖିବି– ପୃଥିବୀଠାରୁ ଚାଲିଯିବା ପାଇଁ ସୁବିଧାଜନକ ଜାଗା ପୃଥିବୀରେ ଅଛି କି ନାହିଁ ! ଅତଏବ ଏଠାରୁ ବିଦାୟ ନେଉଛି ।

ତଳେ ବେଶ୍ ପରିଷ୍କାର ଅକ୍ଷରରେ ସ୍ୱାକ୍ଷର କରାହୋଇଛି ।

ନବଜୀବନ ଭବନର କାଳେ ଅନିଷ୍ଟ ହେବ ଏ ଆଶଙ୍କାରେ ଅନିର୍ବାଣ ରାତାରାତି ଏମାନଙ୍କ ଘରେ ଦଉଡ଼ିରେ ଝୁଲି ନ ପଡ଼ି ଅନିର୍ଦ୍ଦିଷ୍ଟ କେଉଁ ପଥରେ ଯାତ୍ରା କରିଛନ୍ତି; କିନ୍ତୁ ତେବେକେ ଭବନର ମାଲିକଙ୍କୁ ଅଳ୍ପ ବିପନ୍ନ ହେବାକୁହିଁ ପଡ଼ିବ । ପୁଲିସ୍‌କୁ ଖବର ଦେବାକୁ ପଡ଼ିବ । ରେଜିଷ୍ଟାର୍ ବୁକ୍‌ରେ ତାଙ୍କର ଘରର ଯେଉଁ ଠିକଣା ଲେଖା ଅଛି ସେଠାକୁ ଖବର ପଠାଇବାକୁ ହେବ ।

ଅବଶ୍ୟ ସେ ଠିକଣାରେ ଯେଉଁ ଲୋକଟି ଗଲା, ସେ ଫେରିଆସି କହିଲା ସେଠି କେହି ନାହାନ୍ତି । ଜରାଜୀର୍ଣ୍ଣ ଘରଟାକୁ କର୍ପୋରେସନ୍‌ର ଲୋକମାନେ ଭାଙ୍ଗୁଛନ୍ତି ।

ପରେ ପରେ ଦୁଇ ଦୁଇଟା ଦୁର୍ଘଟଣା ଘଟିଗଲା । ତେଣୁ ଭବନର ଶାନ୍ତ ଛନ୍ଦରେ ଟିକିଏ ଛାୟାପାତ ଘଟିଗଲା ।

କେତେଦିନ ପରେ ହଠାତ୍ ଦିନେ ଅପ୍ରତ୍ୟାଶିତ ଭାବରେ କହିବାକୁ ଗଲେ ଭଲ ଘଟଣାଟିଏ ଘଟିଲା ନବଜୀବନ ଭବନରେ ।

ଦେବଜ୍ୟୋତି ବୋଷଙ୍କର ପୁଅ ଆଉ ବୋହୂ ଆସି ହାଜର ହେଲେ ବାପାଙ୍କୁ ନିଜ ପୁଅର ଅନ୍ନପ୍ରାଶନକୁ ନିମନ୍ତ୍ରଣ କରିବାକୁ । କହିଲେ– ଅନ୍ତତଃ ଦୁଇଦିନ ପାଇଁ ଚାଲନ୍ତୁ ବାପା !

ଦେବଜ୍ୟୋତି ଆଶ୍ଚର୍ଯ୍ୟ ହୋଇ କହିଲେ– ଏତେ ଡେରିରେ କ'ଣ ଅନ୍ନଛୁଆଣୀ ହେଉଛି ?

ପୁଅ ମୁଣ୍ଡକୁ କୁଣ୍ଡାଇ କହିଲା-ହଁ, ଛ ମାସରେ ହୁଏ । ପାଞ୍ଜି ଅନୁସାରେ

ସେଇଟା ଠିକ୍ ସମୟରେ ହେଇଛି । ଫଙ୍କସନ୍‌ର ବ୍ୟବସ୍ଥା କରିବାକୁ ଟିକିଏ ଡେରି ହେଇଗଲା । ଏଇଟାକୁ ପ୍ରଥମ ବର୍ଷପୂରାଣି କହିଲେ ବି ଚଳିବ ।

ଓଃ !

ବୋହୂ କହିଲେ– ଯିବେ ତ ବାପା ? ଆମେ ଭାରି ଆଶା କରି ରହିଥିବୁ । ସମସ୍ତଙ୍କୁ କହି ଦେଇଛୁ, ତା ଭାଗ୍ୟରେ ଏତେ ଦିନକୁ ଜେଜେଙ୍କୁ ଦେଖିବାର ସୌଭାଗ୍ୟ ହେବ ।

ପୁଅ-ବୋହୂର ମୁହଁକୁ ଚାହିଁ ଦେବଜ୍ୟୋତି କହିଲେ– ରହିବାର ଦରକାର କ'ଣ ଯେ ? ଦେଖିଦେଇ ଫେରିଆସିଲେ ହେବନି ?

'ବାଃ । କାହିଁକି ?' ବୋହୂ ସପ୍ରତିଭ ଭାବରେ କହିଲା– ସେଇଟା ତ ଆପଣଙ୍କର ଚିରକାଳର ସ୍ଥାନ । ଦିଇଟା ଦିନ ରହିବାକୁ ଆଉ ଏମିତି କ'ଣ ଅସୁବିଧା ହେବ ? ଆପଣଙ୍କର ଘରଟା ଯେମିତି ଥିଲା ପ୍ରାୟ ସେମିତି ସଜା ହୋଇ ରଖାଯାଇଛି । ଖାଲି-

ହଠାତ୍ ତୁନି ହୋଇଗଲା ସେ । କହି ପକାଇବାକୁ ଯାଉଥିଲା– ଖାଲି ମଝି ମଝିରେ ମୋର ମାମୁ ଆସି ଦଶ ବାରଦିନ ରହିଯାଆନ୍ତି । ସମ୍ଭାଳି ଦେଲା, କହିଲା ନାହିଁ । କଥାଟା ଯୋଡ଼ିଦେବା ପାଇଁ ଆଉ ଥରେ ଟିକିଏ ଗେହ୍ଲାକିଆ ଭାବରେ କହିଲା– ଏତେ ଦିନରେ ମୋ ପୁଅଟାର ଲୋକସମାଜରେ ମୁହଁ ଦେଖାଇବାଟା ହେଲା ।

ଦେବଜ୍ୟୋତି ଏ କଥାର ଆଉ କି ପ୍ରତିବାଦ କରିଥାନ୍ତେ !

ବେଶି ସମୟ ବସିବାର ପ୍ରୟୋଜନ ବା କାହିଁ ? ପୁଅ ଟିକିଏ ଉସୁଖୁସୁ ହୋଇ ବୋହୂ ଆଡ଼କୁ ଚାହିଁଲା ଏବଂ ଯେମିତି ହଠାତ୍ କ'ଣ ଗୋଟାଏ ମନେ ପଡ଼ିଗଲା ଏହିପରି ଭାବରେ ସ୍ତ୍ରୀ ଆଡ଼କୁ ଚାହିଁ କହିଲା– ତମେ ବାପାଙ୍କୁ କ'ଣ ଗୋଟାଏ କହିବ ବୋଲି କହି ନ ଥିଲ ?

ବୋହୂ ଟିକିଏ ରହସ୍ୟଭରା ହସ ହସି କହିଲା– ତା ଏବେ ଥାଉ, ବାପା ଘରକୁ ଗଲା ପରେ କହିବି ।

ଦେବଜ୍ୟୋତି ସ୍ୱଭାବସୁଲଭ ଆଶ୍ଚର୍ଯ୍ୟ ହୋଇ ପଚାରିଲେ– କି କଥା ?

ବୋହୂ ବର ଆଡ଼କୁ ଚାହିଁ କହିଲା– ଭଲ କଲ । ଏଇଲେ ଫିଟାଇ କହିଦେଲ ! କହିଲ ଯଦି ତା'ହେଲେ କହିଦେଉଛି– ଆପଣଙ୍କୁ ପଚାରିବି ବୋଲି କହିଥିଲି, ନାତିର ମୁହଁ ଦେଖି କ'ଣ ଦେବେ ?

ଦେବଜ୍ୟୋତି ଅପ୍ରସ୍ତୁତ ହୋଇ କହିଲେ– ମୁହଁ ଦେଖି ? ଓ, ଉପହାରର କଥା କହୁଛୁ ? ସେକଥା ନାତିର ମା' ଜନନୀ କହନ୍ତୁ ।

– କହିବି ? କହୁଛନ୍ତି ତ ?

– କହିବୁନି କାହିଁକି ? ଜିନିଷଟା କ'ଣ ସେ କଥା ଜାଣିପାରିଲେ, ମାନେ ମୋର ସାଧ ଭିତରେ ହେଲେ-

ବୋହୂ ଧାଁ କିନା କହିପକାଇଲା– ସାଧ ଭିତରେ ନ ହେବାର ନୁହେଁ । କହୁଛି– ଆପଣ ତ ଘର ଛାଡ଼ି ବାନପ୍ରସ୍ଥ କରିବସିଛନ୍ତି । ହେଲେ ଆପଣଙ୍କର ଘରଟାର ଭବିଷ୍ୟତ୍ ମାଲିକ ତ ମୋ' କୁନୁସୁନା ? କ'ଣ କହନ୍ତୁ ? ତା'ହେଲେ ମୁହଁ ଦେଖା ହିସାବରେ ସେଇଟାକୁ ଟିକିଏ ଦାନପତ୍ର କରିଦେବେ ତା ନାଁରେ । ଉପହାର ପରି ଉପହାର ଗୋଟାଏ ହେବ । ସମସ୍ତେ ଧନ୍ୟ ଧନ୍ୟ କରିବେ ।

ଦେବଜ୍ୟୋତି ଯେପରି ଚଟ୍‌କିନା କଥାଟାର ଅର୍ଥ ବୁଝିପାରିଲେନି । ଥତମତ ହୋଇ– ଏଭଳି ଗୋଟିଏ ଜିନିଷ ମୁହଁ ଦେଖି ଦେବି ? ମୁଁ ଭାବିଥିଲି ଗିନିସୁନାର ମାଳ ଫାଳ । ମତେ କୁଆଡ଼େ ମୋ' ଅଜାମାନେ ମା'ଙ୍କର ବାପା ଗିନି-ମାଳ ଦେଇ ମୁହଁ ଦେଖିଥିଲେ ।

ଏ ଯୁଗରେ ଆଉ ପିଲାଙ୍କୁ ସୁନା ପିନ୍ଧାଇ ହେବନି ବାପା । ଏଇଟା ଯାହା କରିବ ତାର ଭବିଷ୍ୟତ୍‌ଟାକୁ ସୁନା ପିନ୍ଧାଇ ଦେଲାଭଳି ହେବ । ମୋର ମାମୁ ତ ଓକିଲ ! ସେ ଏଥିର ଓକିଲ ବ୍ୟବସ୍ଥାର ଯାହା କରିବାର କରିଦେବେ ।

ଏତେବେଳକୁ ଯାଇ ଦେବଜ୍ୟୋତିଙ୍କର ହୃଦୟଙ୍ଗମ ହେଲା– ଏଇଟା ନିହାତି ନୂଆ ପୁଅର ମା'ର କୌତୁକ ଛଳରେ ଦାବି କରିବାର ନୁହେଁ । ବ୍ୟବସ୍ଥା ପକ୍‌କା କରି ପ୍ରସ୍ତାବ ପକାଇଛନ୍ତି ଏମାନେ !

ହଠାତ୍ ଦେବଜ୍ୟୋତିଙ୍କ ମୁହଁରେ ଏକ ଅଭୂତପୂର୍ବ କୌତୁକ ହସ ଫୁଟି ଉଠିଲା । ଏ ହସ କେବେ ଶିଖିଲେ ଦେବଜ୍ୟୋତି ? ନା ଏହିକ୍ଷଣି ଶିଖିଗଲେ ? ଆଉ ତା ସହିତ ଶିଖି ପକାଇଲେ, ଠିକ୍ ସେହିପରି କୌତୁକ-ମିଶା କଥା । କହି ପକାଇଲେ– ଆଚ୍ଛା ବୋକୀ ଝିଅଟେ ତ । ନିଜ ପାଦରେ ନିଜେ କୁରାଢ଼ି ମାରୁଛ !

ଏଥର ଚଲାକ ବୋହୂ ମଧ ବୋକା ବନିଗଲା । କହିଲା– ଏ କଥା କାହିଁକି କହିଲେ ବାପା ?

ବାଃ, କହିବିନି ? ଯାହା ତମମାନଙ୍କର ପ୍ରାପ୍ୟ, ସେଇଟା ଆଗରୁ ବଢ଼ାଇ ଦେଇ ଅନ୍ୟକୁ ଦେଇ ଦେବାର ସଉକ ହେଲା ?

ପୁଅର ମୁହଁଟା ଟିକିଏ କଳା ପଡ଼ିଗଲା । ବୋହୂର ତ ନିଶ୍ଚୟ । ତେବେକେ ସେ କହିଲା– କୁନିପୁଅକୁ ଅନ୍ୟଲୋକ ବୋଲି ଭାବିବି ?

– ଆହା, ଏବେ ଭାବିବନି । ତେବେ ପୁଅଟି ଯେ ତମର ଚିରଦିନ ବୋକା ରହିଥିବ ସେଥିର ଗ୍ୟାରେଣ୍ଟି ଅଛି ? ଶେଷକୁ ଯଦି-ହା ହା ହା ।

କହିବା ବାହୁଲ୍ୟ ସେମାନେ ଭୀଷଣ ଧକ୍କା ଖାଇଲେ । ଏକଚକ୍ଷୁ ହରିଣ ପରି କେବଳ ଗୋଟାଏ ଦିଗହିଁ ଦେଖି ଆସିଛନ୍ତି ସେମାନେ । ଆଉ ସେ ଦେଖିବାଟା ସେହି ଓକିଲ ମାମୁର ଉପଦେଶ ହେତୁ । ସେ କହିଛନ୍ତି, ତୋର ଶଶୁରର କି ମତିଗତି କିଏ ଜାଣିଛି ! ହଠାତ୍ ଯଦି ଘରଟା କୋଉ ମିଶନ୍ ଫିସନ୍‌କୁ ଦାନ କରିଦେବେ ନା ? ଏ ପଡ଼ାରେ ଏବେ ଏହି ଘରର ଦାମ ଅନ୍ତତଃ ପାଞ୍ଚ-ଛଅ ଲକ୍ଷ ଟ଼ଙ୍କା ହେବ । ବେଶି ମଧ୍ୟ ହୋଇପାରେ । ଏପଟେ ଜମିର ଦର ତ ବର୍ତ୍ତମାନ ଡେସିମିଲ୍‌କୁ କେତେ ଟଙ୍କା । ସେ ନ ହେଲା ଏବେ ମାନ କରି ତେଜ ଦେଖାଇ ସେହି ଗୋଟାଏ ଆଶ୍ରମରେ ନା କୋଉଠି ଗୋଟାଏ ଯାଇ ବସିଛନ୍ତି । ହେଲେ ଜଗତରେ କ'ଣ କୁପ୍ରରୋଚନା ଦେବା ଲୋକଙ୍କର ଅଭାବ ଅଛି ? ତମେମାନେ ଏଭଳି ଏକାବେଳେ ଯୋଗାଯୋଗ ନ ରଖି ଭଲ କରି ନାହଁ । ଯାଉ, ଏଥର ଏ ମଉକାରେ ବୁଢ଼ାକୁ ଭୁଲେଇ ଗୋଟାଏ ପକ୍କା ବ୍ୟବସ୍ଥା କରିଦିଅ ।

ସେହି ପରାମର୍ଶ ଅନୁଯାୟୀ ଏ ପ୍ରସ୍ତାବ କଲେ ସେମାନେ ।

କ'ଣ ଇଚ୍ଛା କରି ଯୋଗାଯୋଗ ରଖୁ ନାହାନ୍ତି ? ସବୁବେଳେ ଭୟ କାଳେ ଘରେ ଭଡ଼ାଟିଆ ରଖିବାଟା ବାପା ଜାଣି ପକାଇବେ । ...

କିନ୍ତୁ ଏବେ ଏ କ'ଣ ଏମିତି ଅପ୍ରତ୍ୟାଶିତ ଗୋଟାଏ ଚାପୁଡ଼ା ଖାଇଲେ !

ଓଃ ! ସମସ୍ତେ କହନ୍ତି ବୋକା ହାଉଡ଼ା ଭଲ ମଣିଷ ସେ ! ଭିତରେ ଭିତରେ ଏମିତି ଜିଲିପିର ଫାଶ ରହିଛି ?

ପୁଅ ଆଉ ବୋହୂ ଦୁଇଜଣଯାକ ମୁହଁ କଳା କରି ଠିଆହୋଇ ଉଠି କହିଲେ– ଠିକ୍ ଅଛି । ଆପଣ ଯେତେବେଳେ ଏତେଦୂର ପର୍ଯ୍ୟନ୍ତ ଭାବି ପକାଇଲେ ସେତେବେଳେ ଆଉ– ଆଚ୍ଛା ଯାଉଛୁ ।

ନା । ଶେଷବେଳକୁ ଆଉ ନିମନ୍ତ୍ରଣରେ ଆସିବାର ଅନୁରୋଧ କରିବାକୁ ମନେ ପଡ଼ି ନ ଥିଲା । ସେମାନେ ଉଠି ଠିଆ ହେଲାକ୍ଷଣି ପ୍ରମାଦ ଗଣିଲେ ଦେବଜ୍ୟୋତି । ନିଜକୁ ସମ୍ଭାଳି ନେଇ ପୁଣି ଥରେ ହସି ଉଠି କହିଲେ- ନାଃ । ତୁଛାକୁ କ'ଣ କହିଲି ବୋକା ଝିଅ ? ଥଟା ମଧ ବୁଝିଲୁନି ? ଏଁ ? ଇ...ଏ, ଆଚ୍ଛା, ତୋର ସେ ମାମୁକୁ କହି ଯାହା କରିବାର କରି ରଖେ । ମୁଁ ଯାଇ ସେଥିରେ ଦସ୍ତଖତ କରି ମହାରାଜାଙ୍କ ହାତରେ ଧରାଇଦେବି । ବାସ୍ ।

ବୋହୂ ତେବେକେ ଆଡ଼ ଆଖିରେ ଚାହିଁଲା । ପୁଅ ଈଷତ୍ ଗମ୍ଭୀର ଭାବରେ କହିଲା– ନା । ମାନେ ଆପଣଙ୍କର ଯଦି ଦ୍ୱିଧା ରହିଥାଏ –

– ଆଃ । କି ଆଶ୍ଚର୍ଯ୍ୟ ! ଏଥିରେ ମୋର ପୁଣି ଦ୍ୱିଧା କେଉଁଥିରେ ଯେ...ମାନେ ଘରଟା ତ ତମମାନଙ୍କର ନା ? ଠିକ୍ ଅଛି, ଠିକ୍ ଅଛି । ସେହି କଥା ରହିଲା ।

ପୁଅ-ବୋହୂ ଚାଲିଗଲାପରେ ଦେବଜ୍ୟୋତି ଯେପରି ଏକାବେଳେ ହାଲିଆ ହୋଇ ଶୋଇପଡ଼ିଲେ । ଏତେଗୁଡ଼ାଏ କଥା ଏକାସଙ୍ଗେ କହିବାର ଅଭ୍ୟାସ ନାହିଁ ତାଙ୍କର । ତା'ଛଡ଼ା– ସେ କଥାଟା ! କି ଆଶ୍ଚର୍ଯ୍ୟ ! ଏମିତି ସିଧା କଥାଟେ ମୋ' ମୁହଁକୁ ଆସିଲା କାହିଁକି ? ଛି ଛି, କି ଲାଜ !

ସେମାନେ ତ ଦୁଇଦିନ ରହିବାକୁ କହିଛନ୍ତି । କାହିଁକି କହିଛନ୍ତି କିଏ ଜାଣିଛି ? ହଠାତ୍ କ'ଣ ବାପାଙ୍କ ପାଇଁ ତାଙ୍କ ମନ ଘାଣ୍ଟି ହୋଇଛି ? ହୋଇଥାଇପାରେ । ପୁଅ ନିଜେ ତ ଏବେ ବାପ ହେଲାଣି ! ବୁଝିପାରୁଛି·ବାପ ପୁଅର ସମ୍ପର୍କଟା କ'ଣ ! ମୁଁ ତ କାହିଁ ଆଗ କେବେ ଭାବିନଥିଲି ଏଭଳି ସବୁ ସମ୍ପର୍କ ତୁଟାଇ ଦେଇ ରହିବି ବୋଲି, ଭାବିଥିଲି ନିଜର ବୋଝଟା ସେମାନଙ୍କ ଉପରୁ ଖସାଇ ଆଣି ଦୂରରେ ରହିବି । ସେମାନେ ଟିକିଏ ଫ୍ରି ହେବେ । ମୁଁ ଖାଲି ମଝି ମଝିରେ– କିନ୍ତୁ ସେ ମଝି ମଝିରେ ଯିବା ସଙ୍କଳ୍ପଟାରେ ପୁଅ ତ ବାଧା ଦେଲା । ଦିନେ ଦିନେ ହଠାତ୍ ଆସେ । ବୋହୂ ଅବଶ୍ୟ ପ୍ରଥମ କରି ଆଜି ଆସିଲା । କେମିତି ବା ଆସିବ ? ଦେବଜ୍ୟୋତିଙ୍କର ମନେପଡ଼ିଲା । – ତାଙ୍କର ପୁଅ ଶୁଭ୍ରଜ୍ୟୋତି ଜନ୍ମ ହେଲାବେଳେ ଉରମା ଆଠ ମାସ ଖଣ୍ଡେ ବାପ ଘରେ ରହିଆସିଥିଲେ । ଓଃ, କି ଶୂନ୍ୟତା ଅନୁଭବ କରିଥିଲେ ସେତେବେଳେ ଦେବଜ୍ୟୋତି !

କିନ୍ତୁ ଚିନ୍ତାର କଥା ହେଉଛି ସେମାନଙ୍କର ସେହି ପୁଅର ଅନ୍ନପ୍ରାଶନର ଠିକ୍ ପରେ ପରେ ତା ଆରଦିନ ଏଠାରେ ଅଧିବେଶନ ବସିବା କଥା। ନା, ଏଥର ଆଉ ଠିକ୍ ମିଳନମେଳା ଭଳି ଉତ୍ସବ ନୁହେଁ। ପରଲୋକଗତା ପଦ୍ମାସନା ଦେବୀଙ୍କ ପାଇଁ ଗୋଟିଏ ଶ୍ରଦ୍ଧା ନିବେଦନ ଅନୁଷ୍ଠାନ ହେବ।

ଶୋଭନର ମା' ଶୋଭନକୁ କହିଥିଲେ, ଦୂର ସମ୍ପର୍କ ହେଲେ ମଧ ସେ ତୋର ବାପାଙ୍କର ମାଉସୀ ନା କ'ଣ ଥିଲେ। ରାଜାରାଜୁଡ଼ାଙ୍କ ଘର କଥା ବୋଲି ଯିବା ଆସିବା ନ ଥିଲା। ଏବେ ତ ଏ ଅବସ୍ଥା ହେଲା, 'ଶେଷ କାର୍ଯ୍ୟ' ଭଳି କ'ଣ ଟିକିଏ ତୁ କରେ। ଅବଶ୍ୟ ହେଉ ହେଉ ଅନେକ ଦିନ ଚାଲିଗଲାଣି।

ସେଥିପାଇଁ ଏ ସ୍ମରଣ ଅନୁଷ୍ଠାନ ହେବ। ଗୀତ ପିତ କିଛି ହେବ।

କିନ୍ତୁ ଅନୁଷ୍ଠାନ ଯେଉଁଥିପାଇଁ ହେଉ— ଦୁଇ ବ୍ଲକ୍ର ସଦସ୍ୟମାନେ ତ ଏକତ୍ର ହେବେ! ସେହି ଆକର୍ଷଣଟିକୁ ଛାଡ଼ି ପୁଅର ଘରକୁ ଯାଇ ଅକାରଣରେ ବସି ରହିବାଟା! ମନ ରାଜି ହେଉନି।

କାଙ୍କୁଲିଆରେ ଥିବା ନିଜର ସେ ଘରଟାକୁ ପୁଅର ଘର ବୋଲି ଭାବିଲେ ଦେବଜ୍ୟୋତି...ଘରଟା ଯେମିତି ମନ ଭିତରେ ଧୂସର ହୋଇଗଲାଣି।

କିନ୍ତୁ ବାଧହୋଇ ଏ ଦି'ଦିନ ଅନୁପସ୍ଥିତ ରହିବାର କଥାଟା ମିସ୍ ସୋମ୍ଙ୍କୁ ନ ଜଣାଇ ଯିବେ କେମିତି? ଅତଏବ ଚେଷ୍ଟା କରିବାକୁ ପଡ଼ିଲା।

ନିହାତି ଯୌବନସୁଲଭ ଚେଷ୍ଟା ତ। ତା'ଛଡ଼ା ଆଉ କିଛି ମୁଣ୍ଡକୁ ଆସିଲାନି।

ହଁ, 'ହିମାଳୟର ପଥେ ପଥେ' ବହିଟା ଉତ୍ତମା ଦିନେ ଦେବଜ୍ୟୋତିଙ୍କୁ ପଢ଼ିବାକୁ ଦେଇଥିଲା। କହିଥିଲା— ପଢ଼ି ଦେଖିବେ, ଭାରି ଭଲ ଲାଗିବ, ହିମାଳୟ ଭ୍ରମଣର କାହାଣୀଗୁଡ଼ାକ ମତେ ଭାରି ଭଲ ଲାଗେ।

ଦେବଜ୍ୟୋତି ବହିଟାକୁ ଭଲ କରି ପ୍ୟାକ୍ କରି ବାନ୍ଧିଦେଇ ମନୋଜ ହାତରେ ଦେଇ କହିଲେ, ଏ ବହିଟା ମିସ୍ ସୋମ୍ଙ୍କର। ମୁଁ ପଢ଼ିବାକୁ ଆଣିଥିଲି। ପଢ଼ି ଦେଲିଣି। କାଇଣ୍ଡ୍ଲି ଯଦି ତାଙ୍କ ହାତରେ ନେଇ ଦେଇଦେବେ—

ପଠାଇବା ପରଠାରୁ ଛାତି ଭିତରେ ହାତୁଡ଼ି ପଡୁଛି! କିନ୍ତୁ ଏତେ ଡର ଲାଗୁଛି କାହିଁକି? ମନୋଜ କ'ଣ ବହି ପ୍ୟାକେଟ୍ ଖୋଲି ମଲାଟ ଓଲଟାଇ

ଦେଖିବାକୁ ଯିବ ତା ଭିତରେ ଛୋଟ ଛୋଟ ଅକ୍ଷରରେ ଲେଖା ହୋଇଛି– 'ବାଇଶି ତାରିଖରେ ରହିବିନି । ଚାଲିଯିବାକୁ ବାଧ୍ୟ ହେଉଛି ।'

ଆଚ୍ଛା, ଉତ୍ତମା ଯଦି ଦେଖି ନ ପାରିବ ? କେମିତି ଜାଣିବ ତାକୁ ଜଣାଇବାକୁ ମୁଁ ଏ ଚିଠିଟା ଲେଖିଛି ! ତାହେଲେ ତ ହେଲା !

ପରଦିନ ଭୋର୍‌ରେ ଉତ୍ତମା ସୋମ୍‌ର ଭୋର୍‌ର ଫ୍ରେଶ୍ ହାଉଆ ଖାଇବାକୁ ବାସନା ହେଲା । ଆଉ କେଉଁଠି ସେ ହାଉଆ ମିଳିବ ? ଘରୁ ବାହାରି ବେଶ୍ କିଛି ଦୂରରେ !

କୃତାର୍ଥମନା ଦେବଜ୍ୟୋତିଙ୍କର ପ୍ରଥମ ବାକ୍ୟ– ଆପଣ ! ....ପରକ୍ଷଣରେ ...ବହିର ପ୍ୟାକ୍ ଖୋଲା ନ ଥିଲା ତ ?

– ନା ତ ।

– ଓଃ । ରକ୍ଷା ପାଇଗଲି । ଯାହା ଭାବନା ହୋଇଥିଲା । ଅଥଚ ଗିଫ୍ଟଟା ନେବାକୁ ପଡ଼ିଲା ବାଧ୍ୟହୋଇ ।

– କ'ଣ ହେଲା ? ଏତେ ଧଇଁସଇଁ ହେଉଛନ୍ତି କାହିଁକି ? ଓଃ, ଆପଣ କି ନର୍ଭସ୍ !

– ମାନୁଛି ! କିନ୍ତୁ– ମାନେ –

– ଥାଉ, ମାନେ ବୁଝିଛି । କେଉଁଠାକୁ ଯିବାକୁ ପଡ଼ିବ ?

– ଆଉ କାହିଁକି କହୁଛନ୍ତି ? ... କହି ଦେବଜ୍ୟୋତି ଦୁଇହାତକୁ ଓଲଟାଇ କହିଲେ– "ନା କରିହେଲାନି, ମାନେ ନାତି କଥା ତ"... ତା'ପରେ ଅନେକ ଚେଷ୍ଟାରେ ଗତକାଲିର ଘଟନା ବିଷୟରେ କଥାଗୁଡ଼ିକ କହିପାରିଲେ ଦେବଜ୍ୟୋତି ।

ଆଉ ଶେଷ କଥାଟା ଶେଷ ହେବା ପୂର୍ବରୁ ଉତ୍ତମା ହତାଶ କ୍ଷୁବ୍ଧ ଗଳାରେ– ଶେଷକୁ ପ୍ରମିସ୍ କରିଦେଲେ ?

– ନା, ମାନେ– ବୁଝିପାରୁଛନ୍ତି ତ, ସେଭଳି ପରିସ୍ଥିତିରେ ପଡ଼ି —

– ଦେଖନ୍ତୁ, ସେମାନେ ଆପଣଙ୍କର ପୁଅ-ବୋହୂ, ମୋର କିଛି କହିବା ସୁନ୍ଦର ଦିଶିବନି, ତେବେ ଆପଣଙ୍କର ଜୀବଦ୍ଦଶାରେ ତ ସମ୍ପୂର୍ଣ୍ଣ ସେମାନଙ୍କର ହେଇପାରିନଥାନ୍ତା । ଏ ଏକାବେଳେ ପକ୍କା ବ୍ୟବସ୍ଥା ।

ଦେବଜ୍ୟୋତି ଟିକିଏ ଉଦାସ ଭାବରେ କହିଲେ— ଯାଉ । ସେଥିରେ ମୋର ଆଉ କ'ଣ ଦରକାର ଅଛି ? ଆଉ ତ ମୁଁ ସେଠାରେ ରହିବାକୁ ଯିବିନି ।

ଉତ୍ତମା ହଠାତ୍ ହସି କହିଲା— ଆଗତରୁ 'ଶେଷକଥା' କହି ଦେବା ଉଚିତ ନୁହେଁ । ଘଟଣାଚକ୍ରରେ କେବେ କ'ଣ ହେବ କହି ହେବ ?

ଦେବଜ୍ୟୋତି ପୂର୍ବପରି କହିଲେ— ଆମଭଳି ଜୀବନ ପକ୍ଷରେ କହିହେବ ନିଶ୍ଚୟ । ମୋର 'ଶେଷ' ଏ ନବଜୀବନ ଭବନର ଦୁଇନମ୍ବର ବ୍ଲକ୍‌ର ଷୋହଳ ନମ୍ବର ଘରେ ହିଁ ହେବ ।

ଉତ୍ତମା ତଥାପି ହସିଦେଇ କହିଲା— ନିଶ୍ଚିତ କରି କିଛି କହିହେବନି । ଶୋଭନବାବୁଙ୍କର ଏ ଆଶ୍ରମ ଭବନର ନାଁଟି ବଡ଼ ସାଙ୍କେତିକ ।

ଦେବଜ୍ୟୋତି ଅନ୍ୟମନସ୍କ ଭାବରେ କହିଲେ— ମୁଁ ଆଉ ବେଶି କିଛି ଚାହେଁନି ମିସ୍ ସୋମ୍ । ଖାଲି ମନେହୁଏ, ଯଦି ପ୍ରତିଦିନ ଆପଣଙ୍କ ସଙ୍ଗେ ଅନେକ ସମୟ କଥା କହିବାର ସୁଯୋଗ ମିଳନ୍ତା !

× × × × ×

ନିଜ ଘରେ ପଶିବାକୁ ଅସ୍ୱସ୍ତି ଲାଗୁଛି, ଲାଜ ଲାଗୁଛି । ସେଥିପାଇଁ ଦେବଜ୍ୟୋତି ଆଖି କାନ ବୁଜି ଘର ଭିତରେ ପଶି ଏକାବେଳେ ଯାଇ ଠିଆ ହେଲେ ସିଡ଼ି ସାମନାରେ । ତେବେକେ ମନେହେଲା— ତଳ ମହଲାରେ ଯେମିତି କିଏ ସବୁ ଅଛନ୍ତି । କେଜାଣି ଉତ୍ସବ ପାଇଁ ବୋହୂର ବାପଘରର କେହି ଆତ୍ମୀୟ ହୁଏତ—

ପଚାରିଲେ ସେମାନଙ୍କୁ ଲାଜ ଲାଗିବ ବୋଲି ଆଉ ପଚାରିଲେ ନାହିଁ । ଖାଲି ଦୋତାଲାକୁ ଚଢ଼ି କହିଲେ— କାହିଁ ? କଥା କ'ଣ ? ଭୋଜିଘରର ଗହଳି ତ ଦେଖୁନି ?

ପୁଅ ବୋହୂ ଦୁଇଜଣଯାକ ଅବଶ୍ୟ ଧାଇଁ ଆସିଲେ । ସେମାନଙ୍କ ଭିତରେ ଆଶା ନିରାଶାର ଦ୍ୱନ୍ଦ୍ୱ ରହିଥିଲା । ବୋହୂ ବିଗଳିତ ହାସ୍ୟ ସହିତ କହିଲା— କାଲିତ ଗହଳିଟା ହେବ । ଆଜି ଖାଲି ଆପଣଙ୍କ ପାଇଁ ଦିନଟା ରହିଛି । ନାତି ସହିତ ନିର୍ଜନରେ ସାଙ୍ଗ ହେବେ ।

ହେଲେ ସେ କାହିଁ ?

ଗାଧୋଉଛି । ଏହିକ୍ଷଣି ଆଣିବି ।

ଗାଧୋଉଛି ? କିଏ ଗାଧୋଇ ଦେଉଛି ?, ଦେବଜ୍ୟୋତି ପଚାରିଲେ ।

କିଏ ଆଉ ? ତା'ର ଆୟା ! ଭାରି ଟ୍ରେନ୍‌ଡ୍ । ପାସ୍ କରା ମାର୍ଗରେ ନୁହେଁ ସତ, ତେବେ ନର୍ସ ଭଳି । ଆସନ୍ତୁ, ଆପଣଙ୍କ ଘରକୁ ଆସନ୍ତୁ ।

କୁଣ୍ଠିତ ଭାବରେ ଦେବଜ୍ୟୋତି କହିଲେ— ଥାଉ ଥାଉ । ବ୍ୟସ୍ତ ହେବାର କ'ଣ ଅଛି ? ଏଇଠି ବସୁଛି ।

ଏଇଠି ? ଏଇ ବାରଣ୍ଡାରେ ? କାହିଁକି ? ନା, ନୁହେଁ । ଆପଣଙ୍କର ଘର ସଫା କରି ରଖିଛି । ଏଇଲେ ଟିକିଏ ବିଶ୍ରାମ ନିଅନ୍ତୁ ।

ଦେବଜ୍ୟୋତି କୁଣ୍ଠିତ ଭାବରେ କହିଲେ— ହେଲେ ସେ ମୁହଁ ଦେଖା କଥାଟା ? ରେଡି କରି ରଖାହୋଇଛି ତ ?

ପୁଅ ଆତ୍ମସ୍ଥ ଗଳାରେ କହିଲା— ହବ, ହବ । ସେଥିପାଇଁ ଏତେ ତରବର ହେବା ଦରକାର କ'ଣ ? ଉପରଓଳି ଆଡ଼କୁ କରବୀର ମାମୁ ଆସିବା କଥା ଅଛି । ସେ ବୋଧହୁଏ କାଗଜପତ୍ର ତିଆରି କରିନେଇ ଆସିବେ ।

ଉପରଓଳି ? ବାଃ ! ଏବେ ତା'ହେଲେ 'କ'ଣ ଦେଇ ଦେଖିବି ?

କିଛି ଦେବାକୁ ପଡ଼ିବନି । ସେ କଥା ଛାଡ଼ିଲେ ।

ହସି ଅଭୟ ଦେଲେ ମଧ ଦେବଜ୍ୟୋତି ଛାଡ଼ିଲେନି । ଭାବିଲେ, ମୋ ଘରଟା ଠିକ୍ ରୂପେ ରହିଛି ବୋଲି ତ କହୁଛି । ଦେଖିବି— ଉତ୍ତମାର ସଜେଇ ରଖିଥିବା ସେଇ ଶୋ-କେସ୍‌ଟାରେ ମୋର ମାଟ୍ରିକ୍ ପାସ୍ ବେଳେ ପାଇଥିବା ମେଡାଲଟା ଅଛି କି ନାହିଁ ।

ଉତ୍ତମା । ...ନାଁଟାର ଭିତରେ ଦୁଇଟା ମଣିଷର ଚେହେରା ମିଶିଯାଉଛି କାହିଁକି ?

ଦେବଜ୍ୟୋତି ଦେଖିଲେ ମେଡାଲ୍‌ଟି ଅଛି । ଦେଖି ଦେଖି ମୁଖସ୍ଥ ହୋଇ ଯାଇଛି ଦେବଜ୍ୟୋତିଙ୍କର ଯେ କେଉଁଠି କ'ଣ ଅଛି । ତେବେବେ ଆଲମାରୀର କବାଟରେ ହାତ ଦେଲାକୁ ଦେହଟା କେମିତି ଛମ୍‌ଛମ୍ ଲାଗିଲା । ନିଜକୁ ଚୋର ଚୋର ପରି ଲାଗିଲା । ଉତ୍ତମାର କେତେ ଟିକିନିଖି ଜିନିଷ ସବୁ ସେମିତି ଅଛି ।

କିନ୍ତୁ ଅପରାଧ ବୋଧ କାହିଁକି ? ମଣିଷ ଚାଲିଗଲେ, ଘୁଞ୍ଚିଗଲେ, ଏଭଳି କ'ଣ ଲାଗେ ? କ'ଣ ଅଧିକାରବୋଧଟା ମଧ୍ୟ ହଜିଯାଏ ?

ଦୁଆର ପାଖକୁ ଆସି ଦେବଜ୍ୟୋତି ଡାକିଲେ– ବୋହୂ । ଆଲମାରୀର ଚାବିଟା ଟିକେ ନେଇଥାନ୍ତି ।

– ଓ ! ସେଇଟା ତ ଉପରର ଡ୍ରୟରରେ ଅଛି । ସବୁବେଳେ ଯେମିତି ଥିଲା ।

ବୋହୂ ମନେ ମନେ ବୋଧହୁଏ ଭାବିଲା– କାଲି ଭାଗ୍ୟବଶତଃ ମନେ ପଡ଼ିଥିଲା, ସେଥିପାଇଁ ଘରଟାକୁ ଯେମିତି ସେମିତି କରି ରଖିଦେଲି ।

କିନ୍ତୁ ତେବେକେ ତାକୁ ଟିକିଏ ଠକି ହେବାକୁ ପଡ଼ିଲା ।

ଏକଥା କିପରି ଜାଣିଥାନ୍ତା ସେ ଯେ ଶଶୁର ତାକୁ ପଚାରିବେ– ବୋହୂ, କାନ୍ଥରେ ତୋ ଶାଶୁର ଯୋଉ ଏନ୍‌ଲାର୍ଜ କରାହୋଇଥିବା ଫଟୋଟା ଥିଲା- ?

ଘର ରଙ୍ଗ କଲାବେଳେ ଦିନେ ବୋହୂ କାଢ଼ି ରଖିଦେଇଥିଲା, ଆଉ ପରିଶ୍ରମ କରି ଲଗାଇ ନ ଥିଲା । ମନେ ନ ଥିଲା ମଧ୍ୟ ।

ତେବେ ବୋହୂ ତ ହାରିବାର ଝିଅ ନୁହେଁ ! ପ୍ରତ୍ୟୁତ୍ପନ୍ନମତିତ୍ୱ ବଳରେ କହିଲା– ସେଇଟା ? ସେଇଟାକୁ ଆପଣଙ୍କ ପୁଅ ଫ୍ରେମ୍‌ଟାକୁ ପୋଛି ଚକ୍‌ଚକ୍ କରିବେ ବୋଲି କାଢ଼ି ନେଇଯାଇଛନ୍ତି । କହୁଛି ଏହିକ୍ଷଣି ଟଙ୍ଗେଇ ଦେଇ ଯିବେ ।

ଅପ୍ରସ୍ତୁତ ହେଲେ ଦେବଜ୍ୟୋତି, କହିଲେ– ନା, ନା । ବ୍ୟସ୍ତ ହେବାର କ'ଣ ଅଛି ? ହଠାତ୍ କାନ୍ଥଟାରେ ଦୃଷ୍ଟିଟା ପଡ଼ିଗଲା ତ– ଇଏ, କାହିଁ ସାହେବର ଗାଧୁଆ ସରିଲା ?

ନିୟମିତ ଦେଖାସାକ୍ଷାତ୍‌ର ଏକ ଉପାୟ ଆବିଷ୍କାର କରିବାକୁ ପଡ଼ିବ ନିଶ୍ଚୟ । ହେଲେ ଦେବଜ୍ୟୋତିଙ୍କର ସେ କ୍ୟାପାସିଟି କାହିଁ ?

ତେବେ ଦେଖା ହୋଇଗଲା ସେଇ ଦକ୍ଷିଣେଶ୍ୱର ମନ୍ଦିରରେ । ପବ୍‌ଲିକ୍ ସ୍ଥାନ ଅବଶ୍ୟ । ଜନାରଣ୍ୟ ହେଲେ ବି 'ନିର୍ଜନ' ।

ଉତ୍ତମା ସୋମ୍ କହିଲା– ଏତେ ଡରିବାର କ'ଣ ଅଛି ? ଆମେ ତ ଆଉ 'ପ୍ରିଜନର୍' ହୋଇ ନାହୁଁ । ସେମାନଙ୍କର ଦାୟିତ୍ୱ ଅନୁସାରେ ଏତେ ନିୟମ କାନୁନ୍

କରିଛନ୍ତି । ତା'ବୋଲି ଆଶ୍ରମବାସୀମାନେ କେଉଁଠାକୁ ଯିବେନି ଏ କଥା କେଉଁଠି ଲେଖା ହୋଇଛି ? ଯେଉଁମାନେ ଅକ୍ଷମ ସେମାନଙ୍କ କଥା ଅଲଗା । ଆଉ ଏତେ ନିୟମ ଭିତରେ ଥାଇ ମଧ୍ୟ ତ ଅନିର୍ବାଣ ବାବୁ ଚାଲିଯାଇଥିଲେ ।

ଦେବଜ୍ୟୋତି କହିଲେ– ହଁ । ତେବେ ଆପଣଙ୍କ ସାହସ ଦେଖି ଅବାକ୍ ହେଲି । ଆପଣ କିପରି ଅନାୟାସରେ ସେମାନଙ୍କୁ କହିଲେ– ଦକ୍ଷିଣେଶ୍ୱରକୁ ଯାଇ ଟିକିଏ ବୁଲି ଆସିବି । ଏକାକୀ ଯିବାକୁ ମନହେଉନି । ମିଷ୍ଟର ବୋଷ୍‌ଙ୍କୁ ସାଙ୍ଗରେ ଯିବାକୁ ଅନୁରୋଧ କରିଛି ! ଦେଖିବି ସେ ଯଦି ଯିବେ । ଫେରିବାକୁ ଡେରି ହେଲେ ଭାବିବେନି ।

ଉତ୍ତମା ଟିକିଏ ଗମ୍ଭୀର ହୋଇଯାଇ କହିଲା– ତା'ନ କହିଥିଲେ ଅନ୍ୟ ଉପାୟ କିଛି ନ ଥିଲା । ଆପଣ ଏପଟେ 'ଅନେକ ସମୟ' ଆଳାପ କରିବାକୁ ଆକୁଳ ହେଉଛନ୍ତି । ପ୍ରତିଦିନ ଦେଖା କରିବାପାଇଁ ବିକଳ ହେଉଛନ୍ତି । କିଛି ହେଲେ ଗୋଟାଏ ତ କରିବାକୁ ପଡ଼ିଥାନ୍ତା ।

ସେମାନେ ବସିଥିଲେ ପଞ୍ଚବଟୀର ବୃକ୍ଷଛାୟାରେ ।

ଦେବଜ୍ୟୋତି ହଠାତ୍ ଉତ୍ତମାର ହାତଟାକୁ ଚିପିଧରି କହିଲେ– ଆପଣଙ୍କୁ ଯେ କ'ଣ ବୋଲି ......

ଥାଉ କିଛି କହିବା ଦରକାର ନାହିଁ ।

ଉତ୍ତମା !

କହନ୍ତୁ ।

ନାଁ ଧରି କହିଲି ବୋଲି ରାଗିଲେନି ତ ?

ଉତ୍ତମା ହସ ଲୁଚାଇ କହିଲା– ମୋର ଫେରେ ରାଗିବାର କ'ଣ ଅଛି ? ମୋ ନାଁ ଧରି ମତେ ଡାକିଲେ, ଏଥିରେ ପୁଣି ଦୋଷର କ'ଣ ରହିଲା ? ତେବେ ରାଗ ହୋଇପାରେ ହୁଏତ ଆପଣଙ୍କର ଅସଲ ଉତ୍ତମାର । ଶୁଣିଛି ସ୍ୱର୍ଗକୁ ଗଲେ ମଧ୍ୟ ସ୍ତ୍ରୀଲୋକଙ୍କର ଜେଲସି ଯାଏନି ।

ଜେଲସି ? ଜେଲସି କାହିଁକି ? ତମର କ'ଣ ମନେ ହୁଏ ମୁଁ ମାନେ ମୋର...

କୌଣସି ପ୍ରକାରେ ଉତ୍ତମା କହିଲା– ଏଥିରେ ଆଉ ମନେହେବାର କ'ଣ ଅଛି ? କଥାଟା ତ ସ୍ପଷ୍ଟ ପ୍ରତ୍ୟକ୍ଷ ।

ତା ମାନେ –

ଠିକ୍ ସେଇୟା । ତା'ମାନେ ଆପଣଙ୍କର ଅସଲ ଉତ୍ତମାର କପାଳଟା ପୋଡ଼ିବାକୁ ଯାଉଛି । ନକଲକୁ ପାଇ-

ଉତ୍ତମା ! ପାଇ ? ଠିକ୍ କହୁଛ ?

ମୋର ତ ସେଇୟା ଧାରଣା । ମୋର ଅବଶ୍ୟ ଏମିତି କଥାରେ ପୂର୍ବ ଅଭିଜ୍ଞତା ନାହିଁ । ଆପଣଙ୍କର ବରଂ ଅଛି ।

ଉତ୍ତମା ! ମୋର ଯେମିତି ଏବେ ଅସଲ ନକଲ ଗୋଳେଇ ହୋଇଯାଇ ଏକ ହୋଇଯାଉଛି ।

ତା'ହେଲେ ଲକ୍ଷଣ ମିଶିଯାଉଛି ।

ଦେବଜ୍ୟୋତି ଧରିଥିବା ସେ ହାତଟାକୁ ନ ଛାଡ଼ି କହିଲେ– ତମର କେତେ ସାହସ ! ମୋର କାହିଁକି ଏଭଳି ସାହସ ହେଉନି ?

ସେଇଟା ତ ହଇରାଣର କଥା । ଆପଣ ଭାଙ୍ଗିପଡ଼ି ଖଲାସ ହୋଇ ଯାଉଛନ୍ତି ! ମତେ ମୁଣ୍ଡ ଘୂରାଇ ବ୍ୟବସ୍ଥା କରିବାକୁ, ମରିବାକୁ ପଡୁଛି । ତେବେ– କହିଦେଇ ହଠାତ୍ ପିଲାଙ୍କ ପରି ହି ହି ହୋଇ ହସି ଉଠିଲା, ଉତ୍ତମା କହିଲା– କଥାଟା ପ୍ରାୟ ଓପେନ୍ ସିକ୍ରେଟ୍ ହୋଇଯାଉଛି ।

ଆଃ– ସମସ୍ତେ କ'ଣ ଜାଣିଦେଲେଣି ?

ଜାଣିବେନି କେମିତି ? ସମସ୍ତେ ତ ଧାନର ଭାତ ଖାଆନ୍ତି ।

ଦେବଜ୍ୟୋତି ହଠାତ୍ ବିମର୍ଷ ହୋଇଗଲେ । ଉତ୍ତମାର ହାତଟିକୁ ଛାଡ଼ିଦେଇ କହିଲେ– କଥାଟା ଭାରି ଲଜ୍ଜାକର । ସେଇୟା ନା ?

ଭଲ ମଣିଷ ଭଳି ମୁହଁ କରି ଉତ୍ତମା କହିଲା, ମୁଁ ତ ବେଶି କିଛି ଲଜ୍ଜାର ଥିଲା ଭଳି ଦେଖୁନି । ତେବେ ହଁ, ଚପେଇ କରି ରଖିବା, ଘୋଡ଼ାଇ କରି ରଖିବା ବରଂ ଲଜ୍ଜାର ବୋଲି ମନେ ହୁଏ । ଆରେ ! ସେଇଠି କିଏ ସେମାନେ ବୁଲୁଛନ୍ତି ?

ପ୍ରାୟ ଡେଇଁ ପଡ଼ି ଉଠିଗଲା ଉତ୍ତମା ।

ଗଛ ଆଢୁଆଳରୁ ଯେଉଁମାନେ ଦିଶୁଥିଲେ ସେମାନଙ୍କ ପାଖକୁ ଆଗେଇଗଲା ଉତ୍ତମା 'ଏଇ' 'ଏଇ' କହୁ କହୁ ।

ଦେବଜ୍ୟୋତି ବୁଝିପାରିଲେନି କାହାକୁ ବା କେଉଁମାନଙ୍କୁ ଦେଖି ଉରମା ଏଭଳି ଉଲ୍ଲାସରେ ଉତ୍ତେଜିତ ହୋଇ ଦଉଡ଼ିଗଲା ।

ଏଣେ 'ନବଜୀବନ' ଭବନର ମହିଳା ମହଲରେ ଗୋଟାଏ ଭାରି ଉତ୍ତେଜିତ ଆଲୋଚନା ଚାଲିଥିଲା । ଉଦ୍ୟୋକ୍ତା, ଉଦ୍‌ବୋଧକ ହେଉଛନ୍ତି ମିସ୍ ମଲ୍ଲିକ୍, ସଭାନେତ୍ରୀ ମିସେସ୍ ରାୟଚୌଧୁରୀ, ନାନା ବକ୍ତା ଭୂମିକାରେ ମିସେସ୍ ନାଗ୍, ମିସେସ୍ ଚାଟାର୍ଜି, ମିସେସ୍ ହାଲଦାର୍, ବିଜନପ୍ରଭା ଦେବୀ ପଭୃତି ଅଛନ୍ତି । ସ୍ଥାନ କମନରୁମ୍– ଅପରାହ୍ଣ ।

ଏମାନଙ୍କର ଆଲୋଚ୍ୟ ବିଷୟ– ଏହି ଓଲ୍‌ଡ୍ ହୋମ୍‌ରେ ଗୋଟିଏ ଅଶୋଭନ ଆଚରଣ ଚଳିବାକୁ ଦିଆଯିବା ଉଚିତ କି ନାହିଁ ! ସେ ବିଷୟ ନେଇ ସମସ୍ତେ ମିଶି ପ୍ରତିବାଦ କରିବା କର୍ତ୍ତବ୍ୟ କି ନାହିଁ ! ଏବଂ ସେହି ଅଶୋଭନ ଆଚରଣକାରୀ ଯୁଗଳଙ୍କୁ ସିଧାସଳଖ କାଠଗଡ଼ାରେ ଠିଆ କରାଇ ସତର୍କ କରିଦେବା ସଙ୍ଗତ ନା ସ୍ୱୟଂ ଶୋଭନ ତରଫ୍‌ଦାର୍‌ଙ୍କର କାନରେ ପକାଇ ତାଙ୍କର ହସ୍ତକ୍ଷେପ ପାଇଁ ଆବେଦନ ପ୍ରାର୍ଥନା ସଙ୍ଗତ ହେବ !

ବିଜନପ୍ରଭା ଟିକିଏ କମ୍ ମିଶାଣିଆ, ଏମାନଙ୍କ ଭଳି ଘଟଣା ସମ୍ପର୍କରେ ଏତେ ଜାଣି ନ ଥିଲେ, ତଥାପି ଆଲୋଚନାର ବିଷୟବସ୍ତୁ ସମ୍ପର୍କରେ ଆକୃଷ୍ଟ ହୋଇ ଏହି ସଭାରେ ଆସି ବସିଛନ୍ତି ।

ନିଜର ବ୍ରୋଚ୍‌ଲଗା ଅଞ୍ଚଳଟିକୁ ଯଥାସ୍ଥାନରେ ଠିକ୍‌ଠାକ୍ ବସାଇ ଦେଇ ଭାରି ବହଳିଆ ପରକଲର୍ ଚଷମାଟି ନାକରୁ ଟିକିଏ ତଳକୁ କରି ଧୀର ଗଳାରେ କହିଲେ– ସେଇ ମିଷ୍ଟର୍ ବୋଷ୍ ରାତିରେ ଫିମେଲ ବ୍ଲକ୍‌କୁ ଚାଲି ଆସନ୍ତିନି ତ ?

ମିସ୍ ମଲ୍ଲିକ୍ ଚଢ଼ାଗଳାରେ କହିଲେ– ଇସ୍ ! ଏତେ ସାହସ ! ତା'ହେଲେ ଆଉ ଜାନ୍ ମାନ୍ ନେଇ ଫେରିହେବ ? ତା ନୁହେଁ ! କଥାଟା ହେଉଛି ସେମାନଙ୍କର ଭାବଭଙ୍ଗୀଟା ଯେମିତି ପ୍ରେମିକ ପ୍ରେମିକା ପରି । ଦୁହେଁଯାକ ଦୁହିଁଙ୍କୁ ଦେଖିଲାକ୍ଷଣି ଯେମିତି ଆହ୍ଲାଦରେ ଉଚ୍ଛୁଳି ପଡୁଛନ୍ତି । ଆଉ କ୍ରମଶଃ ତ ଲାଜର ଧାର୍ ନ ରଖି ଏ ଭବନରୁ ବାହାରିଯାଇ ଯାଇ କେଉଁଠି କେଉଁଠି ମିଟ୍ କରୁଛନ୍ତି । ହେଇଟି ଆଜି ପରା ମନୋଜବାବୁକୁ କହିଯାଇଛନ୍ତି, ଦୁଇଜଣଯାକ ଦକ୍ଷିଣେଶ୍ୱରକୁ ବୁଲିବାକୁ ଯାଉଛନ୍ତି ! ଯା ଆଗରୁ ଯାଇଥିଲେ ବେଲୁଡ଼କୁ । ଭାବି ପାରୁଛନ୍ତି ?

ଦକ୍ଷିଣେଶ୍ୱର ! ବେଲୁଡ଼ ! ଥିଏଟର ନୁହେଁ, ସିନେମା, ଆଉଟ୍‌ରାମ ଘାଟ କି ନିହାତିରେ ଢାକୁରିଆ ଲେକ୍‌କୁ ମଧ ନୁହେଁ, ନିହାତି ନିରାମିଷ ତୀର୍ଥସ୍ଥାନ ବେଲୁଡ଼ ଆଉ ଦକ୍ଷିଣେଶ୍ୱର ... ।

ବିଜନପ୍ରଭା ଟିକିଏ ଆଶ୍ୱସ୍ତ ହୋଇ କହିଲେ, ହେଲେ ଏଥିରେ ଆଉ ଦୋଷର କ'ଣ ଅଛି ? ଏବେ ମଧ ତ ଯେତେବେଳେ ଭାଗ୍ୟକ୍ରମରୁ ଚାଲିବାର କ୍ଷମତା ରହିଛି ।

ବାଃ । ଚମତ୍କାର । ଦୋଷର କିଛି ନାହିଁ ? ଏମିତି ସାଜିସୁଜି ଯୁଗଳ ହୋଇ ବାହାରି ପଡ଼ିବାଟା ଭିତରେ ଆପଣ କିଛି ଦୋଷ ଦେଖୁ ନାହାନ୍ତି ? ସେତେବେଳେ ସେମାନଙ୍କ ମୁହଁର ଭାବକୁ ଦେଖିଛନ୍ତି ?

ନାଃ, ତା'ତ ଠିକ୍-

ଦେଖିବେ । ତା'ହେଲେ ବୁଝିପାରିବେ । ହେଲେ ଶେଷ ପର୍ଯ୍ୟନ୍ତ ଯଦି ଗୋଟାଏ କଳଙ୍କିତ ଘଟନା ଘଟିବ ? ଶୋଭନବାବୁ ହୁଏତ ସେତେବେଳେ ଆମମାନଙ୍କୁ ଦୋଷ ଦେବେ । କହିବେ, ତାଙ୍କୁ ଆଗରୁ ଜଣାଇବା ଉଚିତ ଥିଲା ।

ସଭାରେ ଗୋଟାଏ କଡ଼ରେ ଆସି ବସିଥିଲେ ସୁକୁମାରୀ ଦେବୀ ।

ସେ ମଧ ଟିକିଏ ଆଶ୍ଚର୍ଯ୍ୟ ହେଲାପରି କହିଲେ– ଏ ବୟସରେ ଆଉ ବିଶେଷ କ'ଣ ଘଟିବ ?

ଆପଣ ତୁନି ହୁଅନ୍ତୁ ତ ! ବୟସର ଦ୍ୱାହି ଦେଇ ପାରହେଇ ହେବନି । ଯେଉଁଟା ଅଶୋଭନ ସେଇଟା ବିରୋଧରେ ମୋର ଏ ପ୍ରତିବାଦ । କାହିଁକି ଏଠି ଦୁଇଜଣ ନରନାରୀ ପରସ୍ପରର ସାହଚର୍ଯ୍ୟ କାମନା କରିବେ ? କାହିଁକି ଗୋଟାଏ ଆଳ କରି ବାହାରକୁ ବାହାରି ପଡ଼ି ଫ୍ରି ହୋଇଯାଇ ଯାହା ଖୁସୀ ତା' କରିପାରିବାର ସୁଯୋଗ ନେବେ ? ମିସ୍ ସୋମ୍ ଗୋଟାଏ ବିଖ୍ୟାତ ସ୍କୁଲ୍‌ର ହେଡ୍‌ମିଷ୍ଟ୍ରେସ୍ ଥିଲେ । ତାଙ୍କ ପକ୍ଷରେ ଏକାକୀ ଦକ୍ଷିଣେଶ୍ୱର ଯିବା କ'ଣ ସମ୍ଭବ ହୋଇନଥାନ୍ତା ? ସେଥିପାଇଁ ଏସ୍କର୍ଟ ନେବାକୁ ପଡ଼ିଲା ?

ସୁକୁମାରୀ ଦେବୀ ଆସ୍ତେ ଆସ୍ତେ କହିଲେ– ଯେତେହେଲେ ବି ସ୍ତ୍ରୀ ଲୋକ ତ ? ବୟସ ହେଇଗଲେ ଆତ୍ମବିଶ୍ୱାସ ଟିକିଏ କମିଯାଏ । ହେଇଟି ତ

ଶତଦଳବାସିନୀ ଦେବୀ, ସେଇ ଜଗଦୀଶ ବାବୁ ନା କାହା ସଙ୍ଗେ ପ୍ରାୟ କୁଆଡ଼େ ଯାଆନ୍ତି ମୁଁ ଦେଖେ । ମୋ ଘର ପାଖରେ ତ ତାଙ୍କ ଘରଟା ।

ଶତଦଳବାସିନୀ ! ଜଗଦୀଶବାବୁ !

ମିସେସ୍ ନାଗ ବିରକ୍ତ ଭାବରେ କହିଲେ– ସେମାନେ ଦୁଇଜଣ ତ ଗୁରୁ ଭାଇ-ଭଗିନୀ ଆପଣ ଜାଣି ନାହାନ୍ତି ? ଜୟଗୁରୁ ମହାରାଜାଙ୍କ ଆଧାମ୍ ଆଶ୍ରମ ନା କ'ଣ ଅଛି, ସେଠି ସବୁବେଳେ ଉତ୍ସବ ହୁଏ–

ସୁକୁମାରୀ ଭୟରେ ଆଉ କିଛି କହିଲେ ନାହିଁ । ମନେ ମନେ କ'ଣ କହିଲେ, ସେ କଥା ସେ ନିଜେ ଜାଣନ୍ତି ।

ମିସେସ୍ ରାୟଚୌଧୁରୀ ପୁଣି ଥରେ କହିଲେ– ସେହି 'ଗୁରୁଭକ୍ତି' ନେଇ ତ ତାଙ୍କ ଘରେ ପୁଅମାନଙ୍କ ସହିତ ଅଶାନ୍ତି ହୋଇଛି ।

ମିସେସ୍ ନାଗ୍ କହିଲେ– ମୋ ମତରେ ପ୍ରଥମେ ସେଇ ମନୋଜକୁ କଥାଟା ଜଣାଇ ଏମାନଙ୍କୁ ଟିକିଏ ବୁଝାଇ ଦେଲେ ଭଲ ହେବ । ତା'ପରେ ପୁଣି ସେମିତି କଲେ ବାଧ୍ୟ ହୋଇ ଶୋଭନବାବୁଙ୍କୁ –

ଆହୁରି କିଛି ସମୟ ଆଲୋଚନା ଏବଂ ନିନ୍ଦା ଧିକ୍କାର ଇତ୍ୟାଦି ପରେ ମନୋଜକୁ ଡକାଗଲା ।

ଏବଂ ମିସ୍ ମଲ୍ଲିକ୍ ସେମାନଙ୍କର ବକ୍ତବ୍ୟ ପେଶ୍‌ର ପୁରୋଧା ହେଲେ ।

ଖାଲି ତ ସେହି ବେଲୁଡ଼ ଦକ୍ଷିଣେଶ୍ୱର ନୁହେଁ । ଆଜିକାଲି ପ୍ରାୟ ପ୍ରତିଦିନ ତ ମିସ୍ ସୋମ୍ ଭୋର୍‌ସମୟରେ ଟିକିଏ ଫ୍ରେଶ୍ ପବନ ଦେହରେ ବଜାଇବାକୁ ବାହାରି ପଡ଼ନ୍ତି । ଆଉ ମିଷ୍ଟର୍ ବୋଷ୍ ? ତାଙ୍କର ମଧ୍ୟ କୁଆଡ଼େ ଠିକ୍ ସେତିକିବେଳେ ଅଭ୍ୟସ୍ତ ମର୍ଣ୍ଣିଂଓ୍ୱାକ୍‌ର ଟାଇମ୍ ପଡ଼େ । ତାଛଡ଼ା ଅଧିବେଶନ ଦିନ ? ସେ ତ ଦି'ଜଣ ଠିକ୍ ଗୋଟିଏ ଜାଗାରେ ବସିଥିବେ । ଯା ପରେ ମଧ୍ୟ କ'ଣ କହିବ ଏ ବୟସରେ ଆଉ– କ'ଣ ଯାଏ ଆସେ ?

ଧାଇଁ ଧାଇଁ ଯାଉଥିବା ଝିଅଟା ପଛରେ ଯାଇ ପଛପଟୁ ତା କାନ୍ଧଟା ଧରି ପକାଇ ଉତ୍ତମା କହିଲା– ଏ ମା ! ଟୁଟୁନ୍ ! ଏ ତିନି ବର୍ଷ ଭିତରେ କେତେ ଲମ୍ବା ହେଇଗଲୁଣିଲୋ ତୁ ? ତେବେ ଏତେ ଶୁଖିଯାଇଛୁ କାହିଁକି ?

ଝିଅଟା ମୁହଁ ଫେରାଇ ପ୍ରାୟ ହତବୁଦ୍ଧି ହେଲାଭଳି ଚାହିଁଲା । ତା'ପରେ ଅସ୍ଫୁଟ କଣ୍ଠରେ କହିଲା– ଆଈ ?

– ତେବେକେ ରକ୍ଷା, ଚିହ୍ନିପାରିଲୁ । ଡରୁଥିଲି ଚିହ୍ନିପାରିବୁ କି ନାହିଁ । ...ସେତେବେଳକୁ ଶୁଖିଲା କାଠ ପରି ହାତଟାକୁ ଧରି ସାରିଲାଣି ଉତ୍ତମା ।

ଟିକିଏ ଦୂରରେ ଅଟକି ଯାଇଥିବା ତାର ବାପା, ମା' ଓ ଆଉ କେତେ ଜଣଙ୍କ ଆଡ଼େ ଥରଟିଏ ଆଡ଼ ଆଖିରେ ଚାହିଁ ଆଖି ତଳକୁ କରି ହାତଟାକୁ ଛଡ଼ାଇବାକୁ ଚେଷ୍ଟା କରି ଲୁହଭରା ଆଖିରେ କହିଲା ତୁତୁନ୍– ତମେତ ଆମ ଉପରେ ରାଗି ଯାଇ ଆମର 'ମୁଖ ଦର୍ଶନ' ନା କଣ କରୁ ନାହଁ ?

ଏ ଜାଗାଟା ଭାରି ଭିଡ଼ ହୋଇଥିବା ଜାଗା ନୁହେଁ । ପଞ୍ଚବଟୀ ବଟଗଛକୁ ଦେଖିବାକୁ ଯିବାର ରାସ୍ତାଟା । ଯେଉଁମାନେ 'ହାଁ' ହୋଇ ଠିଆ ହୋଇ ପଡ଼ିଛନ୍ତି ସେମାନେ ମଧ୍ୟ ଆଡୁଆଳରେ ନାହାନ୍ତି । କଥା ଶୁଣାଯାଇପାରେ ।

ଉତ୍ତମା ସୋମ୍ ବେଶ୍ ଜୋର୍ ଗଳାରେ କହିଲା– କ'ଣ କହିଲୁ ? ତମମାନଙ୍କର 'ମୁଖ ଦର୍ଶନ' କରିବିନି ? ... ହେଲେ ମୁଖଗୁଡ଼ିକ କୋଉଠୁ ପାଇବି କହିଲୁ ? ତମମାନଙ୍କ ଘର ମୁଁ ଚିହ୍ନିଛି ?

ଏତେବେଳକୁ ସେହି ଠିଆହୋଇ ପଡ଼ିଥିବା ଦଳର ଜଣେ ଏପଟକୁ ଘୁଞ୍ଚି ଆସି କହିଲା– ପିଉସୀ, ତମେ ଏଇଠି ?

ଉତ୍ତମା ବେଶ୍ ଖୋଲା ହସ ହସି କହିଲା, ସେଥିରେ ଆଉ ଆଶ୍ଚର୍ଯ୍ୟ ହେବାର କ'ଣ ଅଛିରେ ? ଏ ଜାଗାଟା ତ ଠିକଣା ଅଭାବରେ ଆସି ନ ପାରିବା ଜାଗା ଭଳି ନୁହେଁ ? ହେଲେ ତୁ ମଧ୍ୟ କେତେ ଦୁର୍ବଳ ହୋଇଯାଇଛୁ 'ସବୁ' ? କେମିତି ଅଛୁ ?

ସର୍ବୋତ୍ତମ ସୋମ୍ ସେ କଥାର ଉତ୍ତର ନ ଦେଇ ଗମ୍ଭୀର ଭାବରେ କହିଲା, ଇଚ୍ଛା କଲେ ସବୁ ଠିକଣାକୁ ଯୋଗାଡ଼ କରିପାରିବ ଜଣେ ।

ଉତ୍ତମା ଗମ୍ଭୀର ହେବା ଦିଗକୁ ଗଲା ନାହିଁ । ସେହିପରି କହିଲା, ହଁ ତା ଅବଶ୍ୟ କରିହେବ । ତେବେ ସେମିତି ଇଚ୍ଛାଟା ଯଦି ନ ହେବ, ଯୋଗାଡ଼ ହୋଇପାରିବନି, ଏଇ କଥା ଆଉ କ'ଣ ? ତୋର ଝିଅ ତ ସେହି ଅପରାଧରେ ସେତିକିବେଳୁ ମୋର ହାତକୁ ଛଡ଼େଇବାର ଚେଷ୍ଟା କରୁଛି ।

ଉତ୍ତମା ଚାହିଁ ଦେଖିଲା– ଅଦୂରରେ ଠିଆ ହୋଇଥିବା ଲୋକଗୁଡ଼ାକ ଧୀରେ ଧୀରେ ଦୂରକୁ ଚାଲିଯାଉଛନ୍ତି। ବିପାଶା ସାଙ୍ଗରେ ତାର ନାନୀ ଆଉ ଭୋଇଁ ଅଛନ୍ତି। ସେମାନେ ଉତ୍ତମାକୁ ଭଲ ରୂପେ ଚିହ୍ନନ୍ତି।

ସର୍ବୋତ୍ତମ ବୋଧହୁଏ ଝିଅଟାକୁ ଶତ୍ରୁ କବଳରୁ ଛଡ଼ାଇ ନେଇ ଚାଲିଯାଇପାରୁନି ! ଅଥଚ କଥା ମଧ୍ୟ ଯୋଗାଉନି। ତେବେବେ ଭାବିଚିନ୍ତି କହିଲା– ତମର ସେ ଆଶ୍ରମ ନା କ'ଣ ? ସେଠାରୁ ଏମିତି ଏକୁଟିଆ ଛାଡ଼ନ୍ତି ?

ଏ ମା ! ଛାଡ଼ିବେନି କାହିଁକି ? ଜେଲ୍‌ଖାନର ବନ୍ଦୀ ନା କ'ଣ ? ତେବେ ଯେଉଁସବୁ ବୁଢ଼ୀ ବାତ, ଶ୍ୱାସ, ହାଇ ବ୍ଲଡ଼ପ୍ରେସର୍, ହାଇ ବ୍ଲଡ଼ସୁଗାର୍ ନେଇ ନେଇ ଜରଜର ସେମାନଙ୍କୁ କ'ଣ ଆଉ ଛାଡ଼ନ୍ତି ? ନା ସେମାନେ ନିଜେ ବାହାରି ପାରିବେ ? ତୋର ପିଉସୀ ତ ଏବେ ମଧ୍ୟ ସେ ପର୍ଯ୍ୟାୟକୁ ଆସିନି।

ସର୍ବୋତ୍ତମ ଚାହିଁ ଦେଖିଲା– ଖାଲି ସେ ପର୍ଯ୍ୟାୟକୁ ଆସିନି ନୁହେଁ, ବରଂ ପିଉସୀର ବୟସ ଯେପରି କିଛି କମି ଯାଇଛି। ମୁହଁରେ ଏବେ ମଧ୍ୟ ଏତେ ଆଲୋକ କୋଉଥିରୁ ? କେମିତି ଅଛି ସେ ଆଲୋକ ?

ସର୍ବୋତ୍ତମକୁ ତ ଏବେ ଦର୍ପଣରେ ନିଜର ମୁହଁ ଦେଖିଲେ ବିରକ୍ତ ଲାଗେ। ଏବେ ସେ କହିଲା– ତୁତୁନ୍, ଚାଲେ ! ସେମାନେ ଗଲେଣି।

ତୁତୁନ୍ ଏବେ ଆଉ ହାତ ଛଡ଼ାଇବାର ଚେଷ୍ଟା ନ କରି ବରଂ ଓଲଟି କହିଲା– ମୁଁ ଏବେ ଆଈ ସାଙ୍ଗରେ କଥାବାର୍ତ୍ତା ହେବି।

କଥାବାର୍ତ୍ତା ହେବୁ ! ବାଃ ଚମତ୍କାର। ଆମେ ଫେରିବାନି କି ? ...ଅସ୍ପଷ୍ଟ ଭାବରେ କହିଲା ସର୍ବୋତ୍ତମ।

କିନ୍ତୁ ତାର ଝିଅର ଗଳା ବେଶ୍ ଜୋର୍ ହୋଇଗଲା– ଏହିକ୍ଷଣି ଫେରିଯିବା ନା କ'ଣ ? ତମେମାନେ ମନ୍ଦିରରେ ସନ୍ଧ୍ୟା-ଆରତି ଦେଖିସାରି ଯିବ ବୋଲି କହୁଥିଲ !

ଆହା, ସେତେବେଳେ ଭିଡ଼ ହୋଇଯିବ। ଆଗରୁ ଯାଇ ଏକା ସାଙ୍ଗରେ ବସିବାକୁ ପଡ଼ିବନି ? ଶେଷକୁ ଭିଡ଼ରେ ଅଲଗା ହୋଇଯାଇ ହଜିଗଲେ ?

ଆହା, ହଜିଯିବି କାହିଁକି ମ ? ମୁଁ ତ ଆଈଙ୍କ ହାତଟାକୁ ଜୋର୍‌ରେ ଧରିଥିବି। ଆଈ ବୋଧହୁଏ ହଜିଯିବେ !

ଆଃ । ତୁତୁନ୍ । ଅବାଧ ହୁଅନା । ଚାଲ ।

ନା । ମୁଁ ଏବେ ଯିବିନି ।

ତୁତୁନ୍ ! ମା'ଠୁ ମାଡ଼ ଖାଇବାକୁ ଚାହୁଁଛୁ ? ମା' ଠିକ୍ କହେ, ପୃଷ୍ଠବଳ ପାଇଲାକ୍ଷଣି ତୁ ଏକାବେଳେ– ! ଆସେ କହୁଛି । ...ସେମାନେ କ'ଣ ଭାବୁଥିବେ କହିଲୁ ? ହଠାତ୍ ତୁ ଏଠି ଜଣକ ପାଖରେ ଅଟକିଗଲେ–

ଉତ୍ତମା 'ଅଭଙ୍ଗା' । ଉତ୍ତମା ହାସ୍ୟମୁଖୀ । କହିଲା– ତୋର ସେମାନେ ତ ସେଇ ତୋର ସବୁ ଆଉ ଶାଳୀ ? ହେଲେ ସେମାନେ ଏବେ ହଠାତ୍ 'ଜଣକ ପାଖରେ' ଭାବିବାକୁ ଯିବେ କାହିଁକି ? ମତେ ଚିହ୍ନି ନାହାନ୍ତି ? ତୋର ବିଭାଘର ରାତିଠାରୁ ତ ଚିହ୍ନାଚିହ୍ନି ହୋଇଛି ।

ଝିଅର ବିରୋଧ ଭାବରେ ମନେ ମନେ ଉଗ୍ର ହୋଇଯାଇଥିଲା ସର୍ବୋତ୍ତମ, ହଠାତ୍ ପିଉସୀ ସହିତ ଦେଖା ହେବାରୁ ଅପ୍ରସ୍ତୁତ ହୋଇଥିଲା ମଧ୍ୟ, ପୁଣି ପିଉସୀ ଭିତରେ କିଛିମାତ୍ର ବିଚଳିତ ଭାବ ନ ଦେଖି ରାଗିଯାଇଥିଲା । ତେଣୁ କହି ନ ପାରି ରହିପାରିଲା ନାହିଁ– ଓଃ, ହଁ, ତା ତ ସତ । ତମେ ଭଲରୂପେ ଚିହ୍ନିଛ । ତେବେକେ ତମେ ଶେଷ ସମୟରେ ଟିକିଏ ଶତ୍ରୁତା ନ କରି ରହିପାରିଲନି ।

ସେମାନଙ୍କ ସଙ୍ଗେ ଶତ୍ରୁତା ? କ'ଣ କହୁଛୁରେ 'ସବୁ' ?

'ସବୁ' ମନେ ମନେ ଦୂରବର୍ତ୍ତିନୀ ମହିଳା ଦୁଇଜଣଙ୍କ ମୁହଁ ସ୍ମରଣ କରିବାକୁ ଲାଗିଲା । ସେମାନେ ନିଶ୍ଚେ ଭାବୁଥିବେ, ମୁଁ ହଠାତ୍ ପିଉସୀକୁ ଦେଖି ଉପରେ ପଡ଼ି ଗପ କରିବାରେ ଲାଗିଯାଇଛି । ସେଥିପାଇଁ ନୀରସ ଗଳାରେ କହିଲା– ତା'ଛଡ଼ା ଆଉ କ'ଣ ? କାଳେ ସେମାନେ ମହାମାୟା ଲେନ୍‌ର ସେ ପୁରୁଣା ଘରଟାରେ ସ୍ଥାନ ପାଇଯିବେ, ସେଥିପାଇଁ ଚାବିଟା ଘରବାଲା ହାତରେ ଦେଇଗଲ ! ହେଲେ ସେମାନଙ୍କର କିଛି କ୍ଷତି ହେଲାନି । ଖୁବ୍ ଭଲରେ ଅଛନ୍ତି । କ୍ଷତି ଯାହା ହେବାର ମୋ'ରି ହେଲା । ତା'ଛଡ଼ା ସେମାନଙ୍କ ପାଖରେ ମୁହଁ ରକ୍ଷା ହେଲାନି ।

ଉତ୍ତମା ଏବେ ଟିକିଏ ଗମ୍ଭୀର ହୋଇ କହିଲା– କାହାର କେତେବେଳେ କେଉଁଠି କାହା ପାଖରେ ମୁହଁ ରକ୍ଷା ହୁଏ ନାହିଁ, ସେ ହିସାବ କ'ଣ ଟିକିନିଖି କରି ଗଣି ହେବରେ 'ସବୁ' ? ତେବେ ଏକପକ୍ଷ ସବୁବେଳେ ଲୋକସାନରେ ପଡୁଥିବେ ଆଉ ଅପରପକ୍ଷ ଲାଭବାନ୍ ହେଉଥିବେ, ସେଇଟା କ'ଣ ଠିକ୍ ? ସେ

ଘରବାଲା ବୁଢ଼ା ? ଅବଶ୍ୟ ତାଙ୍କୁ ଭାରି ମହତ୍ ବ୍ୟକ୍ତି ବୋଲି କହୁନି । ତେବେକେ ପେଞ୍ଚରେ ପଡ଼ି କେତେଦିନ ହେଲା କ୍ଷତି ସହି ଆସୁଥିଲେ ! ଆଉ ଘରର ଚାବିଟା ତାଙ୍କ ହାତରେ ଦେଇଦେବା ଛଡ଼ା ତାଙ୍କୁ ଦେବାଭଳି ହାତ ଆଉ ହାତ ପାଖରେ କ'ଣ କୁଆଡୁ ପାଇଲି ସେତେବେଳେ ?

ସର୍ବୋତ୍ତମ ବିରକ୍ତ ଗଳାରେ କହିଲା– ଥାଉ ପିଉସୀ । ପୁରୁଣା କଥାକୁ କାଢ଼ିବା ଦରକାର ନାହିଁ । ଏ ଟୁଟୁନ୍, ଚାଲ୍ କହୁଛି –

ଉତ୍ତମା କହିଲା– ଚାଲ୍ ଝିଅ । ତତେ ତୋର ମା'ର ହାତରେ ସମର୍ପଣ କରିଆସିବି । ତୋର ବାପାର କଥାବାର୍ତ୍ତା ଶୁଣି ମନେହେଉଛି ଝିଅକୁ ତା'ର 'ପିଲା ଚୋର' ବୋଧହୁଏ ଧରିଛି ।

ଚଟ୍‌ପଟ୍ ପାଦଚାଲି ସେହି ଦଳଟା ଆଡ଼କୁ ଆଗେଇଗଲା ଉତ୍ତମା ଟୁଟୁନ୍‌ର ହାତ ଧରି । ପାଖକୁ ଯାଇ କହିଲା– ବିପାଶା, ତୋ ଝିଅକୁ ନେ । ତା ବାପକୁ ଡର ଲାଗୁଥିଲା କାଳେ ଆଈ ସାଙ୍ଗରେ ଭାଗି ପଳାଇବ । ହେଇଟି ଯେ ବିମଳା, ଭଲ ଅଛତ ? ଆଚ୍ଛା– ଆରେ ଏ 'ସବୁ', ଏ ବିପାଶା, ତମମାନଙ୍କର ଠିକଣାଟା ଦେଇଗଲ ! ନାତୁଣୀ ତ ମତେ କାଠଗଡ଼ାରେ ଠିଆ କରାଇଦେଲା, ମୁଁ କୁଆଡ଼େ ତା ଉପରେ ରାଗି ତାର ମୁଖ ଦର୍ଶନ କରୁନି ବୋଲି ସେ ଭାବିଲା । ଏଥର ତ ନିଶ୍ଚେ ଯିବାକୁ ପଡ଼ିବ । ଠିକଣା– ଡିରେକ୍‌ସନ୍ ସବୁ ବୁଝାଇଦେ ବାପା –

ସର୍ବୋତ୍ତମ ଇତସ୍ତତଃ କରି କହିଲା– ଏଠି କୋଉଥିରେ ଲେଖିବି ?

ଉତ୍ତମା ହାତବ୍ୟାଗରୁ ଗୋଟିଏ ଛୋଟ ନୋଟ୍‌ବୁକ୍ ଆଉ ଗୋଟିଏ ଡଟ୍‌ପେନ୍ ବାହାର କରି ହସି ହସି କହିଲା– ପିଉସୀକୁ ତ ଜ୍ଞାନ ହେଲାଠୁ ଦେଖିଛୁ ? ଆଜି ଦେଖାଇ ଛାଡ଼ ପାଇବୁ, ସେ ଭରସା ନାହିଁ ।

ନୋଟ୍‌ବୁକ୍‌ଟାକୁ ପୁଣି ବ୍ୟାଗ୍‌ରେ ରଖି କହିଲା– ଟୁଟୁନ୍, ଏଥର ନିଶ୍ଚେ ଦିନେ ଯିବି । ଟା ଟା ।

ଦେବଜ୍ୟୋତି ପଚାରିଲେ, କାହାକୁ ଦେଖି ଏମିତି ଦଉଡ଼ି ପଳାଇଲେ ?

ଆପଣ କହନ୍ତୁ । ଅନୁମାନ କରନ୍ତୁ ।

ବାଃ, ମୁଁ କ'ଣ ଆପଣଙ୍କର କାହାକୁ ଚିହ୍ନିଛି ? ଅନୁମାନ କରିବି କିପରି ?

କରିପାରୁ ନାହାନ୍ତି ? ନାଃ, ଦେଖୁଛି ଆପଣଙ୍କୁ ଧରି ବହୁତ ଖଟିବା ଅଛି ମୋର କପାଳରେ ।

ଦେବଜ୍ୟୋତି ଚମକିଲେ– ମତେ ଧରି ?

ସେ ଅର୍ଥଟା ମଧ୍ୟ କ'ଣ ମତେ ବୁଝେଇବାକୁ ପଡ଼ିବ ? ହା ଅଦୃଷ୍ଟ...ଆଚ୍ଛା ପରେ ବୁଝିବେ । ଏବେ ଚାଲନ୍ତୁ, ଆରତି ଆରମ୍ଭ ହେଲାଣି ।

ଦେବଜ୍ୟୋତି ଧୀରେ କହିଲେ, ଏ ଭିଡ଼ ଭିତରେ ଠେଲାଠେଲି କରି ଯିବା ? ଏଠୁ ତ ଶୁଣାଯାଉଛି ।

ଏ ମା' ! ଆରତିଟା ଶୁଣିବାର ନା ଦେଖିବାର କଥା ।

ଓଃ ! ତାହାହେଲେ ଚାଲନ୍ତୁ !

ଉତ୍ତମା ଟିକିଏ ହସି କହିଲା, ଭଲ କଥା ତ ! ନାଁ ଧରି ଡାକିଲେ, ପୁଣି 'ଆପଣ' ଆଜ୍ଞା କାହିଁକି ?

ଉତ୍ତମା ! ମତେ ସାହସ ଦେଉଛ କାହିଁକି ?

ଆରେ ସରିଲା ! ଏଥିର ଏତେ ସାହସ ଦିଆଦେଇର କ'ଣ ଅଛି ? ବୟସରେ ମୁଁ ଆପଣଙ୍କଠାରୁ ସାନ ତ ? ନା ବଡ଼ ? 'ତମେ' କହିଲେ ଦୋଷ କ'ଣ ? ଏତେ ଦିନହେଲା ତ ଚିହ୍ନାଜଣା ହେଲାଣି ।

ମନେ ମନେ ଉତ୍ତମା କହିଲା– ଯାହା ଦେଖୁଛି ତମକୁ କାନିରେ ବାନ୍ଧି ପକାଇବା ଛଡ଼ା ମୋର ଅନ୍ୟ କିଛି ଉପାୟ ନାହିଁ । ତମର ମୃତ ଗୃହିଣୀର ଭୂତଟିକୁ ମୋ ଉପରେ ଲଦି ଦେଇ ମୋ ମୁଣ୍ଡଟିକୁ ଖରାପ କରିଦେଲ ।

"ଉତ୍ତମା, ତମକୁ ଯେତେ ଦେଖୁଛି ସେତେ ଯେମିତି ଆଶ୍ଚର୍ଯ୍ୟ ହୋଇଯାଉଛି । ତମେ କି ଚମତ୍କାର କଥା କହ । ଶୁଣିଲେ ମନେହୁଏ– "

କ'ଣ ହେଲା ? ତୁନି ପଡ଼ିଲେ କାହିଁକି ? ଶୁଣିଲାକ୍ଷଣି କ'ଣ ମନେହୁଏ ? ଆପଣଙ୍କର ସେ ହଜାଇଥିବା ରତ୍ନର କଥା ଶୁଣୁଛନ୍ତି ?

ଠିକ୍ । ଠିକ୍ ଉତ୍ତମା । ତମେ କେମିତି ଜାଣିଲ ?

ଉତ୍ତମା ଭାରି ନିରୀହ ଭାବରେ କହିଲା– କେଜାଣି । ବୋଧହୁଏ ତାଙ୍କର ବିଦେହୀ ଆତ୍ମା ମୋ ଉପରେ ଲଦି ହୋଇଛି । ...ମନେ ମନେ ଅବଶ୍ୟ ଉତ୍ତମା କହିଲା, ପ୍ରେତାତ୍ମା ।

ଭାରି ଉତ୍ତେଜିତ ହୋଇ ଦେବଜ୍ୟୋତି କହିଲେ– ଏ ସବୁ ତମେ ବିଶ୍ୱାସ କରୁଛ ?

– ଆଗେ କରୁଥିଲି କି ନାହିଁ ଜାଣେନି, ଏବେ ବିଶ୍ୱାସ କରୁଛି ।

ମୋର ମଧ ଠିକ୍ ସେଇୟା ମନେ ହେଉଛି ଉତ୍ତମା । ଯେମିତି ସେ ମିଶି ଯାଇଛନ୍ତି ତମ ସାଙ୍ଗରେ ।

ଆହୁରି ଅଧିକ ନିରୀହ ଭାବରେ ଉତ୍ତମା କହିଲା– ମିଶିଯାଇଛନ୍ତି ନ କହି ଲଦି ହୋଇଛନ୍ତି, କୁହନ୍ତୁ ।

ସେଇଟା କ'ଣ ସମ୍ଭବ ?

ଜଗତରେ ଅସମ୍ଭବ ବୋଲି କିଛି ନାହିଁ, ମିଷ୍ଟର ବୋଷ୍ । କେତେ ମାସ ଆଗରୁ କ'ଣ ଆପଣ ଭାବିପାରିଥିଲେ ଏଭଳି କାହା ସାଙ୍ଗେ ମିଶି ବୁଲିବେ ?

ଦେବଜ୍ୟୋତି ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲେ– ଠିକ୍ କଥା । ଏବେ ମନେ ହେଉଛି ବୋଧହୁଏ ଏହିପରି–ହେଲେ ତମେ ବା କାହିଁକି ମତେ 'ଆପଣ' 'ଆଜ୍ଞା' କହୁଛ ?

ସେଇଟା କରିବାକୁ ସମୟ ଲାଗିବ । ଯେତେହେଲେ ବୟସରେ ବଡ଼ ତ ।

ଘଣ୍ଟା-କରତାଳର ଧ୍ୱନି ପବନକୁ ଭାରି କରିଦେଲା ଯେପରି । ଆଉ ସେ ଧ୍ୱନି କ୍ରମଶଃ ଯେପରି ଅସଂଖ୍ୟ ନକ୍ଷତ୍ରଖଚିତ ଅନନ୍ତ ଆକାଶର ଗଭୀର ସ୍ତବ୍ଧତା ଭିତରେ ହଜିଯିବାକୁ ଲାଗିଲା ।

ସବୁ ଧ୍ୱନି କ'ଣ ପବନରୁ ଆକାଶକୁ ଉଠିଯାଆନ୍ତି ?

ରେଳଗାଡ଼ିର ହୁଇସିଲ୍ ? ମିନିବସ୍‌ର ହର୍ଣ୍ଣ ? ସହରର ଅସଂଖ୍ୟ ଶବ୍ଦ ? କାହିଁ ଏପରି ତ ମନେ ହୁଏନି । ମନେ ହୁଏନି ତ ଯେ ସେଗୁଡ଼ିକ ଆକାଶକୁ ଉଠିଯାଇ ନିଃସୀମ ସ୍ତବ୍ଧତାରେ ମିଶି ଯାଉଛନ୍ତି ! ଅଥଚ ମନେହୁଏ ମନ୍ଦିରର ଘଣ୍ଟା ଧ୍ୱନି, ଆରତିର ବାଦ୍ୟଧ୍ୱନି, ଏଗୁଡ଼ିକ ଉଠି ଯାଉଛନ୍ତି ଊର୍ଦ୍ଧ୍ୱ ଆକାଶକୁ ।

ଏ ସମୟଟି କଥାର ସମୟ ନୁହେଁ । ଦୁହେଁଯାକ ବସିଥିଲେ ସ୍ତବ୍ଧ ହୋଇ । ଆଉ ଉତ୍ତମାର ମନେହେଲା– ମୁଁ ସେତେବେଳେ ତାଙ୍କର ଭୁଲ୍ ସଂଶୋଧନ କରିବାକୁ ଗଲି । ଏବେ ମନେହେଉଛି, ଆରତି ଶୁଣିବାକୁ ମଧ ହୁଏ ।

ଆଉ ଭାବିଲା...କି ଆଶ୍ଚର୍ଯ୍ୟ, ବାଲିରେ ପୋତି ହୋଇଥିବା ନଦୀ ପରି ମୋର ବୟସଟା କ'ଣ କେଉଁଠି ଲୁଚିଯାଇ ସ୍ଥିର ହୋଇ ରହିଥିଲା ? ଏବଂ ମୋର କୁମାରୀ ମନଟା ମଧ୍ୟ ? ଏତେଗୁଡ଼ିଏ ବୟସ ପାରହୋଇ ଆସି ସତରେ କ'ଣ ପ୍ରେମରେ ପଡ଼ି ମଲି ? ଏହି ଆମ୍‌ଭୋଳା ସଂସାରବୋଧହୀନ ବୃଦ୍ଧ ଲୋକଟି ତାଙ୍କର ଏକ ଅଦ୍ଭୁତ ଧାରଣାର ସମ୍ମୋହନରେ ନିଜେ ତ ସମ୍ମୋହିତ କରି ପକାଇଲେ । ...ତାଙ୍କୁ ମୁଁ ପକାଇ ଦେଇପାରୁନି ତ ?

ତା'ପରେ ଉତ୍ତମା ଭାବିଲା...ଆଉ ଯଦି ପକାଇ ଦେଇ ପାରିବିନି ତା'ହେଲେ ତ ଧରି ରଖିବାକୁ ହିଁ ପଡ଼ିବ । ମଣିଷଟାକୁ ତ ଭୂଇଁ ଉପରେ ଫୋପାଡ଼ି ଦେଇ ଘୁଞ୍ଚି ଯାଇପାରିବିନି !

ଲୋକଲଜ୍ଜା ?

ସେ ବସ୍ତୁଟା ଆଉ କାହାର ନ ଥିଲେ କ୍ଷତି ନାହିଁ, ଖାଲି ବୁଢ଼ା ହୋଇ ଯାଇଛନ୍ତି ଯେଉଁମାନେ ସେମାନଙ୍କର ରହିବା ଦରକାର ? – ଯେଉଁମାନେ ଯୌବନର ତାପରେ ତଗସଗ ହେଉଛନ୍ତି– ସେମାନେ ବୁଢ଼ାମାନଙ୍କୁ 'ଫାଲ୍‌ତୁ' ବୋଲି ଭାବିବେ, 'ଅଦରକାରୀ' ବୋଲି ଭାବିବେ ଏବଂ ୱେଷ୍ଟପେପର୍ ବାକ୍ସ ଭିତରକୁ ଚାଲାଣ କରିଦେବାକୁ ସୁଦ୍ଧା ଲଜ୍ଜା ଅନୁଭବ କରିବେନି । ଅଥଚ ସେହି 'ଅଦରକାରୀ'ମାନେ ଯଦି କହନ୍ତି, ମୋର ଏ ଭଙ୍ଗାରୁଜା ଟୁଟାଫୁଟା ଜୀବନଟାକୁହିଁ ମୁଁ ଟିକିଏ ମୋ ଭଳି କରି ତାକୁ ଧରି ବଞ୍ଚିବାକୁ ଚାହେଁ, ତାହେଲେ ସେ ଯୌବନ ଐଶ୍ୱର୍ଯ୍ୟରେ ଐଶ୍ୱର୍ଯ୍ୟବାନ୍‌ମାନଙ୍କର ମୁଣ୍ଡ କଟିଯାଏ ।

ଏ ବୃଦ୍ଧ ଭଦ୍ରଲୋକ ! କେବଳମାତ୍ର ଭଦ୍ର ସଭ୍ୟ ଚକ୍ଷୁଲଜ୍ଜାସମ୍ପନ୍ନ ବୋଲି । ତାଙ୍କ ନିଜର ସନ୍ତାନ ମଧ୍ୟ କି ନିର୍ଲଜ୍ଜ ପ୍ରତାରଣା କରି ତାଙ୍କୁ ତଡ଼ିଦେଲା । ଭଗାଇଦେଲା । ଲୋକଟି ସହରର ଗୋଟାଏ ଭଲ ଜାଗାରେ ବେଶ୍ ବଡ଼ କୋଠା ଘରର ମାଲିକ ଥିଲେ, କି କୌଶଳରେ ପୁଅ ସେଇଟାକୁ ହାତେଇ ନେଲା । ଶୁଣି ପଥର ହୋଇଯାଇଥିଲି । ମୋର ମଧ୍ୟ ସେଇ ଏକା କଥା । ଅଥଚ ଏହି ପ୍ରତାରିତ ନିଃସ୍ୱ ମଣିଷ ଦିଇଟା ଯଦି ସୁଖଦୁଃଖ କଥାରେ ସୁଦ୍ଧା ସଙ୍ଗୀ ହେବାକୁ, ଟିକିଏ ପରସ୍ପରର ପାଖକୁ ଆସିବାକୁ ଚାହିଁବେ, ତାହେଲେ ସେ ଦୃଶ୍ୟର ଦର୍ଶକମାନଙ୍କର ଆଖି ଟେରା ହୋଇଯିବ ।

ଯାଉ । ଭାସିଯିବ । ସେଗୁଡ଼ାକ ଖାତିର୍ ନ କଲେ ନ ଚଳେ ।

### ଶୂନ୍ୟରେ ସେତୁ

ଏହି ପରମତୀର୍ଥର ପ୍ରାଙ୍ଗଣରେ ମନ୍ଦିର ଚଉତରାରେ ବସି ଉତ୍ତମା ନାଁର ମଣିଷଟା ଏକ ଉପଲବ୍ଧିର ସତ୍ୟରେ ଦୃଢ଼ ହେଲା । ଜୀବନ ଜିନିଷଟା ହେଉଛି ମାତ୍ର ଗୋଟିଏ । ଥରଟେ ହାତରୁ ପକାଇ ଦେଲେ ଆଉ ଫେରି ପାଇ ହେବନି ।

ଆଉ ଦେବଜ୍ୟୋତି ? ସେ ସମ୍ପୂର୍ଣ୍ଣ ଅନ୍ୟ ଭାବନାରେ ଆଛନ୍ନ ।

ସେ ଭାବି ଚାଲିଥିଲେ– ଆଚ୍ଛା, ଆଗ କେବେ ଉତ୍ତମାକୁ ନେଇ କ'ଣ ମୁଁ ଏଭଳି ଏକାକୀ ବାହାରକୁ ଆସି ବସିରହିଛି ? କାହିଁ ମନେ ପଡୁନି ତ । ଖାଲି ଏଠାକୁ କାହିଁକି, କେତେ ଜାଗାକୁ ବୁଲିବାକୁ ଯାଇ ମଧ ବସିଛି ? ନା ସବୁବେଳେ ତ କାହାକୁ ନା କାହାକୁ ସାଙ୍ଗ କରିଛି । ଆମେ ସେତେବେଳେ ସେଇୟା ଜାଣିଥିଲୁ । ଖାଲି ଦୁଇଜଣ ଦୁଇଦଣ୍ଡ ବସି ରହିଲେ ମଧ ଅସ୍ୱସ୍ତି ହେଉଥିଲା । ଅଥଚ ଏଭଳି କୌଣସି ସୁନ୍ଦର ଜାଗାରେ ଖାଲି ଦୁଇଜଣ ତୁନି ହୋଇ ବସି ରହିଲେ ମଧ କେଡ଼େ ଭଲ ଲାଗୁଛି !

ଆଚ୍ଛା, ବୟସ ହୋଇଗଲେ କାହାକୁ ଭଲପାଇବାଟା କ'ଣ ଭାରି ଗର୍ହିତ ? ଭାରି ଲଜ୍ଜାକର ? ତା'ହେଲେ ? ବର୍ତ୍ତମାନ ମୋର କ'ଣ କରିବା ଉଚିତ ?

ଭାବି ଭାରି ଅସ୍ୱସ୍ତି ଅନୁଭବ କରୁଥିଲେ ସେ ।

ଉତ୍ତମା କହିଲା– ଚାଲନ୍ତୁ, ଏଥର ଫେରିବା ।

ବିପନ୍ନ ମୁହଁରେ ଦେବଜ୍ୟୋତି କହିଲେ– ଭାରି ଡେରି ହୋଇଗଲା ।

କ'ଣ ଆଉ କରାଯିବ ?

ସେମାନେ ଯଦି କିଛି କହନ୍ତି ?

କ'ଣ କହିବେ ? ...ଉତ୍ତମା ଭାରି ଜୋର୍‌ରେ ହସିଲା, କହିଲା– କ'ଣ କହିବେ । ''ଭାଗୋ ହିୟାଁସେ ?''

ଆରେ ! ସେ କଥା କିଏ କହୁଛି ? ତେବେ ସତରେ ଯାହା ନିୟମ, ତା ନ ମାନିଲେ–

ଉତ୍ତମା କହିଲା-ଭାବୁଛି ସେମାନେ ଦୂର୍ ଦୂର କଲା ଆଗରୁ ଗୋଟାଏ ପଦତ୍ୟାଗ ପତ୍ର ଦେଇଦେବା ।

କି ପତ୍ର ?

କାହିଁକି, ପଦତ୍ୟାଗ ପତ୍ର । ଆମେ ଯଦି ସେମାନଙ୍କର ନିୟମ କାନୁନ୍ ମାନି ଚଳିବାନି, ତା'ହେଲେ ତ ସେମାନଙ୍କୁ ଡିଷ୍ଟର୍ବ କରିବା ହେବ । ଗୋଟାଏ ବେଡ୍ ଏକ୍ସଚେଞ୍ଜ ମଧ୍ୟ ହେବ । ସେପଟୁ ଭାବିଲେ –

କିନ୍ତୁ ସତରେ ତ ଆଉ ସେଇଟା ସମ୍ଭବ ନୁହେଁ ! ଭାବୁଛି ନିଜେ ଆମେ ସାବଧାନ ହେବା ।

ମିଷ୍ଟର ବୋଷ୍ ।

କ'ଣ କହୁଛ ?

ଆଜିକାଲି ମଣିଷର ଜୀବନୀ ଶକ୍ତି ବହୁତ ବଢ଼ିଯାଇଛି । ଅନ୍ତତଃ ପ୍ରାଣରେ ବଞ୍ଚି ରହିବାର ଶକ୍ତି । ଆମ ଆଶ୍ରମରେ କେତେ ଜଣ ନବେର ଦୁଆର ପାଖରେ ପହଞ୍ଚିବା ଲୋକ ଅଛନ୍ତି । ଅଶୀଏ ପାର ହୋଇଯିବା ଲୋକ ତ ଗଦା ଗଦା ।

ହଠାତ୍ ଏକଥା କାହିଁକି ?

ନା, ମୁଁ କହୁଛି କ'ଣ କି ଧରନ୍ତୁ ଆପଣ ଆଉ କୋଡ଼ିଏ ବର୍ଷ ବଞ୍ଚିଯିବେ ଏବଂ ମୁଁ ମଧ୍ୟ ତିରିଶି କି ପଞ୍ଚତିରିଶି ବର୍ଷ ବଞ୍ଚିବି, ତା'ହେଲେ ସେ କେତେଟା ବର୍ଷ ସାବଧାନରେ ଚଳିଗଲେ ଗୋଳମାଳ ହେବନି ? ଆଉ ଶେଷ ପର୍ଯ୍ୟନ୍ତ ପଦ୍ମାସନା ଦେବୀଙ୍କ ପରି– ନାଃ । ଭାରି ଭୟାବହ କଥା ।

ହେଲେ ଉତ୍ତମା, ତା'ଛଡ଼ା ଆଉ କ'ଣ କରିବା ଦରକାର ଆମମାନଙ୍କର ?

ମୁଁ ମୁଣ୍ଡ ଖଟେଇ ଗୋଟାଏ ସମାଧାନ ଆବିଷ୍କାର କରିପକାଇଛି । ଏବେ ଆପଣ ମଧ୍ୟ ଆପଣଙ୍କର ବୁଦ୍ଧି ଖଟାନ୍ତୁ ।

ମୁଁ ? ମୋର ବୁଦ୍ଧିଟା ଠିକ୍–

ଖଟେନି ? ସେଇୟା ନା ? ତା'ହେଲେ ମୋର ସମାଧାନଟା ନିଅନ୍ତୁ । ଅର୍ଥାତ୍ ମତେ ସହଯୋଗିତା କରିବା ହିସାବରେ । ତେବେ ରାଜି ହେବା ନ ହେବାଟା ଆପଣଙ୍କର ନିଜସ୍ୱ କଥା । ସବୁ ଆପଣଙ୍କ ଉପରେ ନିର୍ଭର କରୁଛି ।

ମୋର ସହଯୋଗିତା ? ଉତ୍ତମା, କଥାଟା ମୁଁ ଠିକ୍ ବୁଝିପାରୁନି । ତେବେ ଯେକୌଣସି ଅବସ୍ଥାରେ ହେଉପଛକେ ତମର ସହଯୋଗିତା ବିଷୟରେ ମୋ'

ପକ୍ଷରେ ଅରାଜି ହେବାର ପ୍ରଶ୍ନ ଉଠିପାରିବ, ଏଇଟା କେମିତି ଭାବିପାରୁଛ ଉତ୍ତମା ? ତମ ପାଇଁ ମୁଁ– ମାନେ ତମ ସୁବିଧା ପାଇଁ ମୁଁ–

ସବୁବେଳେ ପ୍ରସ୍ତୁତ ! ନା ?

ନିଶ୍ଚୟ ।

ଠିକ୍ ତ ?

ଠିକ୍ ନୁହେଁ ? କ'ଣ କହୁଛ ?

ଆଚ୍ଛା, ତା'ହେଲେ ଠିକ୍ ଅଛି । ମୋର ସମାଧାନ ଭଳି ବ୍ୟବସ୍ଥା ହେବ ।

କିନ୍ତୁ ତମର ସମାଧାନଟା ଯେ କ'ଣ, କାହିଁ କହିଲନି ତ ?

ଓଃ । କହିନି ବୋଧହୁଏ ? ସେଇଟା ହେଉଛି– ବେଟର୍ ଲେଟ୍ ଦେନ୍ ନେଭର୍ ।

ଡାକ୍ତର ଦୀପକ ବନ୍ଧୁ ଶୋଭନକୁ କହିଲେ– ଆହେ 'ମନୋବିଜ୍ଞାନୀ' ! ମୋ କାରବାର ତ ଖାଲି ହାଡ଼ ଗୋଡ଼ ମାଂସକୁ ଧରି । ଏ ଘଟଣାଟା ମତେ ବଡ଼ ମଜା ଲାଗୁଛି । କହିଲୁ, ତୁ ଏମିତି ଘଟଣା ପୂର୍ବରୁ କେବେ ଦେଖିଥିଲୁ ?

ଶୋଭନ କହିଲେ– ମୁଁ ମନୋବିଜ୍ଞାନୀ ନୁହେଁ- ମାତ୍ର ଟିକିଏ ସହାନୁଭୂତିଶୀଳ । ସେଥିପାଇଁ ଅନ୍ୟ ଲୋକର ମନଟାକୁ ବୁଝିବାକୁ ଚେଷ୍ଟା କରେ ।

– ଯାହା କହ, ଏ ବୟସରେ ଏ ରୋଗ !

– ନା ଭାଇ, ମୁଁ ଅନ୍ତତଃ ସେମାନଙ୍କର ସତ୍‌ସାହସର ପ୍ରଶଂସା କରିବି ।

ମନୋଜ ବିଶ୍ୱାସ ନବଜୀବନ ଭବନରେ ମହିଳା ମହଲରେ ଆସି ହାଜର ହେଲା । ସହାନୁଭୂତିଭରା କଣ୍ଠରେ କହିଲା, ଆପଣମାନଙ୍କ ଅଭିଯୋଗ ପତ୍ରଟିକୁ ନେଇ ସାର୍‌ଙ୍କୁ ଦେଇଦେଇଛି । ଅବଶ୍ୟ ଲିଖିତ ଭାବରେ ତ କିଛି ନ ଥିଲା । ସବୁ ମୌଖିକ । ଆପଣମାନେ ବିଚକ୍ଷଣ, କଥାଟା ଫଇସଲା ହୋଇଯାଇଛି ।

ମିସ୍ ମଲ୍ଲିକ୍ ଧାଇଁଆସି ପଚାରିଲେ, କି ଫଇସଲା ହେଲା ?

ସେ ଦୁଇଜଣ ଆଉ ଭବନର ମେମ୍ବର ହୋଇ ରହିବେନି । ଏଠୁ ଚାଲିଯିବେ ।

ଚକ୍ଷୁ କୁଞ୍ଚିତ କରି ମିସ୍ ମଲ୍ଲିକ୍ କହିଲେ– ଦୁଇଜଣଯାକଙ୍କୁ ତଡ଼ିବା କିଛି ଦରକାର ନ ଥିଲା । ଜଣେ ଚାଲିଯାଇଥିଲେ ତ ପ୍ରବ୍‌ଲେମ୍ ସଲ୍‌ଭ୍ ହୋଇ ଯାଇଥାନ୍ତା । ଏଥିରେ ବରଂ ସେମାନଙ୍କୁ ସୁଯୋଗ ମିଳିବ –

ମନୋଜ ମହା-ଉତ୍ସାହରେ କହିଲା– କାହିଁ ସେମିତି କିଛି ମନେ ହେଲାନି ତ ?

ମିସ୍ ମଲ୍ଲିକ୍ କହିଲେ– କେତେ ନିର୍ଲଜ୍ଜ ତା'ହେଲେ ବୁଝନ୍ତୁ । ମୋର ତ ମନେ ହୁଏ ଭିତରେ ଭିତରେ ବ୍ୟବସ୍ଥା କରି ରଖିଥିଲେ । ନ ହେଲେ ଗୋଟିଏ କଥାରେ ରାଜି ହୋଇଯାଇଥାନ୍ତେ ?

ଅପରାଧୀଯୁଗଳ ଲାଜର ମଥା ଖାଇ ବିଦାୟ ନେବାକୁ ଆସିଥାନ୍ତେ କି ନାହିଁ କିଏ ଜାଣିଛି ? ଦେଖାଗଲା– ଶୋଭନଙ୍କ ପଟୁ ହିଁ ସେହି 'ନାଟକ'ର ଆୟୋଜନ ହେଲା ।

ସେ ଅସମୟରେ ଗୋଟିଏ ଅଧିବେଶନ ଡକାଇଲେ । ଏକାବେଳେ ଗୋଟିଏ ଭୋଜନସଭା । ଭବନର ସମସ୍ତେ, ଏପରିକି କାମଦାମ କରୁଥିବା ଲୋକମାନଙ୍କୁ ସୁଦ୍ଧା ଡକାଯାଇଛି । ଅନେକ ଆଲୁଅ ଜଳାଯାଇଛି । ପୁରୁଷ ବ୍ଲକ୍‌ର ବଡ଼ ହଲ୍‌ଟାରେ ଡେକୋରେଟର୍‌ମାନଙ୍କ ହାଲୁକା ଚଉକି ସବୁ ପଡ଼ିଛି ।

ଏହାପରେ ଅପରାଧୀ ଦୁଇଜଣ ଆସି ପାଖାପାଖି ହୋଇ ପଡ଼ିଥିବା ଚଉକି ଦୁଇଟାରେ ବସିଲେ । ସେମାନଙ୍କ ବେକରେ ଗଜରାହାର, ଜଣେ ପିନ୍ଧିଛି ମୂଲ୍ୟବାନ୍ ବନାରସୀ ଶାଢ଼ୀ, ଅପରଜଣକ ମଠା ପଞ୍ଜାବୀ, ସରୁ ଧୋତି ।

ଆଜି ସଭାରେ ସଭାପତି ସ୍ୱୟଂ ଶୋଭନ ତରଫ୍‌ଦାର୍ ।

ସଭ୍ୟମାନଙ୍କୁ ଶୁଭେଚ୍ଛା ଜଣାଇ ଶୋଭନ କହିଲେ... ମୋର ଏ ନବଜୀବନ ଭବନରେ କେବଳ ମୃତ୍ୟୁକୁ ହିଁ ଆମେ ଦେଖିଛେଁ । ଜାଣିଛି, ସେଇଟା ହିଁ ମୋର ପାଉଣା । କିନ୍ତୁ ଆଜି ପରମ ଆନନ୍ଦରେ ଘୋଷଣା କରୁଛି, ଆମର ଦୁଇଜଣ ମେମ୍ବର ଏ 'ଭବନ'କୁ ବିବାହ ନାମକ ପରମ ଶୁଭ ଜିନିଷଟି ଉପହାର ଦେଲେ । ସାରା ଜଗତରେ ଯେଉଁ ଅନୁଷ୍ଠାନଟିକୁ ଘେରି ଯେତେସବୁ ଆନନ୍ଦ ଉତ୍ସବ କରାଯିବା ପ୍ରଥା ରହିଛି । ଆମେ ଆମ ସୀମୀତ ମଧ୍ୟ ଭିତରେ ଯେତେ ଉତ୍ସବ

କରିବା ସମ୍ଭବ, କରୁଛୁ । ତା' ସହିତ ଏହିକ୍ଷଣି ରେଜେଷ୍ଟ୍ରି ଅଫିସ୍‌ରୁ ବିବାହିତ ହୋଇ ଆସିଥିବା ଏହି ନବଦମ୍ପତିଙ୍କୁ ଆମ ସମସ୍ତଙ୍କର ସର୍ବାନ୍ତଃକରଣ ଶୁଭେଚ୍ଛା ଜଣାଉଛି ।

ସ୍ତିମିତ ଭାବରେ ଟିକିଏ ହାତତାଳି ବାଜିଲା ।

ଡାକ୍ତରବାବୁ ଗୋଟିଏ ବଡ଼ ଗୋଲାପ ତୋଡ଼ା ନେଇ ଆସି ନବବିବାହିତ ଯୁଗଳଙ୍କ ହାତରେ ଧରାଇ ଦେଇ କହିଲେ– ମିଷ୍ଟର ବୋଷ୍, ମିସେସ୍ ବୋଷ୍, ଆପଣମାନଙ୍କୁ କଗ୍ରାଚ୍ୟୁଲେସନ୍ ଜଣାଉଛି ।

ମନୋଜ ମଧ୍ୟ ଫୁଲ ତୋଡ଼ାଟିଏ ଦେଲା । ଆଉ କହିଲା– ଏ ପିଞ୍ଜରାରୁ ବାହାରିପଡ଼ି ଆପଣ ଏଇଲେ ଯୋଉ ଆନନ୍ଦର ବସାରେ ରହିବାକୁ ଯାଉଛନ୍ତି ମାଉସୀ– ମୁଁ ସେଠାକୁ ମଝି ମଝିରେ ଯାଇ ଯୋଗଦେବି । ଆଉ ଟିକିଏ 'ଘରର ଚା' ଖାଇ ଆସିବି ।

ରିଟାୟାର୍ଡ଼ ଆର୍ମି ଅଫିସର ଜଣକ କ୍ଷୁବ୍‌ଧ କଣ୍ଠରେ କହିଲେ– ଶୋଭନ ବାବୁ, ଆଗରୁ ଜଣାଇଥିଲେ ଅନ୍ତତଃ ଆମେ ଟିକିଏ ଫୁଲହେରିକା ଦେଇଥାନ୍ତୁ ।

– ଆପଣମାନଙ୍କ ସ୍ନେହ ଶ୍ରଦ୍ଧା ହିଁ ଏମାନଙ୍କ ପାଖରେ ଫୁଲ ତୋଡ଼ା ପରି !

ପ୍ରକୃତରେ ସେମାନେ ଅଭିଭୂତ ହୋଇଛନ୍ତି । ଅଭିଭୂତ ହୋଇଛନ୍ତି ଶୋଭନଙ୍କର ଉଦାରତା ଦେଖି । ଖବରଟା ଶୁଣି ତରଫ୍‌ଦାର୍ ପ୍ରଥମେ ହତବୁଦ୍ଧି ହୋଇଯାଇଥିଲେ ମଧ୍ୟ ସାଙ୍ଗେ ସାଙ୍ଗେ କହିଥିଲେ– ଗୁଡ୍ ନିଉଜ୍ । ଭେରି ଗୁଡ୍ ନିଉଜ୍ । ତା' ବୋଲି ଏହିପରି ବିରାଟ ଆୟୋଜନ କରିବେ ସେ କଥା ଭାବି ନ ଥିଲେ ନବଦମ୍ପତି ।

ଶୋଭନର ମା' ପ୍ରଥମେ ଖବରଟା ଶୁଣି ଅବଶ୍ୟ ଗାଲରେ ହାତ ଦେଇଥିଲେ । କହିଥିଲେ– ହଁ ରେ ଶୋଭନ, ତୋର ସେ ଭବନର ଦୁଇଟା ବୁଢ଼ାବୁଢ଼ୀ କୁଆଡ଼େ ବାହା ହେଉଛନ୍ତି ?

ହଁ, ବାହା ହେବେ ।

ଦି' ଜଣଙ୍କର ବୟସ କୁଆଡ଼େ ଷାଠିଏ ସତୁରୀ ?

ଦୁଇ ତିନିବର୍ଷ ବେଶି ମଧ୍ୟ ହୋଇପାରେ ।

କ'ଣ କହୁଛୁରେ ? ଏ ବୟସରେ ବାହା ହୋଇ କ'ଣ କରିବେ ?

ଶୋଭନ କହିଲା– କ'ଣ ଆଉ କରିବେ ? ମନରେ ଭାବିନେବେ ତିରିଶି ଚାଳିଶି ବର୍ଷ ହେଲା ସେମାନେ ଘର କରିଆସୁଛନ୍ତି । ଏବେ ବୁଢ଼ା ବୁଢ଼ୀ ହୋଇଗଲେଣି ।

ତା' ପୁଣି ଭାବି ହେବ ?

ଭାବିଲେ ଭାବି ହେବ । ଜଣେ ଅନ୍ୟଜଣଙ୍କର ବାତ ଧରିଥିବା ଆଣ୍ଠୁରେ ମାଲିସ କରିଦେବ, ଆଉ ଜଣକ ଅନ୍ୟଜଣକୁ ବୁଢ଼ାର ପଥ୍ୟ ରାନ୍ଧି ଖୁଆଇବ । ହା, ହା, ହା, । ତେବେ ମଧ୍ୟ ତ ନିଜସ୍ୱ ଜଣକୁ ପାଇଲେ ।

ମା' ରାଗିଯାଇ କହିଲେ– ହେଲେ ତୋର ସେ କଥା ମନକୁ ଆସୁନି କାହିଁକି ?

କି ଦୁଃଖରେ ? ମୋର ଏମିତି ଜଣେ ମା ଥାଉଣୁ 'ନିଜସ୍ୱ' ଲୋକର ଅଭାବ ?

ଯାପରେ ମା' ନିଜେ କହିଲେ– ହେଲେ ସେମାନେ ତ ବାହା ହୋଇ ଆସିବେ ରେଜିଷ୍ଟ୍ରୀ ଅଫିସ୍‌ରେ । ଖାଇବା ପିଇବା ତୋ ପାଖରେ, ତା'ପରେ ଯିବେ କେଉଁଠାକୁ ? ଭଦ୍ରଲୋକଙ୍କ ଘରକୁ ? ନା ଗୃହିଣୀଙ୍କ ଘରକୁ ?

— ତମେ ପାଗଳ ହେଲ ମା' ? ଘରକୁ ସବୁ ଯିବେ କେମିତି ? ବୋଧହୁଏ ହୋଟେଲ୍ ଫୋଟେଲ୍‌କୁ ଯିବେ ।

ମା' କହିଥିଲେ– ଏ ମା' ! ସେ କି କଥା ? ହେଇଟି ଆମ ଘର ତ ଖାଲି ରହିଛି । ଯାହାହେଲେ ବି ସ୍ତ୍ରୀଲୋକଟି କୁଆଡ଼େ କୁମାରୀ । ଏଇଟା ତାର ପ୍ରଥମ ବାହାଘର । ଗୃହସ୍ଥ ଘର ଝିଅ, ହୋଟେଲ୍‌ରେ ଫୁଲଶଯ୍ୟା ହେବ ? ଛିଃ । ସେମାନେ ରାତିରେ ଆମ ଘରକୁ ଆସିବେ ।

ଖବର ଶୁଣି ଦେବଜ୍ୟୋତିଙ୍କ ବୋହୂ ତା ବରକୁ ଉଇକରି ଝାଡ଼ିଦେଲା, କହିଲା କଟୁକ୍ତି କରି– ଦେଖିଲ, ମୋର ଆଉ ମୋ ମାମୁଙ୍କର ବୁଦ୍ଧି ? କୁନି ପୁଅ ନାଁରେ ଘରଟା ଲେଖାଇ ଦେଇ ନ ଥିଲେ ତମ ବାପା ନୂଆ ଗୃହିଣୀଙ୍କୁ ଧରି ଏଠି ଆସି ରହିଥିଲେ– ତମେ ବାଧା ଦେଇପାରିଥାନ୍ତ ?

ସ୍ତ୍ରୀ ପାଖରେ ଚିରଦିନ ତ ଧରାପଡ଼ିଥିବା ଚୋରର ଭୂମିକା । ଏବେ ସେଇଟା ଆହୁରି ବଢ଼ିଗଲା । ଶୁଭ୍ରଜ୍ୟୋତି କହିଲା– ହଁ, ମାନୁଛି ତମର ଦୂରଦୃଷ୍ଟି

ଅଛି । ତେବେ ବାପା ଯେ ଏମିତି କରିବେ, ଏ କଥା କିଏ ଦୁଃସ୍ୱପ୍ନରେ ମଧ ଭାବିଥିଲା ?

ଦିନେ ଉତ୍ତମା ମାଗି କରି ଠିକଣା ନେଇଥିବା ଘରଟାରେ ପହଞ୍ଚିଗଲା । ହସି ହସି କହିଲା– ଦେଖେ ତୁତୁନ୍, କଥା ରଖିଲି କି ନାହିଁ ?

ତୁତୁନ୍ ଆଁ କରି ଚାହିଁ କହିଲା– ଆଈ ତମେ ସିନ୍ଦୁର ଲଗାଇଛ କାହିଁକି ?

– କାହିଁକି ? ଇଚ୍ଛା ହେଲା । ତୋ ପାଇଁ ଜଣେ ଅଜା ମଧ ଯୋଗାଡ଼ କରି ଦେଇଛି ।

ତା'ପରେ ବେଶ୍ ସ୍ୱଚ୍ଛନ୍ଦରେ ହସି କହିଲା– ଆରେ 'ସବୁ' ଦିନେ ସପରିବାରେ ତତେ ପିଉସୀଘରକୁ ଯିବାକୁ ପଡ଼ିବ । ବାପ ଭାଇ ତ କେଉଁ କାଳରୁ ସ୍ୱର୍ଗକୁ ଗଲେଣି । ସେମାନଙ୍କର କରଣୀୟ କାର୍ଯ୍ୟଟି ମତେ କରିବାକୁ ପଡୁଛି । ବାପାଙ୍କ ଝିଅର ବାହାଘରର ଭୋଜିଟା ବାପାଙ୍କ ବଦଳରେ ମୁଁ ଦେଉଛି ।

ବିପାଶା କହିଲା– ସେଇ ତ ବିଭାହେଲେ, ଆଗରୁ ହେଲେନି ?

ହସି ହସି ଗଡ଼ିପଡ଼ିଲା ଉତ୍ତମା, କହିଲା– କଥା ଶୁଣ । ବର ଜୁଟିଲେ ସିନା ବିଭା ହୋଇଥାନ୍ତି । ଏବେ ସେକେଣ୍ଡ୍ ହେଣ୍ଡ୍ ବରଟିଏ ଜୁଟିଲେ । ତୁତୁନ୍, ତୁ ନିଶ୍ଚେ ଯିବୁ, ବାପା, ମା' ନ ଗଲେ ତୁ ଜିଦ୍ ଧରିବୁ– ବୁଝିଲୁ ?

ପୁତୁରାର ଫ୍ଲାଟ୍ ଦେଖି ପ୍ରଶଂସା କରି ଚାହା ଖାଇ ଫେରିଲା ଉତ୍ତମା ।

ସେ ଚାଲିଗଲା ପରେ ରନ୍ଧାଘର ଭିତରୁ ବାହାରି ବିପାଶାର ନାନୀ କହିଲା, ବିପାଶା, ତୋ ପିଉସୀଶାଶୁଟା ଏଡ଼େ ନିର୍ଲଜ୍ଜ ।

ବିପାଶା କହିଲା, ଏବେ ଜାଣିଲୁ ତ ?

ହଁ, ମଶାଣିକୁ ଗଲାବେଳେ ଗୋଟାଏ ଏଭଳି କଥା କରି, ପୁଣି ତୋଲ ବଜେଇ ସମସ୍ତଙ୍କୁ ଖାଇବାକୁ ନିମନ୍ତ୍ରଣ କରିଆସିଛନ୍ତି । ମୁଁ ହସିବି କି କାନ୍ଦିବି ଭାବି ପାରୁନି...

ସେଇଦିନଠାରୁ ବିପାଶାର ଜୋଇଁ ଓ ନାନୀ ବିପାଶା ପାଖରେ ରହିଛନ୍ତି । ସୁବିଧା– ବିପାଶାକୁ ରନ୍ଧାଘରେ ପାଦଦେବାକୁ ପଡ଼େନି । ଏକୁଟିଆ ରହିବାକୁ

ପଡ଼େନି । ସେମାନେ ନିଃସନ୍ତାନ । ଉଠୁଣୁ ବସୁଣୁ ବରକୁ ବିପାଶା ଶୁଣାଏ, ନାନୀ କେତେ ପରିଶ୍ରମ ନ କରୁଛି ? ସେ ପରିଶ୍ରମର ତ ପୁଣି ମୂଲ୍ୟ ଅଛି ।

ଭାଗ୍ୟବାନ୍‌ର ବୋଝ ଭଗବାନ୍ ବହନ କରନ୍ତି । ଉତ୍ତମାର ପଢ଼ା ସାଙ୍ଗ ମଧୁମିତା । ବିଚରା ବିଧବା ହୋଇ ରହିଥିଲା ବାପ ଘରେ । ଭାଉଜର କଥା ଓ ବ୍ୟବହାର ସହୁ ସହୁ କ୍ରମଶଃ ଅସହ୍ୟ ହେଲା । ଉଇଲ୍ କିଛି ନ କରି ବାପା ଚାଲିଗଲେ ସେପାରିକୁ । ମଧୁମିତା ନିରାଶ୍ରୟ ହୋଇପଡ଼ିଥାନ୍ତା । କିନ୍ତୁ ଆଜିକାଲିର ଆଇନ୍ ତାକୁ ରକ୍ଷା କରିଦେଲା । ବାପାଙ୍କ ସମ୍ପତ୍ତିରେ ଝିଅର ସମାନ ଅଧିକାର ରହିଛି । ଓକିଲ ମଉସାଙ୍କ ସହାୟତାରେ କେସ୍ ଜିତିଲା ମଧୁମିତା– ପାଦ ରଖି ଠିଆହେବାକୁ ନିଜର ଭୂମି ଟିକକ ପାଇଲା ।

ମଧୁମିତାର ଘରର ତଳମହଲାଟି ଭଡ଼ାକୁ ନେଇଥିଲା ଉତ୍ତମା । ଆଉ କେବଳ ଘରଭଡ଼ା ଟଙ୍କା ହିଁ ମଧୁମିତାର ସଂସାର ଚଳିବାର ସମ୍ବଳ ଜାଣି ଦେଢ଼ହଜାର ଟଙ୍କା ଦେବାକୁ ସ୍ଥିର କରିଥିଲା । ଦୁଇମହଲା ଘରଟା ଦୁଇ ଭାଗ ହୋଇଛି । ଗୋଟାଏ ପଟରେ ମଧୁମିତାର ଭାଇ, ଭାଉଜ ଓ ପିଲାମାନେ । ଅନ୍ୟପଟେ ମଧୁମିତା । ଉପରକୁ ଚଢ଼ିବା ସିଡ଼ି ଦୁଇଜଣଙ୍କର, ବାପାଙ୍କ ନାଁରେ ଥିବା ଫୋନ୍‌ଟା ମଧ୍ୟ ଦୁଇଜଣଙ୍କର । ମଧୁମିତା ଗୋଟିଏ ଅଲଗା ବାଥ୍‌ରୁମ୍ କରିଥିଲା, ତା' ଭାଇ କଲେ ନୂଆ ରନ୍ଧାଘର । ଦୋତାଲା ଘରର ତଳ ବାରଣ୍ଡା ଉପର ବାରଣ୍ଡାରେ କାନ୍ଥ ପଡ଼ିଗଲା ।

ଆଖିର ଲୁହ ପୋଛୁ ପୋଛୁ ମଧୁମିତା ତାର ଦୁଃଖ ବର୍ଣ୍ଣନା କରିଥିଲା ଉତ୍ତମା ଆଗରେ– ସ୍ତ୍ରୀ ଲୋକ କେତେ ଛୋଟ ହୋଇପାରେ ! ମୁଁ ଦିନରାତି ଘର କାମ କରେ, ଥରକୁ ଦିଥର ଚାହା ଟିକିଏ ପିଏ ବୋଲି ଭାଉଜ ଚାହା ଚିନି ନେଇ ଭଣ୍ଡାର ଘରେ ଚାବି ପକାଇ ରଖନ୍ତି । ରାତିରେ ଦୁଇଟା ପରଟା ପାଇଁ ନିଜ ହାତରେ ମାପି ଦିଅନ୍ତି ଯେମିତି ଦିଇଟାଠୁ ବେଶି ନ ହୁଏ । ଦଶମୀ ଦିନ ଦୁଧ ଟିକିଏ ଦିଅନ୍ତି ତ ସେଥିରେ ପାଣି ମିଶାଇ ଦିଅନ୍ତି । ଦିନରାତି କହନ୍ତି ଦର କେତେ ବଢ଼ିଗଲାଣି । ଏବେ ରକ୍ଷା ପାଇଗଲି । ଘର ଅଲଗା, ହାଣ୍ଡି ଅଲଗା । ବାଇଗଣ ପୋଡ଼ା ଟିକକରେ ଦୁଇଟା କଞ୍ଚା ଲଙ୍କା ମଛିଦେଲେ କିଏ ଆଉ ଚଟ୍‌କିନା କହିଦେବନି-ନଣନ୍ଦ, ମୁଠା ମୁଠା କଞ୍ଚାଲଙ୍କା ଗିଳି ପକାଉଛ କେମିତି ଭାବୁଛି ! ମୁଁ ତ ଅତି କଷ୍ଟରେ ଅଧଖଣ୍ଡେ ଖାଏ । ଆଜିକାଲି କ'ଣ କଞ୍ଚାଲଙ୍କାର ଦର ମଧ୍ୟ କମ୍ ହୋଇଛି ?

ସତରେ ଭାରି ଛୋଟ କଥା । ନିମ୍ନଧରଣର କଥା । ମଣିଷର ହୃଦୟ-ଦୈନ୍ୟର ନିର୍ଲଜ୍ଜ ପ୍ରକାଶ । ଆଶ୍ଚର୍ଯ୍ୟ ! ମଣିଷ ଏତେ ଦୀନ କାହିଁକି ? ଏତେ କ୍ଷୁଦ୍ର କାହିଁକି ? ବିଶେଷତଃ ଏଇ ସ୍ତ୍ରୀଲୋକମାନେ ! ସଂସାରର ତୁଚ୍ଛ ଦିଇଟା ହଳଦୀ ପାଞ୍ଚଫୁଟଣର ଅଧିକାର ଧରି ସେମାନଙ୍କର କି ଲଜ୍ଜାହୀନ ମଦଗର୍ବ ! ବି ଅଧିକାରର ବିକାଶ ! ଅସଲ କଥା ହେଉଛି ପରିବାରର ଗୋଟିଏ ନାରୀଶକ୍ତି ଆଉ ଗୋଟିଏ ନାରୀଶକ୍ତିକୁ କୌଣସିମତେ ବରଦାସ୍ତ କରିପାରେନି ।

ଉରମା ନିଜେ ରୋଜଗାର କରୁ ନ ଥିଲେ ତାକୁ ମଧ ଏମିତି ପରିସ୍ଥିତିର ମୁହାଁମୁହିଁ ହେବାକୁ ପଡ଼ିଥାନ୍ତା ।

ଉରମା ନିମନ୍ତ୍ରଣ କରିଥିଲା ସମସ୍ତଙ୍କୁ । ସେମାନେ କ'ଣ ଆସିଥିଲେ ? ହଁ, ଆସିଥିଲେ । ଉରମାର ପ୍ରାକ୍ତନ ଭକ୍ତ ଛାତ୍ରୀ କେତେଜଣ ସେମାନଙ୍କ ପିଲାଙ୍କୁ ଧରି ଆସିଥିଲେ । ମହାମାୟା ଲେନ୍‌ର ଘରବାଲା ଆସିଥିଲା– ଦେବଜ୍ୟୋତିଙ୍କୁ ଦେଖି ଆନନ୍ଦରେ ଗଦ୍‌ଗଦ୍ ହୋଇଥିଲା– କି ଗୌରବର୍ଣ୍ଣ ! ଠିକ୍ ଶିବଙ୍କ ପରି ଚେହେରା ! ସ୍ୱୟଂ ଶିବ ନିଜେ ତ ବୁଢ଼ା ବର ।

ଆନନ୍ଦରେ ମନୋଜ କହିଥିଲା– ମାଉସୀ, ଆପଣଙ୍କୁ ସାତଟା ସଲାମ୍ ଜଣାଉଛି !

ବିପାଶା ଓ ତା ନାନୀ ହେରିକା ସମସ୍ତେ ଆସିଥିଲେ । ଆସିବେନି ? କୌତୂହଳ ନାହିଁ ? ପ୍ରାଣ ଯେ ଫାଟିଯାଉଛି ।

ଖାଲି ଉପରମହଲାରୁ ମଧୁମିତାର ଭାଉଜ ଆସି ନ ଥିଲା । ଘର ଅଲଗା ହେଲାଦିନୁ ମଧୁମିତା ସାଙ୍ଗେ ସେମାନଙ୍କର କଥା ବନ୍ଦ । ହେଲେବି କମନ୍ ସିଡ଼ିରେ ବିମଳା ଆଉ ତାଙ୍କର ଦେଖାସାକ୍ଷାତ୍ ଓ ଆଳାପ ହୋଇଛି ।

ବିମଳା– ଯାରି ଭିତରେ କେଡ଼େ ସୁନ୍ଦର ଘରଟାକୁ ସଜେଇ ଦେଇଛନ୍ତି ଦେଖିଲେ ?

– ମୁଁ ତେଣିକି ପାଦ ରଖୁନି ।

– ଓଃ, ବଡ଼ ସୁନ୍ଦର ସଜେଇଛନ୍ତି । ବେଡ୍‌ରୁମଟା ତ ଦିଶୁଛି ସତରେ ଯେମିତି ନୂଆ ବର-କନ୍ୟାଙ୍କ ଘର । ତା'ଛଡ଼ା କିଚେନ୍, ଷ୍ଟୋର୍, ଡାଇନିଂ ଟେବୁଲ୍, ସବୁ ଏକାବେଳେ ଫିଟ୍‌ଫାଟ୍ !

ଭାଉଜ– ଢଙ୍ଗ ଦେଖାଉଥିଲେ । ଷାଠିଏ ପାର ହେଲା ପରେ ବାହା ପିଢ଼ାରେ ବସିବାକୁ ମନହେଲା ?

ମଧୁମିତାର ଭାଇନା ସଦୟ ଗଳାରେ କହିଲେ– ଆଜିକାଲି ଆଉ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବିଦେଶରେ ତ ଷାଠିଏ-ସତୁରୀର ବୁଢ଼ାବୁଢ଼ୀ ଅକ୍‌ସର୍ ବାହା ହେଉଛନ୍ତି ।

ବିପାଶା ଧମକାଇଲା– ତୁନି ହେଲ । ଏ ଦେଶଟା ଏବେ ମଧ୍ୟ 'ବିଦେଶ' ହୋଇଯାଇନି ।

ନିଜେ ଉତ୍ତମା କମ୍ କୌତୁକ କରୁନି, କହୁଛି ନିଜ ଛାତ୍ରୀଙ୍କୁ– ଦେଖିଲ ତମ ଗୁରୁମା କେମିତି ପାଚିଲା ବାଳରେ ସିନ୍ଦୁର ଲଗାଇଲେ, ଆଉ ବରଙ୍କୁ ମୋର ଦେଖିଲ ?

– ଭାରି ସୁନ୍ଦର !

– କହ । ଶୁଣିଲେ ବି ପ୍ରାଣଟା ଶାନ୍ତି ପାଇବ !

ଆଦର ଆପ୍ୟାୟନ କରି ବିଦାୟ ଦେଲାବେଳେ ମନୋଜ ସହିତରେ ପ୍ରାୟ ସମସ୍ତଙ୍କୁ ଆଉଥରେ ଆସିବା ପାଇଁ ସାଦର ଅନୁରୋଧ ଜଣାଇଲା ଉତ୍ତମା !

ଶେଯ ଉପରେ ଏକାକୀ ବସି ଦେବଜ୍ୟୋତି ଭାବୁଥିଲେ– ଭବନରେ ପ୍ରାୟ ଉତ୍ତମାକୁ ଖାଲି ବସିରହିବା ମୂର୍ତ୍ତିରେ ହିଁ ଦେଖିଛି । ଆଜି କର୍ମର ପରିବେଶରେ ଦେଖି ଆହୁରି ଅଧିକ ଆଶ୍ଚର୍ଯ୍ୟ ହୋଇଯାଉଛି । ଠିକ୍ ଏଭଳି ତ ସେ ଉତ୍ତମା ମଧ୍ୟ ଲୋକଙ୍କୁ ଆପ୍ୟାୟନ କରୁଥିଲେ, ଆଉ ଗଲାବେଳେ କହୁଥିଲେ, 'ପୁଣି ଆସିବ' ! କିପରି ଏମିତି ହୁଏ ?

ସମସ୍ତେ ଚାଲିଯାଇ ଘର ନିସ୍ତବ୍ଧ ହୋଇଗଲା ପରେ ଉତ୍ତମା ଆସି ହସି ହସି କହିଲା, – ଶୋଇପଡ଼ି ନାହଁ ତ ? ରକ୍ଷା ପାଇଲି । ଦେଖିଲ କେମିତି ସାଇଁକିନା ଆମେ ସମାଜକୁ ଉଠିପଡ଼ିଲେ ! ତମ ବୁଦ୍ଧିରେ– ଯଦି ଗାଁ ଫାଁକୁ ଲୋକଚକ୍ଷୁର ଅନ୍ତରାଳକୁ ଯାଇ ସାନ କୁଡ଼ିଆଟିଏ କରି ସଂସାର ପାତିଥାନ୍ତି, ଲୋକେ ଆମକୁ ମନେରଖିଥାନ୍ତେ ? କ୍ରମଶଃ ଆମେ ନିଜେ 'ଏକଘରିଆ' ହୋଇଯାଉ ଥାଆନ୍ତେ । ଆଜିର ଘଟଣାଟା ଭଲ ହେଲାନି ? ଲୁଚି ଏକଘରିଆ ହୋଇ କାହିଁକି ରହିଥାନ୍ତେ ଆମେ ? ଆମେ କ'ଣ ପାପୀ

ଚାପୀ ଚୋର ଡକେଇତ ଆସାମୀ ? ମୁଣ୍ଡ ତଳକୁ ହୋଇଗଲା ପରି କାମ କରିଛେ, ଏକଥା ମୁଁ ମାନିବିନି ।

ବିହ୍ୱଳ ହୋଇ ଦେବଜ୍ୟୋତି ହାତ ବଢ଼ାଇ ଉତ୍ତମାକୁ ପାଖକୁ ଟାଣିଆଣି କହିଲେ– ସତରେ ତମର ସାହସ ଅଛି ଉତ୍ତମା । ମତେ ତ ବିଶ୍ୱାସ ହେଉ ନ ଥିଲା । ତମେ ନିଜେ ଯାଇ ବୁଲି ବୁଲି ନିମନ୍ତ୍ରଣ କଲ !

ଉତ୍ତମା ଗମ୍ଭୀର ହୋଇ କହିଲା– ଦେଖ ସଂସାରରେ 'ସାହସ' ଜିନିଷଟା ହେଉଛି ଗୋଟାଏ ହତିଆର ପରି । ଯେଉଁ କାର୍ଯ୍ୟକୁ ନିଜେ ଖରାପ ବୋଲି ଭାବିବନି, ସେଥିପାଇଁ ସାହସ ଆପେ ଆପେ ମିଳିବ । ଏଥର ତ ତମେ ଭୟରେ ଶିହରି ଯାଇ କଣ୍ଟା ହୋଇଗଲ ବୋଲି ତମର ପୁଅ ବୋହୂ ନାତିକୁ ଡାକିବାକୁ ଗଲି ନାହିଁ । ତେବେ ଭାବନି ଯେ ଚେଷ୍ଟା ଛାଡ଼ିଦେବି । ଦେଖିବ ଶେଷକୁ-

– ସର୍ବନାଶ ! ସେମିତି କାମ କରିବାକୁ ଯାଅନି । ନା ନା ।

ଉତ୍ତମା ହସିଦେଇ କହିଲା– ଏତେ ଡର କାହିଁକି ? ଗଲେ କ'ଣ କରିବେ ? ମାରିବେନି ତ ?

ମାନ ରଖିବେନି । ସେଇଟା ମାରିବାଠୁ–

– ଯାଅ । ଏମିତି ମାନ ରଖିବେନି ନା ? ସେ ଅସମ୍ମାନକୁ ମୁଁ ଫୁ କରି ଉଡ଼ାଇ ଦେବି– ସେମାନଙ୍କ ପାଖକୁ ହିଁ ତାହା ଫେରିଯିବ । ତମେ ଡରନି । ଦେଖିବ କେମିତି ମ୍ୟାନେଜ୍ କରି ଦେବି । ତମ ପୁଅକୁ 'ନୂଆ ମା' ବୋଲି ଡକେଇ ଛାଡ଼ିବି । ଖାଲି ଟିକିଏ ସାହସ କରି ଆଗେଇଯିବା ଦରକାର । ଦେଖ ଆଜିର ଘଟଣାଟା ମୁଁ ସାହସ କରି ନ ଥିଲେ ହୋଇଥାନ୍ତା ?

– ସାତଜନ୍ମରେ ବି ନୁହେଁ । ଗାଢ଼ଗଳାରେ କହିଲେ ଦେବଜ୍ୟୋତି ।

– ତା' ହେଲେ ଜାଣ କି ନିଧି ଗୋଟାଏ ଜୁଟିଛି ତମ ଭାଗ୍ୟରେ ?

ଦେବଜ୍ୟୋତି ସିଧାହୋଇ ବସି ପଡ଼ି ଉତ୍ତମାର ହାତଧରି ବ୍ୟାକୁଳ ସ୍ୱରରେ କହିଲେ– ଉତ୍ତମା, ତମେ ଯେତେବେଳେ କଥା କହୁଛ ନା ସେତେବେଳେ କ'ଣ ତମର ମନେହେଉଛି ଆଉ କେହି ତମ ଭିତରୁ କଥା କହୁଛି ?

ହେ ଭଗବାନ୍ ! ଆଉ କେହି ? କାହିଁକି, ଏମିତି ଅଦ୍ଭୁତ ଭାବନା ଭବିବାକୁ ଯିବି କାହିଁକି ?

ହୁଏନି ? କିନ୍ତୁ ମୋର କେବଳ ମନେହୁଏ ଉରମା ତମ ଭିତରୁ ସେହି ଚାଲିଯାଇଥିବା ଉରମା ହିଁ କଥା କହୁଛନ୍ତି । ଠିକ୍ ଏମିତି ସେ ନିଧି ପାଇବାର କଥା କହୁଥିଲେ ।

ଦେବଜ୍ୟୋତିଙ୍କ ଏ 'ଆଚ୍ଛନ୍ନତା', ଏ ଭାବବିହ୍ୱଳତା'ର କାରଣଟିକୁ ମନେ ମନେ ବିଶ୍ଳେଷଣ କରି ଦେଖି ଏହି ସିଦ୍ଧାନ୍ତରେ ଆସି ଉପନୀତ ହୋଇଛି ଉରମା– ଏ ଏକ ଅବଚେତନ ମନର କାରସାଦି–

ମଜା କରି ଉରମା କହିଲା– ହା ଅଦୃଷ୍ଟ ! ଏ ବୁଢ଼ା ବୟସରେ ମୋର ଯଦିବା ଗୋଟିଏ ଘର ଓ ବର ଜୁଟିଲା, ସେ ଘର କଲାବେଳକୁ ସବୁବେଳେ ମତେ ଲାଗିବ ମୋର ସ୍ୱର୍ଗକୁ ଚାଲିଯାଇଥିବା ସଉତୁଣୀଙ୍କ ଖୋଳ ଭିତରେ ମୁଁ ବସବାସ କରୁଛି !

ଦେବଜ୍ୟୋତି ଟିକିଏ ଡରିଗଲେ, କହିଲେ– ଏଥିରେ ତମର ରାଗ ହେଉଛି ଉରମା ? ମୁଁ...ମାନେ...

ଆଉ ତମର ମାନେ ଆଉ ମତେ ବୁଝାଇବାକୁ ଚେଷ୍ଟା କରନି । ସେ ମାନେ ବହି ମୋର ମୁଖସ୍ଥ ହୋଇଯାଇଛି । ରାଗିବି କାହିଁକି ? ବରଂ ତମର ଅନୁରାଗର୍ ଉଚ୍ଛ୍ୱସିତ ଭାବ ଦେଖି ମୋହିତ ହେଉଛି । ଯାହା ଦେଖୁଛି ଏକାସଙ୍ଗେ ଦୁଇ ଉରମାକୁ ବୋହି ବୁଲିବାକୁ ପଡ଼ିବ ମତେ ।

କିଛିକ୍ଷଣ ସ୍ତବ୍‌ଧତା ବିରାଜିଲା । ଦୁହେଁ ନୀରବ ରହିଲେ ।

ହଠାତ୍ ଉରମା କହିଲା– ଦିନେ ତମର ସେ ବାଲିରେ ଥିବା ମାମୁ ପୁଅ ଭାଇଙ୍କ ପାଖକୁ ଚାଲ ଯିବା, ପରିଚୟ କରାଇଦେବ ।

ଦେବଜ୍ୟୋତି କହିଲେ– ହଠାତ୍ ତା' କଥା ?

ବାଃ । କହୁଥିଲ ନା ତାଙ୍କ ସହିତ ତମ ଉରମାଙ୍କର ଭଲ ପଡୁଥାଏ । ଯାଇ ଦେଖିବା ଏ ନକଲଟା ସାଙ୍ଗରେ ପଡ଼ିବ କି ନାହିଁ । ତା'ହେଲେ ନିଜେ ମୁଁ କ୍ରମଶଃ ବୋଧହୁଏ ବିଶ୍ୱାସ କରିବାକୁ ଆରମ୍ଭ କରିବି କିଛି 'ଅଛି' ବୋଲି । ପରଲୋକ ଓ ଇହଲୋକ ମଧ୍ୟରେ ଗୋଟିଏ ଅଦୃଶ୍ୟ ଯୋଗାଯୋଗର ସେତୁ ରହିଛି ଏବଂ ଅଦ୍ଭୁତ ଏକ ଯନ୍ତ୍ରକ୍ରିୟା କରି ଚାଲିଛି !

ଦେବଜ୍ୟୋତି ଅସହାୟ ଭାବରେ କହିଲେ– ତମେ ଏସବୁ ସତରେ କହୁଛ ନା ଥଟ୍ଟା କରୁଛ ଉତ୍ତମା ମୁଁ ବୁଝିପାରୁନି ।

ଥଟ୍ଟା ? ଏ ହେଲା ମୋର 'ଅସ୍ତିତ୍ୱ'ର ସମସ୍ୟା । ଚାଲ ଦିନେ, ମତେ ଜାଣିବାକୁ ପଡ଼ିବ 'ମୁଁ ପ୍ରକୃତରେ କିଏ' ?

ଗଭୀର ବିଶ୍ୱାସ ସହିତ ଦେବଜ୍ୟୋତି କହିଲେ– ମୋ ଭାଇ ସଙ୍ଗେ ତମର ଆହୁରି ଅଧିକ ପଡ଼ିବ ।

କାହିଁକି ?

ତମେ ତ ଆହୁରି ବେଶି ମଜା କରି କଥା କହ । ମାନେ 'ଜଲି' । ଅଧିକରେ ତମେ ଜଣେ ବିଦୁଷୀ ତ ।

– ତମ ଭାଇ କ'ଣ ବିଦ୍ୱାନ ?

– ବହୁତ ପଢ଼ାପଢ଼ି କରେ ।

ଟିକିଏ ହସି ଉତ୍ତମା କହିଲା-ଏଥର ଗଲେ ତ ଆଉ ତରଫ୍‌ଦାର୍‌ଙ୍କ ଅଫିସରୁ ପରମିସନ୍ ନେବାକୁ ପଡ଼ିବନି !

ଆବେଗ ସହକାରେ ଉତ୍ତମାକୁ ଦୁଇହାତରେ କୁଣ୍ଢାଇ ପକାଇ ଦେବଜ୍ୟୋତି କହିଲେ– ତମ ନିକଟରେ ମୋର କୃତଜ୍ଞତାର ସୀମା ନାହିଁ ଉତ୍ତମା !

– ମୋର ଭବିଷ୍ୟତ୍‌ର ପରିକଳ୍ପନା ଶୁଣିବ ? ଗତ ତିନିବର୍ଷ ହେଲା 'ଭବନ'ରେ ବସି ବସି ବଢ଼ାଭାତ ଖାଇ ଖାଇ ମୁଁ ଜଗନ୍ନାଥଙ୍କ ଅବତାର ହୋଇଯାଇଛି– ମୋର ଇଚ୍ଛା ଏ ଦୁଇଟା କୋଠରି ଭିତରୁ ଗୋଟିଏରେ କୋଚିଂ କ୍ଲାସ୍‌ଟେ ଖୋଲିଦେବି । ସବୁକାଳେ ତ ମାଷ୍ଟ୍ରାଣୀ ମୁଁ !

– ଆଉଥରେ ନୂଆ କରି କାନ୍ଧରେ ଜୁଆଳି ପକାଇବ ? କାମ ତ ତମ ପାଇଁ ବହୁତ ଅଛି । ରନ୍ଧାବଢ଼ା–

– ଓ ଦି'ଜଣଙ୍କ ପାଇଁ ରନ୍ଧାବଢ଼ା ! କେତେ ସମୟ ଲାଗିବ ?

– ହେଲେ ଆମର 'ଆହୁରି ଟଙ୍କା' କ'ଣ ଦରକାର ଉତ୍ତମା ?

ଉତ୍ତମା ଟିକିଏ ଗମ୍ଭୀର ହେଲା । ଆସ୍ତେ କହିଲା– କ'ଣ ଦରକାର ? ଦରକାର ହେଉଛି ସଂସାରକୁ ଜଣାଇ ଦେବା-ଆମେ ସରି ଯାଇ ନାହୁଁ ।

ତମେମାନେ ଆମକୁ 'ବାତିଲ୍'ର ଖାତାରେ ଫୋପାଡ଼ି ଦେଇଥିଲେ ମଧ୍ୟ ଆମେ ଏବେ ମଧ୍ୟ 'ଅଛୁ'। ଆମର ଆଉ କିଛି କରିବାର ନାହିଁ, ଆଉ କିଛି କରିବାର କ୍ଷମତା ନାହିଁ ଆମମାନଙ୍କର-କାହାକୁ ଆମର ଦରକାର ନାହିଁ– ଏହି ଭାବନା ଗୁଡ଼ାକହିଁ ମଣିଷକୁ ଜୀର୍ଣ୍ଣ କରି ପକାଏ। ଭାଗ୍ୟକ୍ରମେ ଯଦି ଗୋଟିଏ 'ନୂଆ ଜୀବନ ଭବନ' ମିଳି ଯାଇଛି ତା'ହେଲେ କ'ଣ ତାକୁ ସଦ୍‌ବ୍ୟବହାର କରିବା ଉଚିତ ନୁହେଁ ? –ଡରି ଯାଅନି। ଏଥର କବିତାଟିଏ ଲେଖିଛି, ଶୁଣିବ ? ଶୁଣ–

ଆଖି ଖୋଲିବାକୁ ଶିଖିଲାକ୍ଷଣି
ଆଖିରେ ପଡ଼ିଥିଲା ଚାରିଆଡ଼େ ଖାଲି
ଆଖି ଆଉ ଆଖି।
ଉତ୍‌ଫୁଲ୍ଲ, ଉଦ୍‌ବିଗ୍ନ, ଆଗ୍ରହରେ ବ୍ୟାକୁଳ
ସ୍ନେହରେ କୋମଳ, କ୍ଷମାରେ ସୁନ୍ଦର, ଆଶ୍ୱାସରେ ଉଜ୍ଜ୍ୱଳ।
କି ନିର୍ମଳ ସେ ଆଖିଗୁଡ଼ିକ।
ସେମାନେ ଯେମିତି କହୁଛନ୍ତି-'ଆମେ ଅଛୁ'...

ଉତ୍ତମା ଅଟକିଲା। ଚାହିଁ ଦେଖିଲା– ଦେବଜ୍ୟୋତି ଚୁପ୍‌ଚାପ୍ ଚାହିଁଛନ୍ତି ! ହାଲୁକା ଗଳାରେ ଉତ୍ତମା କହିଲା-କ'ଣ ହେଲା ? ତମର 'ପ୍ରଥମା' ଠିକ୍ ଏଭଳି ସବୁ ପଦ୍ୟ ଲେଖୁ ନ ଥିଲେ ତ ? ମିଶି ଯାଉନି ତ ? ଅଳ୍ପ ହସିଲେ ଦେବଜ୍ୟୋତି, କହିଲେ-ନାଃ, ତାଙ୍କର ଏ ବିଦ୍ୟାଟି ନ ଥିଲା।

– ନ ଥିଲା ? ଠିକ୍ ? ରକ୍ଷା ପାଇଲି। ତେବେକେ ଟିକିଏ 'ଓରିଜିନ୍ୟାଲ୍' ରହିଛି ମୁଁ।

ବହୁକାଳର ଘରକରଣା କରିଥିବା ଗୃହିଣୀପରି ସହଜ ସ୍ୱାଚ୍ଛନ୍ଦ୍ୟରେ ଶୋଇପଡ଼ିଲା ଉତ୍ତମା ନିକଟରେ ସାନ୍ନିଧ୍ୟରେ।



# ପାଟରାଣୀଙ୍କର ଇଚ୍ଛା

ପ୍ରେମର ପାଗଟା ପାକଳ ହୋଇଗଲା ।

ସାମାନ୍ୟ ଟିକିଏ ସ୍ମିତ, ସେଥିରୁ ଟିକିଏ ହସ, ଟିକିଏ କଥା, ତା'ପରେ ଗଢ଼ିଥିବା 'ହଠାତ୍' ଆଉ ସୃଷ୍ଟି କରିଥିବା 'ଦୈବାତ୍'ର ମାଧ୍ୟମରେ ମଝି ମଝିରେ ଦେଖା– ଏଇଟା ଥିଲା ପ୍ରଥମ ପାହାଚ ।

ତା'ପରେ ହଠାତ୍ ଯେପରି ଭୁସ୍‌ଭାସ୍ ହୋଇ ଆସିଗଲା ବନ୍ୟା, କେହି କାହାକୁ ଆଉ 'ଆପଣ' କହିଲେନି ଏବଂ ସେଇ ମଝି ମଝିରେ ଦେଖା ହେବାଟାକୁ ଦାଉଆ କଲେନି । ଅତଏବ ପ୍ରତ୍ୟହ ସାକ୍ଷାତ୍ ହେଲା– ଯେନ-ତେନ ପ୍ରକାରେଣ– ଝଡ଼, ବୃଷ୍ଟି ବଜ୍ରପାତକୁ ଅମାନ୍ୟ କରି ।

ଗ୍ରହ-ନକ୍ଷତ୍ରର କ୍ରୁର ଚକ୍ରାନ୍ତରେ ଦୈବାତ୍ ଦିନେ ଦେଖା ନ ହେଲେ ହୃଦୟରେ କଲିକ୍ ପେନ୍‌ର ଯନ୍ତ୍ରଣା...ହେଉଥାଏ ଦୁଇଜଣଯାକର । ଅଥଚ ଯେତେବେଳେ ସେତେବେଳେ ଦେଖା କରିବାକୁ ଧାଇଁଯିବେ, ସେ ଉପାୟ ନାହିଁ । କେହି ସ୍ୱାଧୀନ ନୁହନ୍ତି, ଦୁଇଜଣଯାକ ଚାକିରି-ଚକରେ ବନ୍ଧା ହୋଇଛନ୍ତି । ସାରାଦିନ କାମ ଆଉ କାମ । ଫୁଲ୍ ଟାଇମ୍, ପାର୍ଟ୍ ଟାଇମ୍ । ସେଇ ସନ୍ଧ୍ୟାକୁ ଯାଇ ଛୁଟି ମିଳେ । ଅତଏବ ସେଇଟା ହିଁ ସମୟ । ସେ ଟିକକ ହିଁ ସେମାନଙ୍କର ନିର୍ବାଚିତ ସ୍ୱର୍ଗ । ସେଠାରେ ଦି'ଜଣ ମୁହାଁମୁହିଁ କିମ୍ୱା ପାଖାପାଖି ହୋଇ ବସି ଭବିଷ୍ୟତ୍ ସ୍ୱର୍ଗର ଛବି ଆଙ୍କନ୍ତି । ଆଉ ଦୁଇଟି ବିଭୋର ବିହ୍ୱଳ ହୃଦୟର ଅନିର୍ବଚନୀୟ ସୁଧା ଦେଇ ମର୍ତ୍ତ୍ୟକୁ ସ୍ୱର୍ଗ କରିପକାନ୍ତି । ହୁଏତ ବା ଈର୍ଷାତୁର କରିଦିଅନ୍ତି ତେତ୍ରିଶ କୋଟି ଦେବତାଙ୍କ ସ୍ୱର୍ଗକୁ । ସେମାନେ ଅଖ୍ୟାତ ହେଲେ ମଧ୍ୟ ସ୍ଥାନଟି ବିଖ୍ୟାତ । ଖେଳପଡ଼ିଆର ଗୋଟାଏ କୋଣ ।

ତେବେ ଦୁଇଜଣଯାକର ଖୋଷଣୀରେ ଅର୍ଥ ଥାଏ ପ୍ରାୟ ଖେଳ-ପଡ଼ିଆ ଯାଏଁ । ସେଥିପାଇଁ ଦି'ଜଣଙ୍କର ଦି'ପାତ୍ର ଆଇସ୍‌କ୍ରିମ୍ ଖାଇବାଟା ପ୍ରାୟ ଦୈବର

ଘଟଣା । କେଉଁ କେଉଁ ଦିନ ଝାଲ୍‌ମୁଢ଼ୀ, କେଉଁ କେଉଁ ଦିନ ପ୍ରେମିକ-ପ୍ରେମିକାର ଚିରନ୍ତନ ବନ୍ଧନ ଚୀନାବାଦାମ !

କେଉଁ ଦିନ ମାନସ ଖୁଆଏ, କେଉଁଦିନ ତାମସୀ ଖୁଆଏ । ଏ ପ୍ରଥାର ପ୍ରବର୍ତ୍ତନ କରିଛି ନିଜେ ତାମସୀ ।

ପ୍ରଥମେ ପ୍ରଥମେ ମାନସ କାତର ହୋଇ କହୁଥାଏ, ଏତିକକ ଅନ୍ତତଃ ମତେ ସବୁଦିନେ କରିବାକୁ ଦିଅ । ନିଜକୁ ନିତାନ୍ତ ଦୀନ ହୀନ ହତଭାଗ୍ୟ ଭାବିବାର ଯନ୍ତ୍ରଣାଠାରୁ ରକ୍ଷା ପାଏଁ ।

ତାମସୀ ଝଙ୍କାର ଦେଇ କହୁଥିଲା, ଖାଲି ନିଜ କଥାଟି ଭାବୁଛ ? ଆଉ ମୋର କଣ ଯନ୍ତ୍ରଣାବୋଧ ନାହିଁ ?

ତମେ ମହିଳା । ଚିରକାଳର ଅଲିଖିତ ଆଇନ୍‌ରେ କେବଳମାତ୍ର ଗ୍ରହଣ କରି ଧନ୍ୟ କରାଇବାଟା ହିଁ ତୁମର ଡିଉଟି ।

''ସେଇଟା ସେକାଳର କୁସଂସ୍କାର ।'' ତାମସୀ ମାନସର ଦ୍ୱିଧାକୁ ଫୁ କରିଦେଇ ଉଡ଼ାଇ ଦେଉଥିଲା, ''ଏ ଯୁଗରେ ଦୁଇଜଣଙ୍କର ଏକାପ୍ରକାର ଦାବି, ଏକାପ୍ରକାର ଆଇନ । ସ୍ତ୍ରୀଲୋକମାନଙ୍କର କେବଳମାତ୍ର ନୈବେଦ୍ୟ ଗ୍ରହଣ କରି ଦେବୀ ହୋଇ ବସିରହିବା ଯୁଗ ଅନେକଦିନ ହେଲା ଗତ ହୋଇଛି ।''

ମାନସ ଚୀନାବାଦମ ଛଡ଼ାଉ ଛଡ଼ାଉ କହୁଥିଲା, ଭାରି ଖରାପ ହୋଇଛି, ପୁରୁଷର ଅହମିକାକୁ ଏକାବେଳେ ଧୂଳିସାତ୍ କରିଦେଇଛ ତମେ ସବୁ ।

''ପୁରୁଷର ଅହମିକାକୁ ନୁହେଁ'',– ଛଡ଼ାଉଥିବା ବାଦାମ ହାତପାପୁଲିରେ ରଖି ସେଗୁଡ଼ିକୁ ଫୁଙ୍କି ଦେଉ ଦେଉ ତାମସୀ କହୁଥିଲା, ''ପୁରୁଷର ଚାଲାକିକୁ ପୁରୁଷର ଚତୁରତାକୁ । ସେମାନେ ଜାଣିଥିଲେ ଯେ କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ ହେଲେ ଆଉ ରକ୍ଷା ମିଳିବନି, ସେଥିପାଇଁ 'ନିଦ ମାଉସୀ' ଗୀତ ଗାଇ ଗାଇ–''

''କୁମ୍ଭକର୍ଣ୍ଣ ?'' –ମାନସ ହସି ଦେଉଥିଲା, ''ତୁଳନାଟା କଣ ଭାରି ଗୌରବଜନକ ହେଲା ?''

ତାମସୀ ନିର୍ବିକାର କଣ୍ଠରେ କହୁଥିଲା, ''ତା ନ ହୋଇଥାଇପାରେ, ତେବେ ମିଶି ଯେ ଯାଉଛି ସେଥିରେ ସନ୍ଦେହ ନାହିଁ ।''

"ଯାହା କହ", ମାନସ କହିଲା– "ଏବେ କିନ୍ତୁ ମନେହେଉଛି ଚାଲାକି କରିଛୁ ଭାବି ଖାଲି ବୋକାମୀ କରି ଆସିଛୁ ଆମେମାନେ। ଚତୁରତା ଭାବି ବୁଦ୍ଧୁପଣିଆ କରିଛୁ। କି ଦୁଃଖର ଜୀବନଟା ଆମମାନଙ୍କର ବାପା-ଦଦେଇ ଜେଜେବାପାମାନଙ୍କର ଥିଲା କହୁନ ? ଅଭାଗା ବ୍ୟକ୍ତିମାନେ ପ୍ରେମ କି ବସ୍ତୁ ସେକଥା ଜାଣି ନାହାନ୍ତି କେଉଁ ଦିନ।

"କିଏ କହିଲା ଜାଣି ନାହାନ୍ତି ?" ... ତାମସୀ ଭ୍ରୂକୁଞ୍ଚିତ କଲା।

"ଯାଅ ଯାଅ !"– ମାନସ ହସିଲା, "ଆମେ ତ ସେମାନଙ୍କ ଜୀବନଯାପନ ପଦ୍ଧତି ଦେଖିଛେ ! ଜୀବନ ନୁହେଁ, ଯେପରି ଗୋରୁ-ପାକୁଳେଇବା ଭଳି। ଖାଲି ଦୁଇଟା ମଣିଷ ଏକତ୍ର ଘରକରଣା କରିବାଟା ହିଁ କଣ ପ୍ରେମର ପରାକାଷ୍ଠା ?"

ହସିଦେଇ ତାମସୀ କହୁଥିଲା, "ଆଉ ସେମାନେ ଶୁଣିଲେ କହିବେ, ଯାଅ, ଯାଅ ଦିଇଟା ମଣିଷ ଏକାଠି ରାସ୍ତାରେ ବୁଲିଲେ ହିଁ କଣ ପ୍ରେମ ହେବ ? ନିଜ କୋର୍ଟରେ ଏକାନ୍ତ ରୂପେ ଆଢୁଆଳ ଦେଇ ଘେରି ନ ପାରିଲେ ସ୍ୱସ୍ତି କେଉଁଠାରେ ମିଳିବ ? ଯା' ଯେମିତି ସେମାନଙ୍କର ଖୋଲା ସିନ୍ଦୁକରେ ଟଙ୍କା ପଡ଼ିରହିଥିବା ଭଳି। ସବୁବେଳେ ହଜିଯିବା ଭୟଟା ଥାଏ।"

"ସେଇୟା ହିଁ ତ ମଜା, ସେଇୟା ହିଁ ସୁଖ।"– ମାନସ ହସି ଦେଉଥିଲା, "ସେଥିରେ ହିଁ ତ ପ୍ରତିଷ୍ଠା ପୌରୁଷର। ହେଇଟି ମୁଁ ଯେ ଏମିତି ଗୋଟାଏ ଛିଣ୍ଡା ପଞ୍ଜାବୀ ପିନ୍ଧା ହତଭାଗ୍ୟ, କେବଳ କିରାଣିଟିଏ, ମୁଁ ଯଦି ସେ କୈଶୋର କାଳରେ ନିହାତି ବାଧ୍ୟରେ ପରିଣୟ ସୂତ୍ରରେ ପ୍ରାପ୍ତ ଗୋଟିଏ କିଶୋରୀର ମାଲିକ ହୋଇ ବସି ଥାଆନ୍ତି ଏବଂ ଅନିବାର୍ଯ୍ୟ ନିୟମରେ ଦୁଇଜଣ ଯୌବନକାଳ ପ୍ରାପ୍ତ ହୋଇ ଖାଲି ଘର-ସଂସାର କରିଥାନ୍ତି, କେଉଁଠାରୁ ଜୁଟିଥାନ୍ତା କପାଳରେ ଏ ଜୟଟୀକା ? କେମିତି ଜାଣିପାରିଥାନ୍ତି ମୋର ମୂଲ୍ୟଟା କେଉଁଠି ?"

ତାମସୀ ସେତେବେଳେ ଆନନ୍ଦରେ ଛଳ ଛଳ କରୁଥିଲା, ଆହ୍ଲାଦରେ ବିଗଳିତ ହୋଇଯାଉଥିଲା। ତେବେକେ କିଛି କ୍ଷଣ ପରେ ପୁଣି କହୁଥିଲା, "ସେ ଯାହାହେଉ' ଆଜି ମୁଁ ଖୁଆଇବି। ଆଜି ଆଇସକ୍ରୀମ୍।"

ହେଲେ, ଏସବୁ ଏକାବେଳେ ପ୍ରଥମ ଆଡ଼ର କଥା ।

ବର୍ତ୍ତମାନ୍ ସେମାନେ ସେ ଷ୍ଟେଜ୍ ପାର ହୋଇ ଆସିଲେଣି । ବର୍ତ୍ତମାନ୍ ସେମାନେ ଭବିଷ୍ୟତ୍‌ର ସ୍ୱପ୍ନ ଦେଖୁଛନ୍ତି । କିନ୍ତୁ ସ୍ୱପ୍ନକୁ ବାସ୍ତବ ରୂପ ଦେବାକୁ ଅନେକ ବାଧା । ମାନସ ତ ଖାଲି ସେହି କିରାଣିଟିଏ । ତା'ପରେ ପୁଣି ମାନସର ଗଳାରେ ଯଥାନିୟମରେ ବେଶ୍ ଗୋଟାଏ ଘର ବନ୍ଧା ! ଏ ଦେଶର ଲକ୍ଷ ଲକ୍ଷ ଯୁବକଙ୍କ ପରି ଯଥାରୀତି ବିଧବା ମା, ତରୁଣୀ, ଅବିବାହିତା ଭଉଣୀ, ନାବାଳକ ଭାଇ ।

ଯଥାରୀତିହିଁ ମା ତାଙ୍କର ଝିଅର ବାହାଘର ଆଗରୁ ପୁଅର ବାହା କଥା ଜମା ଭାବିପାରନ୍ତି ନାହିଁ ଏବଂ ପୁଅ ଆଦୌ ବାହା ନ ହେଲେ ଯେମିତି ସୁଖୀ ଆଉ ନିଶ୍ଚିନ୍ତ ହୋଇପାରିବେ, ସେଇୟା ଭାବନ୍ତି !

ମୁହଁ ଫିଟାଇ କିଛି କହନ୍ତି ନାହିଁ ଅବଶ୍ୟ । କିନ୍ତୁ ସେଇ ନ କହିବା କଥାଟା ମୁହଁର ଭାବରେ ଫୁଟିଉଠେ । ପୁଅର ବାହାଘର ହେବାର ଅର୍ଥ ତ ପୁଅ ଉପରୁ ଜୋର୍ ଚାଲିଯିବା ତାର ରୋଜଗାର ଉପରେ, ତା ଅବକାଶ ଉପରେ ତାର ଇଚ୍ଛା-ଅନିଚ୍ଛା ଉପରେ । ତେଣୁ ମାନସ ପରି ନିତାନ୍ତ ଗୃହସ୍ଥ—ଘରର ପୁଅର ମୁଖାପେକ୍ଷୀ ମା'ର ସାଧ କେଉଁଠି ଅଛି ତା'ଠାରୁ ଅଧିକ ଉଦାର ହେବାର ?

ନା, ମା'ଙ୍କୁ ମାନସ ଦୋଷ ଦିଏ ନାହିଁ । ଖାଲି ତା'ର ବାହାଘରଟାକୁ ଯେ ମା ସମର୍ଥନ କରିବେ ନାହିଁ, ସେକଥା ପରିଷ୍କାର ବୁଝିପାରିଛି । ଭଉଣୀ ତା'ଠାରୁ ବହୁତ ଛୋଟ, ତେବେକେ ମା ସେଇ ଝିଅର ବାହାଘର ବାହାଘର କହି ସଚେତନ କରି ରଖନ୍ତି ପୁଅକୁ ।

ଆଉ ତାମସୀ ? ତାମସୀର ଅବସ୍ଥା ହେଉଛି ଆହୁରି ଅଧିକ ଗୋଳମାଳିଆ । ପରିଚୟ ହେଲାବେଳେ ତାମସୀ କହିଥିଲା, "ନାଁ ଶୁଣି ବୁଝି ପାରୁନାହାନ୍ତି ଅବସ୍ଥା ଏକାବେଳେ ତମସାଚ୍ଛନ୍ନ ! ଜନ୍ମ ମୁହୂର୍ତ୍ତରେ "ମା" ନାମଟି ନିଶ୍ଚିହ୍ନ । ମହିଳାଜଣକ ପୃଥିବୀରୁ ଅପସାରିତ । ଦେଖି ଶୁଣି ମାଉସୀ ନା ପିଉସୀ କିଏ ଯେପରି ଏ ନାଁଟା ଦେଇ ଜନ୍ମଟା ପାଇଁ ପ୍ରତିଶୋଧର ଦାଗ ଦେଇଦେଲେ । ନ ହେଲେ ମୋ ଦେହର ବର୍ଣ୍ଣଟା କଣ ମୋର ତାମସୀ ନାଁ ରଖିବା ଭଳି ହୋଇଛି ? କହିଲେ ?"

ଦି'ଚାରିଦିନ ହେଲା ପରିଚିତ ଭଦ୍ରଲୋକକୁ କିଏ ଦେହର ବର୍ଣ୍ଣ ନେଇ ପ୍ରଶ୍ନ କରୁଛି କଣ ନା ନାଁ ସହିତ ବର୍ଣ୍ଣର କିଛି ସାମଞ୍ଜସ୍ୟ ଅଛି ! ଅଥବା ତାମସୀ

ଆଉ କାହାକୁ ଏ ପ୍ରଶ୍ନ କରିଥାନ୍ତା କି ନାହିଁ ଈଶ୍ୱର ଜାଣିଛନ୍ତି, କିନ୍ତୁ ମାନସକୁ ଏ ପ୍ରଶ୍ନ କରିଥିଲା, ଯେତେବେଳେ 'ଆପଣ' କହୁଥିଲା !

ସେଇ ଦେହର ବର୍ଣ୍ଣ ପ୍ରସଙ୍ଗରେ ମାନସକୁ ବୋଧହୁଏ ଟିକିଏ ଅସ୍ୱସ୍ତି ଲାଗିଥିଲା । ସେଥିପାଇଁ ଉତ୍ତର ଦେବାକୁ ବିଳମ୍ବ କରିଥିଲା ସେ । କିନ୍ତୁ ସେଇ ସ୍ୱଚ୍ଛ ପରିଚ୍ଛନ୍ନ ସପ୍ରତିଭତା ଆଡ଼କୁ ଚାହିଁ ଲଜ୍ଜାକୁ ଜୋର୍‌ରେ ନିର୍ବାସନ ଦେଲା ମାନସ । କହିଲା, କାରଣଟା ନିହାତି କହିପକାଇଲେ । ସେଥିପାଇଁ ହୃଦୟରେ ଉତ୍‌ଥିତ ପ୍ରଶ୍ନ ସମ୍ବରଣ କରି ପକାଇଲି । ନ ହେଲେ ଶୁଣିଲାକ୍ଷଣି ପ୍ରଥମେ ହିଁ ମନେ ହୋଇଥିଲା, ଏ ନାଁ ଆପଣଙ୍କୁ କିଏ ଦେଇଥିଲା ? ନିଶ୍ଚୟ କେଉଁ ହିଂସୁକ ଆତ୍ମୀୟ ଅଥବା ହିଂସୁକୀ ଆତ୍ମୀୟା ।

"ଇସ୍ ! ଭାଗ୍ୟକୁ ମୋର ମାଉସୀ– ପିଉସୀମାନେ ଆପଣଙ୍କର ଏହି ମନ୍ତବ୍ୟ ଶୁଣିପାରୁ ନାହାନ୍ତି ।"

"ପାଇବା ତ ଉଚିତ ଥିଲା । ଭାଗ୍ୟକୁ ନେଇ ନାମ ରଚନା କରିବାଟା ଭାରି ଅନ୍ୟାୟ । ସେହି ଗୋଟିଏ ମାତ୍ର ଜିନିଷ, ଯାହା ମଣିଷର ନିଜ ହାତରେ ଥାଏ । ତା ଉପରେ ସୁଦ୍ଧା ଯଦି ଆତ୍ମୀୟଙ୍କ ମାଡ଼ ପଡ଼େ–"

"ଆପଣଙ୍କ ନାଁଟା କିନ୍ତୁ ବଡ଼ ସୁନ୍ଦର ! ଭାରି ଆର୍ଟିଷ୍ଟିକ୍ ! ଦୈବାତ୍ ଶୁଣିବାକୁ ମିଳେ । ବହୁତ ସାଧନାର ଧନ-ପୁତ୍ର ବୋଧହୁଏ ? ଠାକୁର ଦେବତାଙ୍କ ପାଖରେ ମାନସିକ ଫାନସିକ କରି–"

"ସର୍ବନାଶ ! ଆପଣ ବୋଧହୁଏ ଏଇୟା ଭାବି ଦେଇଛନ୍ତି ? ମୋଟେ ତା ନୁହେଁ । ଗରିବ ଘରେ ଫେରେ ସାଧନା ! ମୋ ବାପା ନାଁଟା ଦେଇଥିଲେ । ଭଦ୍ରଲୋକ ବୋଧହୁଏ ଟିକିଏ ଆଶାବାଦୀ ଥିଲେ । ପୂରା ନାଁଟା ସେଇୟା ।"

"ବାପା ନାହାନ୍ତି ?"

"ନା । କେତେ ବର୍ଷ ଆଗରୁ ମରିଗଲେଣି ।"

ତାମସୀ ଅନ୍ୟମନସ୍କ ଦୃଷ୍ଟିରେ ସାମନାର ଗୋଟାଏ ପତ୍ର-ଥରୁଥିବା ଗଛ ଆଡ଼କୁ ଚାହିଁରହି ଆସ୍ତେ ଆସ୍ତେ କହିଲା, "ମୋର ମଧ ନାହାନ୍ତି । ପିଲାଦିନରୁ ମରିଗଲେଣି । ମା ମରିଯିବା ପରେ କୁଆଡ଼େ ଜୋର୍‌ରେ ଭାଙ୍ଗି ପଡ଼ିଥିଲେ ।"

ଏହି ପ୍ରସଙ୍ଗରୁ ହିଁ କଥାବାର୍ତ୍ତା ଆଉ ଟିକିଏ ଘନିଷ୍ଠ ହୋଇଥିଲା । ସେଇ ଘନିଷ୍ଠତାର ମାଧ୍ୟମରେ ମାନସ ତାମସୀର ବିଶଦ ପରିଚୟ ପାଇଥିଲା । ମାନସ ପରି ସେଭଳି ଯଥାରୀତି କିଛି ନୁହେଁ । ଅଦ୍ଭୁତ ଏକ ଜଟିଳ ଜୀବନ ତାର । ଯଦିଓ ସେ ନିଜେ କହେ, ଏ ସବୁ ସୁହାଇ ଗଲାଣି, ଏସବୁ ଅଭ୍ୟାସ ହୋଇଗଲାଣି ।

ହୁଏତ ହୋଇଗଲାଣି । ହୁଏତ ସେଇୟା ଘଟେ ।

ଯେକୌଣସି ଧରଣର ଜଟିଳତା ଆସୁ, ମଣିଷ ତା ସହିତ ନିଜକୁ ଖାପ ଖୁଆଇ ନେଇପାରେ । ତାମସୀର ଦେହସୁହା ହୋଇଗଲାଣି ।

କିନ୍ତୁ ମାନସର ସହ୍ୟ ହୋଇପାରି ନାହିଁ । ଶୁଣିଲାଠାରୁ ଦେହରେ ମନରେ ବିଷ ସଞ୍ଚରିଯାଇଛି ତାର ।

ଏହି ଅବସ୍ଥା– ଜନ୍ମବେଳେ ମା ଚାଲିଗଲେ, ଅତି ଶୈଶବରେ ବାପା ! ଭାଇ-ଭଉଣୀ ବୋଲି କେହି ନାହାନ୍ତି । ପିଉସୀ ମଣିଷ କରିଛନ୍ତି । ଯେ କି ଦୟାକରି ଭାର ନେଇଥିଲେ, ସେ ହିଁ ଏକାବେଳେ କିଣି ପକାଇଛନ୍ତି ତାମସୀକୁ । ଯେତେଦିନ ନିତାନ୍ତ ଶିଶୁଟିଏ ଥିଲା, ମନେ ନାହିଁ କଣ ହୋଇଥିଲା, କିନ୍ତୁ ଯେବେଠାରୁ ଜ୍ଞାନ ହୋଇଛି, ତାଙ୍କର ଇଚ୍ଛା– ଅନିଚ୍ଛା ଚକରେ ବନ୍ଧା ପଡ଼ିଛି ତାମସୀ ।

କିନ୍ତୁ ସେ କିଏ ?

କିଏ ? କହିବାକୁ ଗଲେ ଅନେକ କଥା । ଏକ କଥାରେ କୁହାଯାଇ ପାରିବନି । ଆଶ୍ରୟଦାତା, ଅନ୍ନଦାତା, ପ୍ରତିପାଳକ, ଅଭିଭାବକ ।

"ପିଲାଦିନେ ମୋପାଇଁ ଚାକରାଣୀ, ଧାଈ ରଖି ମଣିଷ କରିଛନ୍ତି ସେ ।"

କିନ୍ତୁ କାହିଁକି ? ତାମସୀ ତ ନିଜେ ଚାକିରି କରୁଛି ।

"ଚାକିରି ? ସେ ତ ସେହି ଭଦ୍ରଲୋକଙ୍କ ପାଖରେ । ତାଙ୍କରି ଘରେ ।" "ଘରେ" ? ମାନସର ଭ୍ରୂ-କୁଞ୍ଚିତ ହୋଇ ଉଠିଥିଲା, "ଘରେ ହିଁ ଚାକିରି, "ସେଇଟା କି ବସ୍ତୁ ? ଷ୍ଟେନୋ ?"

ତାମସୀର ମୁହଁଟା କରୁଣ ହୋଇଥିଲା, ସେଇଟା କହିଦେଇ ପାରିଥିଲେ ବରଂ ମାନ ରହିଥାନ୍ତା । କିନ୍ତୁ ତା ନୁହେଁ । ଅସଲରେ ତାଙ୍କର ଖିଦ୍‌ମଦ୍‌ଗାର !

ସେବକ ! ଖାସ୍ ଭୃତ୍ୟ !

ହଁ, ଶୁଣିଲାବେଳକୁ ଖରାପ, କିନ୍ତୁ ଅସଲରେ ସେଇୟା । ତାଙ୍କ ସହିତ ଚା ପିଇବାକୁ ପଡ଼ିବ, ତାଙ୍କ ସହିତ ବୁଲିବାକୁ ପଡ଼ିବ, କାଗଜ ପଢ଼ି ଶୁଣାଇବାକୁ ପଡ଼ିବ ତାଙ୍କୁ, ସେ ପୁଣି କ'ଣ ସବୁ ଲେଖାପଢା କରନ୍ତି, ଅଥଚ ଚଞ୍ଚଳ ଲେଖି ପାରନ୍ତି ନାହିଁ । ସେଥିପାଇଁ ଡିକ୍ଟେସନ୍ ଦିଅନ୍ତି । ତାକୁ ଲେଖି ଉତାରିବାକୁ ପଡ଼ିବ– କାମର ଅନ୍ତ ନାହିଁ । ତାଛଡା ତାଙ୍କର ଲୁଗାପଟା କଥା ଦେଖ, ଖାଇବା-ଶୋଇବା ଦେଖ, ତାଙ୍କ ଘରକୁ ଅତିଥି ଆସିଲେ ସେମାନଙ୍କର ଆଦର- ଆପ୍ୟାୟନ ହେଉଛି କି ନାହିଁ ଦେଖ, ଅସୁସ୍ଥ-ବେମାରବେଳେ ତ ଆଉ କୌଣସି କଥାନାହିଁ । ଏକାବେଳେ ଟ୍ୱେଣ୍ଟିଫୋର୍ ଆୱାର୍‌ର ଦାସତ୍ୱ ।

ଶୁଣି ଶୁଣି ପ୍ରଥମେ ତ ମାନସର ମୁହଁଟା ଲାଲ ଏବଂ ତାପରେ କଳା ହୋଇଯାଇଥିଲା । କହିଥିଲା, ''ଏ ଚାକିରି ଆପଣ କରୁଛନ୍ତି ?''

''ନ କରି କ'ଣ କରିବି ?'' – ତାମସୀର ମୁହଁଟା ମଧ୍ୟ ନାଲି ପଡ଼ିଯାଇ କ୍ରମଶଃ କଳା ହୋଇଯାଇଥିଲା, କହିଥିଲା ''ୟାଠାରୁ ବଳି ଭଲ ଚାକିରି ମତେ କିଏ ଦେଉଚି ଯେ ?''

''ବିଲାତରେ ଏ ଧରଣର ଚାକିରିକୁ କଣ କହନ୍ତି, ଜାଣିଛନ୍ତି ?'' ମୁହଁ ଅନ୍ଧାର କରି କହିଥିଲା ମାନସ ।

''ନା, ତ... ।'' ସରଳ ଶିଶୁସୁଲଭ ଦୃଷ୍ଟି ନେଇ ଆଖି ଟେକି ଚାହିଁଥିଲା ତାମସୀ ''କ'ଣ କହନ୍ତି, କହୁନାହାନ୍ତି ? ମୁଁ ତ ମୋର ଏ ଚାକିରି ନାଁ ଖୋଜି ପାଉନି । ନାଁ କିଛି ଅଛି ?''

ମାନସ ସେଇ ସରଳ ଉଦ୍‌ଗ୍ରୀବ ମୁହଁ ଆଡ଼କୁ ଚାହିଁ କ'ଣ ଭାବିଥିଲା କିଏ ଜାଣିଛି ? ଆସ୍ତେ ଆସ୍ତେ ମୁହଁର ରଙ୍ଗଟା ସ୍ୱାଭାବିକ ହୋଇ ଆସିଥିଲା ତା'ର । ନିଶ୍ୱାସଟିଏ ପକାଇ କହିଥିଲା– ''ତା ଶୁଣି ଆଉ କାର୍ଯ୍ୟ ନାହିଁ ଆପଣଙ୍କର, କିନ୍ତୁ ତାଙ୍କର ଏବଂ ତାଙ୍କ ସଂସାରର ଦାୟିତ୍ୱ ଆପଣଙ୍କ ବୟସର ଗୋଟିଏ ଝିଅ ଉପରେ ଲଦିଦେବାକୁ କାହାରିକୁ କ'ଣ ବାଧେ ନାହିଁ ? ତାଙ୍କର ସ୍ତ୍ରୀ, ତାଙ୍କର ପୁଅଝିଅ- ।''

''ସ୍ତ୍ରୀ ! ପୁଅ-ଝିଅ ! ହାୟ ଈଶ୍ୱର !'' –ତାମସୀ ମ୍ରିୟମାଣ ହୋଇଯାଇଥିଲା, ବିଷଣ୍ଣ ହୋଇଯାଇଥିଲା, –''ସେସବୁ କାହିଁ ? ଶୁଣିଛି ସ୍ତ୍ରୀ ତ

କେଉଁକାଳରୁ ମରିଗଲେଣି, ଝିଅ-ପିଅର ଜଞ୍ଜାଳ ନାହିଁ, ଗୋଟିଏ ବୋଲି ପୁଅ, ହେଲେ ସେ ମଧ୍ୟ ଅନେକ ଦିନ ଆଗରୁ ମରିଯାଇଛି । ଏକାବେଳେ ସସ୍ତ୍ରୀକ ହିଁ ଯାଇଛନ୍ତି । ତିନିକୂଳରେ ଯଦି ଆଉ କିଏ ଅଛି ! ବୋଧହୁଏ ଜଣେ ଝିଆରୀ ଅଛନ୍ତି, ସେହିଁ ମଝିମଝିରେ ଆସନ୍ତି, ବାସ୍ । ଉଠିବା, ବସିବା, ଖାଇବା, ଶୋଇବାକୁ କେବଳ ମୁଁ ଅଛି ।''

''ଆଶ୍ଚର୍ଯ୍ୟ'' ! –ମାନସ କ୍ଷୁବ୍ଧ ସ୍ୱରରେ କହିଲା । ''ମୁଁ ଆଶ୍ଚର୍ଯ୍ୟ ହୋଇଯାଉଛି ! ଆପଣଙ୍କ ପରି ଜଣେ ଇଣ୍ଟେଲିଜେଣ୍ଟ୍ ଝିଅ, କିପରି ଯେ ଜଣେ ବୁଢ଼ା ବଡ଼ଲୋକର ପରିଚର୍ଯ୍ୟାକାରିଣୀ ବା ସହସଙ୍ଗିନୀ ପରି ଅପମାନକର କାମରେ ନିଜକୁ ନିଯୁକ୍ତି ରଖି ନିଶ୍ଚିନ୍ତ ରହିଛନ୍ତି, ତାହା ମୋର ବୁଦ୍ଧିର ଅଗମ୍ୟ ।''

''ଅପମାନକର !'' –ବିସ୍ମୟରେ ଆଖି ଗୋଲ ଗୋଲ କରିଥିଲା ତାମସୀ, ଅପମାନକର ହେବ କାହିଁକି ? ସେ ତ ମତେ ଗାଳିମନ୍ଦ କିଛି ଦିଅନ୍ତି ନାହିଁ । ଯଥେଷ୍ଟ ସ୍ନେହ କରନ୍ତି ।

ତେବେ ଭାରି ଜୋର୍‌ରେ ଅଟକାଇ ରଖନ୍ତି । ଘର ଭିତରୁ ଏକୁଟିଆ ଟିକିଏ ବାହାରିବାର ସାଧ ନାହିଁ । ଏଇ ଯେ ଚାଲି ଆସୁଛି ଖାଲି ଲୁଚି କରି ଚାଲି ଆସୁଛି । ମଝିରେ ମଝିରେ କ'ଣ ଗୋଟାଏ କାମରେ ଚନ୍ଦନନଗର ଯାଆନ୍ତି । ସେଦିନ ଟିକିଏ–''

ମାନସ ଗମ୍ଭୀର ମୁହଁରେ କହିଲା, ''ବୁଝିଲି । ବିଲାତି-ଗଳ୍ପ ଭଳି କଥାଟା ! ଅଥବା କାପାଳିକ ଆଉ କପାଳକୁଣ୍ଡଳା । କିନ୍ତୁ ସତରେ ତ ଆଉ ଆପଣ ବନବାସିନୀ କପାଳକୁଣ୍ଡଳା ନୁହଁନ୍ତି ! ଆପଣ କ'ଣ ବୁଝନ୍ତି ନାହିଁ, ଜଗତରେ କେତେ ପ୍ରକାର କଥା ଅଛି ? ସେଇ ଯୋ ଭଦ୍ରଲୋକ ସେ ଆପଣଙ୍କର କେବେ କ'ଣ ଉପକାର କରିଥିଲେ ବୋଲି ଆପଣଙ୍କ ମୁଣ୍ଡଟାକୁ ଏକାବେଳେ କିଣି ଦେଇଛନ୍ତି ଭାବି ନିଶ୍ଚିନ୍ତ ରହିଛନ୍ତି । ତାଙ୍କ ଭିତର ମତଲବଟା କ'ଣ ଆପଣ ଜାଣନ୍ତି ?''

ମାନସର ଉତ୍ତେଜନା ଦେଖିଲେ ମନେହୁଏ ମାନସ ହିଁ ଯେପରି କୌଣସି କୁଟୀଳ ଲୋକର ହାତରେ ପଡ଼ିଛି ।

ତାମସୀ ତାର ରାତ୍ରିର ରହସ୍ୟ ପରି ଗଭୀର କଳା ଆଖି ଦୁଇଟାକୁ ଟେକି କହିଲା– ''ଏ ମା, ତାଙ୍କର କି ମତଲବ ଥିବ ?''

"କେତେ କଣ ଥାଇପାରେ । ଘରେ ତ କେହି ନାହାନ୍ତି କହୁଛନ୍ତି । ଆପଣ ବା କେଉଁ ସାହସରେ ସେଇ ସ୍ତ୍ରୀଲୋକଶୂନ୍ୟ ଘରେ–"

"ଏଇ ! ମାଇଲେ !" ହଠାତ୍ ଭାରି ଗୋଟାଏ କୌତୁକର ହସ ହସି ଦେଇଥିଲା ତାମସୀ– "ଇସ୍ ! ଯା ଭାବି ଆପଣ ବିକଳ ହେଉଥିଲେ ? ଆହା, ବିଚରା ବୃଦ୍ଧ ଭଦ୍ରଲୋକ–"

"ବୃଦ୍ଧ ?"

"ହଁ ବୃଦ୍ଧ ତ । ଅତି କମ୍‌ରେ ପଞ୍ଚଷଠୀ ଛଅଷଠୀ ନିଶ୍ଚୟ ।"

"ପଁଷଠୀ ଛ'ଷଠୀ !" ମାନସ ମାନସାଙ୍କରେ ହିସାବ କରିନେଲା ଏକବାରେ ବୟସଟା ବିପଜ୍ଜନକର ସୀମାରେ ପଡୁଛି କି ନାହିଁ ।

ବୋଧହୁଏ ପଡୁନି । ନିହାତି ବୁଢ଼ା ବଦମାସ୍ ନ ହେଲେ ଧରି ନିଆଯାଇପାରେ ନିରାପତ୍ତା ଅକ୍ଷୁଣ୍ଣ ।

କିନ୍ତୁ ସେହି ବୁଢ଼ା ଯେ ବଦମାସ୍ ନୁହେଁ ସେଥିରେ କଣ ଠିକ୍ ଅଛି ? ସଦାସର୍ବଦା ଗୋଟିଏ ସୁନ୍ଦରୀ ତରୁଣୀର ସାହଚର୍ଯ୍ୟହିଁ ବା ଏତେ ଭଲ ଲାଗୁଛି କାହିଁକି ବୁଢ଼ାକୁ ? ତାମସୀ ଯେତେ ଆକ୍ଷେପ କରୁ ପଛକେ, ସ୍ୱାଧୀନତା ନାହିଁ, ହାତଗୋଡ଼ ବନ୍ଧା, ବୁଢ଼ାର ଅସରନ୍ତି ଦାବି ପୂରଣ କରୁ କରୁ ପ୍ରାଣ ଗଲା, ତେବେବେ ବେଶ୍ ଗଭୀର ଆକର୍ଷଣ ରହିଛି ବୋଲି ମନେ ହେଉଛି । ପିଲାଟିବେଳୁ କୁଆଡ଼େ ପୋଷିଛି ! କୃତଜ୍ଞତା ପାଶରେ ବନ୍ଦିନୀ ହୋଇଛି ତାମସୀ, ଆଉ କଣ !

ତେବେବେ କାହିଁକି କେଜାଣି ଏ କଥାଟା ଭଲ ଲାଗିନି ମାନସକୁ । ତେଣୁ ବେଶ୍ ବିରକ୍ତି ସହିତହିଁ କହିଥିଲା, "ବୁଢ଼ା ହେଲେ ଯେ ସର୍ବପ୍ରକାର ନିରାପତ୍ତାର ଗ୍ୟାରେଣ୍ଟି ମିଳିବ, ସେ କଥା କହି ହେବନି । ସଂସାରରେ ଅନେକ ଖରାପ ଜିନିଷ ଅଛି । ଆପଣ ଏତେ ବେଶୀ ସରଳ ଯେ ବୁଝାଇବା କଷ୍ଟକର । ହେଲେ ବୁଢ଼ାର ତ ଯଥେଷ୍ଟ ପଇସା ଅଛି, ଦରମାପତ୍ର ବେଶୀ ବେଶୀ ଦେଉନି କାହିଁକି ?"

"ଦରମା ?" –ତାମସୀ ଆଉଥରେ ହସି ପକାଇଲା । ହସି ହସି ଗଡ଼ିଗଲା । "ବେଶୀ ଥିଲେ ଯଦି ଟଙ୍କା –ମାଲିକମାନେ ବେଶୀ ବେଶୀ ଦେଇ ପକାନ୍ତେ ତାହେଲେ ତ ନ ଥିବାଟା ହିଁ ସ୍ୱର୍ଗ ହୋଇଯାଇଥାନ୍ତା ।"

''ଯାହା କହୁଛନ୍ତି, ସତରେ ଯେତେବେଳେ ଚାହିଁ ଦେଖୁଛି ଏହି ଭବସଂସାରରେ ଟଙ୍କା ନେଇ କି ଅଦ୍ଭୁତ ଖେଳ ଚାଲିଛି, ଆଉ କଣ ଧୂଳିକଣା ଟିକକ ସୁଦ୍ଧା ଆମ ଭଳି ହତଭାଗ୍ୟମାନଙ୍କୁ ଦେବାକୁ କୃପଣତା ପ୍ରକାଶ ପାଉଛି ଉପରବାଲାମାନଙ୍କର, ସେତେବେଳେ ଇଚ୍ଛା ହେଉଛି !''

କ'ଣ ଇଚ୍ଛା ହେଉଛି ସେଇଟା ନ କହୁଣୁ ତୁନି ହୋଇଯାଏ ମାନସ ।

ଆଉ ତାମସୀ ହସି କହେ, ''କ'ଣ ଇଚ୍ଛା ହେଉଛି ? ହୋଇ ଉନ୍ମାଦ ଦୁର୍ବାସା ବିଶ୍ୱାମିତ୍ର ଶିଷ୍ୟ, ଦାବାନଳ ଦାହେ ଦହନ କରିବି ଏ ବିଶ୍ୱ ?''

''ଦ୍ୟାଟ୍ସ୍ ରାଇଟ୍ । ଠିକ୍ ସେହିପରି ହିଁ କିଛି ଇଚ୍ଛା ହୁଏ'' ।

ତାମସୀ ଟିକିଏ ଗମ୍ଭୀର ହୋଇ କହିଥିଲା, ''ଇଚ୍ଛା ହୁଏ, କିନ୍ତୁ କର୍ମକ୍ଷେତ୍ରରେ ହୁଏ ଖାଲି କେତୋଟି ଦୀର୍ଘଶ୍ୱାସ, ନ ହେଲେ ଆଉ ଅଧିକ ମୁଠାଏ ଖାଇଦେବା, ସେତିକି ! ହଁ, ତାଠାରୁ ଆଉ ବେଶୀ ନୁହେଁ । ଆମମାନଙ୍କର ବିଦ୍ରୋହ ଖାଲି ସେପର୍ଯ୍ୟନ୍ତ । ଯଦି ରକ୍ତ ଆହୁରି ବେଶୀ ଗରମ ହୁଏ, ତ କାଗଜରେ ଆର୍ଟିକିଲ୍ ଲେଖୁ । କୋଟି କୋଟି ମଣିଷଙ୍କ ବିକ୍ଷୋଭ ଆଉ ବିଦ୍ରୋହ ସୁଦ୍ଧା ପାରି ଉଠେ ନାହିଁ, ଜଗତର ଏହି କୋଟି କୋଟି ଟଙ୍କା ନେଇ ଏଭଳି ମନଇଚ୍ଛା ଖେଳ ବନ୍ଦ କରିବାକୁ ।''

''ଆପଣଙ୍କର କଥାଟା ଅନେକଟା ରାଜନୈତିକ ବକ୍ତୃତା ପରି ଶୁଣାଗଲା''— କହି ହସିଥିଲା ମାନସ ।

ତାମସୀ ମଧ୍ୟ ହସିଥିଲା, ଅବଶ୍ୟ କହିଥିଲା, ''ରାଜନୈତିକ ନୁହେଁ, ଖାଲି ନୈତିକ । ଆମେମାନେ ପ୍ରତ୍ୟେକେ ନୈତିକ ଅପରାଧରେ ଅପରାଧୀ ।''

ମାନସ ସପ୍ରଶଂସ ଦୃଷ୍ଟିରେ କହିଥିଲା, ''ଆପଣ ଏତେ ଭାବନ୍ତି ?''

''ତା'ଛଡ଼ା ଆଉ କଣ କରିବି ?''— କହିଥିଲା ତାମସୀ ହସିପକାଇ । ''ସେଇ ଗୋଟିଏ ଜିନିଷ ଅଛି, ଯେଉଁଥିରେ କି ଖଟିବାକୁ ପଡ଼େନି, ପଇସା ପଡ଼େନି ।''

ତ, ଏସବୁ ମଧ୍ୟ ସେହି ପ୍ରଥମ ସମୟର କଥା । ଯେତେବେଳେ 'ଆପଣ' ବୋଲି କଥା କହୁଥିଲେ । ତର୍କ, ଗଳ୍ପ, ଏଣୁ ତେଣୁ ଆଲୋଚନା, ଅବାନ୍ତର କଥା, ଏସବୁରେ 'ଭାବ'ର ମୂଳଦୁଆ ପକାଇଥିଲେ ।

ଅସଲ କଥା ହେଉଛି, କଥା ପାଇଁ ହିଁ କଥା । କାଳେ କଥା ସରିଯିବ, ବସିଥିବାଟା ଅବାନ୍ତର ଦିଶେ, ସେଥିପାଇଁ କଥାର ସୂତ୍ର ଟାଣି ଆଣି ଜାଲ ବୁଣା ହେଉଥାଏ ।

ଯଦିଚ ପ୍ରତିଦିନ ତାମସୀ କହୁଥିଲା, "ଅଦୃଷ୍ଟରେ ଦୁଃଖ ଅଛି ଆଜି । ଘରକୁ ଯାଇ ଗାଳିମନ୍ଦ ଶୁଣିବାକୁ ପଡ଼ିବ ।"

ରୁକ୍ଷ ଗଳାରେ କହୁଥାଏ ମାନସ, "କାହିଁକି ? ସାରା ଦିନରେ ଦି'ଘଣ୍ଟା ଛୁଟି ମଧ୍ୟ କଣ ଆପଣଙ୍କର ପ୍ରାପ୍ୟ ନୁହେଁ ?"

ତାମସୀ ମଳିନ ଦିଶେ । କହେ, "ଛୁଟି ଆଉ ଖଟଣୀ ଏଇଯେ ଦୁଇଟା ଅଲଗା ଅବସ୍ଥା ଅଛି, ତା ହିସାବ କଲେ ଅବଶ୍ୟ କହିବାକୁ ପଡ଼ିବ, ଛୁଟି ଅନେକ ଅଛି । କିନ୍ତୁ, ଏଇ ଯୋ' କହିଲି, ନଜରବନ୍ଦୀ । ଫେରିଲାକ୍ଷଣି ତ ଆଗ ଗଦାଏ ଗାଳି ଖାଇବାକୁ ପଡ଼ିବ, କାହିଁକି ବାହାରିଥିଲି ବୋଲି । ତାପରେ ଆରମ୍ଭ ହେବ ଜେରା କାହିଁକି ଯାଇଥିଲି, କେଉଁଠାକୁ ଯାଇଥିଲି, କାହା ସଙ୍ଗେ କଥା କହିଥିଲି, ଏସବୁ ।"

"ତେବେକେ ଆପଣ କହୁଛନ୍ତି ଅପମାନ ହେଉନି ? "—ମାନସ ଫୁତ୍କାର କରିଉଠିଲା "ମୁଁ ତ ଜମା ଧାରଣା ସୁଦ୍ଧା କରିପାରୁନି ଯା'ଠାରୁ ଅଧିକ ଅପମାନ ଆଉ କଣ ହୋଇପାରେ ! ଆପଣଙ୍କୁ କଣ ସେ କିଣି ରଖିଛନ୍ତି ?"

ମାନସର ମନେପଡ଼େ ନାହିଁ, ତାମସୀ ସହିତ ତାର ପରିଚୟ ମାତ୍ର କେତେଟା ଦିନର । ତାମସୀର ମାନ-ସମ୍ମାନ ରକ୍ଷାର ଦାୟିତ୍ୱ ଏତେ କାଳ ହେଲା ସେ ବହନ କରି ଆସିନି । ମନକୁ ଆସେ ନାହିଁ, ସେଥିପାଇଁ ମନେ ମନେ ଗଜର ଗଜର ହୁଏ । ତାମସୀକୁ ଦୁର୍ବଳ-ଚିତ୍ତ ଭାବି ଆକ୍ଷେପ ବୋଧ କରେ ।

କିଣି ରଖିବା ପ୍ରଶ୍ନରେ ତାମସୀ ହସିଥିଲା, "ହଁ କହିବାକୁ ଗଲେ ସେଇୟା । ଋଣଦାୟରେ ବିକ୍ରୀ ହୋଇଯିବା ନା କଣ କହନ୍ତି ଲୋକେ, ପ୍ରାୟ ସେଇୟା ।"

"ଋଣ !" —ମାନସ କପାଳ କୁଞ୍ଚିତ କରେ, "ଋଣ କେଉଁଥିର ? ଋଣ କାହିଁକି ?"

"ଋଣ କାହିଁକି ? ସେ କଥା ତ କହିସାରିଛି । ଜ୍ଞାନ ହେବା ଆଗରୁ ହିଁ ମା ବାପା ଦୁଇଜଣ ଫିନିଶ୍ । ତେଣୁ ଦୟାକରି ସେ ଦେଖାଶୁଣା କରୁଛନ୍ତି ।"

"ଓଃ ! ସେଇୟା କହନ୍ତୁ । ଦୟାର ଋଣ !"

"ଠିକ୍ ତା ନୁହେଁ, ମାନେ ସେଇଟା ହିଁ ଶେଷ କଥା ନୁହେଁ । ଦୟା ଛଡ଼ା ମଧ ସ୍ନେହର ଋଣ ଅଛି । କୃତଜ୍ଞତାର ଋଣ । ଆଶ୍ରୟର ଋଣ ।"

"ଆପଣ ତ କହିଲେ, ବି.ଏ. ପାସ୍ କରିଛନ୍ତି, ଅଫିସ୍‌ରେ ଗୋଟାଏ କାମ ଜୁଟେଇ ପାରୁ ନାହାନ୍ତି ?"

"ହୁଏତ ପାରନ୍ତି, କିନ୍ତୁ ଦେଖନ୍ତୁ ସ୍ତ୍ରୀଲୋକମାନଙ୍କର ତ ଖାଲି ଅନ୍ନବସ୍ତ୍ର ହେଲେ ହିଁ ଚଳେ ନାହିଁ । ଆଶ୍ରୟଟି ମଧ ଦରକାର । ସେଇଟା ହିଁ ଅସଲ । ତାଙ୍କର ଆଶ୍ରୟ ଛାଡ଼ି ଚାଲିଆସିଲେ ରହିବି କେଉଁଠି ? ଏଠି ତାଙ୍କର ବିରାଟ ଘରଟା ପଡ଼ିରହିଛି, ରହିବାକୁ କେହି ନାହିଁ, ଇଚ୍ଛା ଅନୁସାରେ ଅଛି । ନିରାପଦରେ ଅଛି ।"

"କିନ୍ତୁ ଜେଲର ଆସାମୀ ଭଳି ଅଛନ୍ତି !"

ତାମସୀ ସେହିପରି ଉଦାର-ଚକ୍ଷୁରେ କହିଲା, "ହଁ ଅଛି । ତେବେକେ ଅଛି ତ । ଆଶ୍ରୟର ଆଶ୍ୱାସନା ଅଛି । ସେତକ ମଧ କେଉଁଠି ମିଳୁଛି ? ଅନ୍ୟ କୌଣସି ମୁନିବଠାରୁ ସେ ଆଶ୍ୱାସନା ମିଳିବ ?"

ସେ ଉଦାସ ମୁହଁ, ସେ ଆକ୍ଷେପର କଣ୍ଠ, ମାନସର ଛାତିଟାକୁ ଯେପରି କରତ ଦ୍ୱାରା କାଟିଥିଲା । ଏକାନ୍ତ ଆବେଗ ସହିତ ଯାହାହେଉ ଗୋଟାଏ କିଛି କରି ପକାଇବାର ଇଚ୍ଛା ହୋଇଥିଲା, କିନ୍ତୁ ପାଗଳ ନୁହେଁ ବୋଲି ହିଁ ସମ୍ଭାଳି ନେଲା ନିଜକୁ । ଚାହିଁ ଦେଖିଲା ତାମସୀ ଆଡ଼କୁ ।

ରୁକ୍ଷ ରୁକ୍ଷ କେଶ, ଦୁଃଖ ଦୁଃଖ ମୁହଁଟି । ସୁନାର ଛନ୍ଦାଂଶହୀନ ଏକବାରେ ନିରାଭରଣ ଦେହ, ଆବରଣଟି ମଧ ନିହାତି ସାଧାରଣ ।

ଖାଲି ଆଖିର ଚଷମା ଯୋଡ଼ାଟା ଟିକିଏ ଦାମିକା । ସୁନ୍ଦର ସୌଖୀନ । ବୋଧହୁଏ ଏହି ଗୋଟିକ ବସ୍ତୁରେ ହିଁ ସଉକ୍ ଅଛି ତାମସୀର ।

ତା ମଧ କେତେଦିନ ଧରି ଏ ସଉକର ଖର୍ଚ୍ଚଟା କରିବାର ପଇସା ସେ ଜମାଇଥିଲା କେଜାଣି ! କିଏ ଜାଣିଛି ସେଇ ବୁଢ଼ା ଶିଆଳ କେତେ ଦରମା ଦିଏ ତାମସୀକୁ । ପଚାରି ହେବନି ତ । ତେବେ ବହୁତ ବେଶୀ ଯେ ଦିଏ ନାହିଁ ସେଇଟା ନିଶ୍ଚିତ । ସେଥିପାଇଁ କଥାଟାକୁ ବୁଲାଇ ଅନ୍ୟ ଚାକିରିର କଥା ଉଠାଇଲା ମାନସ ।

କିନ୍ତୁ ତାମସୀ ଯେ ଆଶ୍ରୟର ଭୟରେ ସନ୍ତ୍ରସ୍ତ ।

ତେବେକେ– ଏହି ଆଲୋଚନାରୁ ହିଁ ଦିନେ ହଠାତ୍ ବନ୍ଧ ଭାଙ୍ଗିଗଲା । ଭୟ ଭାଙ୍ଗିଲା । ଚଟ୍‌କିନା ମାନସ କହିଲା, "ଆଉ ଯଦି କେହି ସେଭଳି ଭରସା...? ମୁନିବ ନୁହେଁ, ବନ୍ଧୁ ! ଦୟା କରି ଦେବ ନାହିଁ, ଦେଇ କୃତାର୍ଥ ହେବ ।"

ଅବଶ୍ୟ ଖପ୍‌କିନା ହାତ ଫାତ ଧରି ପକାଇଲାନି ମାନସ । ସେ ସାହସ ସେତେବେଳକୁବି ସଞ୍ଚୟ ହୋଇ ନାହିଁ । ଏଇଟା ଖାଲି କଥାର ସାହସ ।

ହସି ପକାଇ ତାମସୀ କହିଲା, "ଯଦି କଥାତ ନଦୀରେ ଯାଏ । ରାଧା ମଧ ନାଚିବେନି, ତେଲ ବି ପୋଡ଼ିବନି । କେହି ଦେବେନି ଆଶ୍ୱାସ ଭରସା । ତେଣୁ– ।"

ମାନସର ମାନସଲୋକ ସେତେବେଳେ ଉଦ୍‌ବେଳିତ । ସେ କହି ପକାଇଲା "–ସାତମହଣ ତେଲ ପୋଡ଼ିବାକୁ ଚାହିଁଲେ ହୁଏତ ମିଳିଯିବ । ଆପଣଙ୍କର ସେ ଉପରବାଲା ଆଶ୍ରୟଦାତାର ଘର ପରି ପ୍ରାସାଦ ନ ହେଲେ ଯଦି ରହିବାକୁ ଅସୁବିଧା ନ ହୁଏ ଆପଣଙ୍କର । ତେବେ ଅବଶ୍ୟ ଲାଜରେ ମୁଣ୍ଡ ପୋତିଦେବି । କିନ୍ତୁ ଛୋଟିଆ କୁଡ଼ିଆଟିଏର 'ଆଶ୍ରୟ' ଯଦି ଆପଣଙ୍କୁ ଭରସା ଦେଇପାରି ଧନ୍ୟ ହୁଏ ? କୃତାର୍ଥ ହୁଏ ?"

ତାମସୀର ଆଖିରେ ସ୍ୱପ୍ନର ନିବିଡ଼ତା ଓହ୍ଲାଇ ଗଭୀର ଛାୟା ପକାଇଲା । ତାମସୀ କହିପକାଇଲା, " 'ଯଦି'ଟା ସତ ହୋଇ କେବେ ଦେଖାଦିଏ, ପ୍ରାସାଦର ଅଭାବରେ କାତର ହେବିନି ।"

ତା'ପରେ ଆହୁରି କଥା ହେଲା ।

ତା'ପରେ ଆହୁରି । ବନ୍ଧ ଭାଙ୍ଗି ନଦୀ ଉଛୁଳି ପଡ଼ିଲା । ନିଜର ସୀମା ଭାଙ୍ଗିଲା । ସ୍ପଷ୍ଟ ସ୍ୱୀକାରୋକ୍ତିର ମାଧ୍ୟମରେ ନ ହେଲେ ମଧ୍ୟ ସେହିଦିନହିଁ ବୋଧହୁଏ ସ୍ପଷ୍ଟ ସ୍ଥିର ହୋଇଗଲା, ମାନସ ନାମକ ହତଭାଗ୍ୟ କେବଳ କିରାଣି ପିଲାଟାର ଆଶାରେ ଉଦ୍‌ଗ୍ରୀବ ରହିଲା ତାମସୀ । ଖାଲି ଥରଟେ ସେ ଡାକିଦେଲେ ହିଁ ହେଲା ।

କିନ୍ତୁ ଡାକ କାହିଁ ? ଡାକ ଦେବା ରାସ୍ତାରେ ଯେ ବଡ଼ ବାଧା ରହିଛି । ସେଇ ବାଧାଗୁଡ଼ିକର କଥା ଅବାଧରେ କହିପକାଇଲା ମାନସ, ତୀବ୍ର ଆକ୍ଷେପରେ

ଉଠିପଡ଼ି ପଦଚାରଣ କରି ବୁଲିଲା । ମୁଣ୍ଡ ବାଳଗୁଡ଼ିକୁ ମୁଠାରେ ଚିପିଧରି ମୁଣ୍ଡଟିକୁ ଝାଙ୍କି ଦେଲା । ଆଉ କହି ପକାଇଲା ''ଆଚ୍ଛା ତାମସୀ, କହିପାରିବ, ଗରିବର କାହିଁକି ଘୋଡ଼ାରୋଗ ହୁଏ ? ହତଭାଗ୍ୟର କାହିଁକି ଭଲପାଇବାକୁ ଇଚ୍ଛା ହୁଏ ?''

ତାମସୀ ଆଖି ବଡ଼ ବଡ଼ କରି ଝଲସିଯାଏ, ''ହତଭାଗ୍ୟ, ମାନେ ? ମୋର କୃପା-କଟାକ୍ଷ ଲାଭ କରିବା ପରେ ମଧ ନିଜକୁ ହତଭାଗ୍ୟ ବୋଲି ଚିହ୍ନିତ କରୁଛ ତମେ ? ଏଥିରେ ମତେ ଅପମାନ ହେବନି ? କେଉଁଠାରୁ ଗୋଟାଏ ବୁଢ଼ା ମୋର କଥା ବୁଝି ବୁଲୁଛି ବୋଲି, ତମେ ମୋ ପାଇଁ ତା ନାଁରେ ମାନହାନିର ମାମଲା ପକାଇବାକୁ ଚାହୁଁଛ, ଆଉ ଏ କଥାରେ ?''

''ଏଇଟା ଯେ ବଡ଼ ଦୁଃଖର ଅଭିବ୍ୟକ୍ତି ତାମସୀ'' ! ମାନସ କହିଲା ।

''ରଖ, ରଖ, ସେଇସବୁ ଦୁଃଖ-ଫୁଃଖ ଭଲ ଲାଗେନି ବାବା ! ହେଇଟିତ ଦେଖୁନ, ମୋର ଯାହା ଅବସ୍ଥା । ଇଚ୍ଛା କଲେ ସାରାଦିନ ଦୁଃଖର ସମୁଦ୍ରରେ ଭାସି ବସି ରହିବାକୁ ପଡ଼ିଥାନ୍ତା । ମା ନାହାନ୍ତି, ବାପା ନାହାନ୍ତି, ଭାଇ ନାହାନ୍ତି, ଭଉଣୀ ନାହାନ୍ତି, ରହିଥିବା ଭିତରେ ଅଛନ୍ତି ଜଣେ କଡ଼ା ମାଲିକ, ସେ–''

ମାନସ ଥରଟିଏ ତାମସୀର ନିରାଭରଣ ଦେହଟା ଆଡ଼କୁ ଚାହିଁଲା । ଭାବିଲା, ଆହୁରି କହିପାରନ୍ତ, ସାଜ ନାଇଁ, ସଜ୍ଜା ନାଇଁ ।

ମନେ ମନେ ନିଃଶ୍ୱାସଟିଏ ପକାଇଲା ମାନସ । ଭାବିଲା– 'ମୋର ମଧ କଣ ବା କ୍ଷମତା ଅଛି 'ତନୁଦେହଟିକୁ ସଜାଇବି ତୁମ, ରତ୍ନ ଆଭରଣେ ।' ତା'ପରେ ଧୀରେ କହିଲା, ''ତମ ପାଖରେ ମୁଁ । ମୋ ସହିତ ତୁଳନା କରି ତମେ ବିଜୟିନୀ ହେଲେ ମଧ ମୋରି ଗୌରବ । ମୋ ସାଙ୍ଗେ ତୁଳନା କରିବା ଅର୍ଥ ତମର ନିଜସ୍ୱ ମହିମାକୁ ଖର୍ବ କରିବା । ମୁଁ ଅସହିଷ୍ଣୁ, ମୁଁ ଅଧୀର ।''

''ତମେ ବିନୟର ଅବତାର ।'' କହି ହସିଉଠିଲା ତାମସୀ । ଆଲୋଚନାକୁ ସିରିୟସ୍ ହୋଇଯିବାକୁ ଦେଲା ନାହିଁ । କୌଣସି ସମୟରେ ନୁହେଁ ।

ମାନସ କହିଲା ''ତମେ ଥରଟେ ହେଲେ ମତେ ଟିକିଏ ଭାବଗମ୍ଭୀର ହେବାର ସ୍କୋପ୍ ଦିଅନି । ସବୁବେଳେ ଏତେ ହସ କଣ ? ଜାଣିଛ, ଭଲପାଇବାର ମୂଳ ଲକ୍ଷଣ ହେଉଛି କ୍ରନ୍ଦନ ।''

''ରକ୍ଷାକର ମଧୁସୂଦନ ! ତା'ହେଲେ ମୋର ଆଉ ଭଲପାଇ ଲାଭ ନାହିଁ। କାନ୍ଦ ଫେରେ କଣ ! କ୍ରନ୍ଦନ ଭିତରେ ମୁଁ ନାହିଁ।''

ଏଇୟା, ଖାଲି ଏଇୟା। ଖାଲି କେତେଗୁଡ଼ିଏ ଅକାରଣ କଥା।

କଥାଉ ଫାଶରେ କଥାରେ ଫାଶ ଟାଣି ଜାଲ ବୁଣିବା। ଆଉ ସେହି ଜାଲରେ ପଡ଼ିବା ପାଇଁ କେବଳ ପୁଅ ଝିଅ ଦିଇଟା ସାରା ଦିନ ଯେପରି ଛଟପଟ ହୋଇ ମରୁଥାନ୍ତି। ସକାଳୁ ଏ ଜାଗାଟା ତୀବ୍ର ଆକର୍ଷଣରେ ଟାଣେ, ଏଇ ସନ୍ଧ୍ୟା ଯେପରି ଦି'ହାତ ବଢ଼ାଇ ଠିଆହୋଇ ଡାକୁଥାଏ।

ସକାଳୁ ଉଠିଲାକ୍ଷଣି ଇଚ୍ଛାହୁଏ ସାରା ଦିନର କରଣୀୟ କାର୍ଯ୍ୟଗୁଡିକୁ ମୁଠାରେ ଚିପିଧରି ମୁହୂର୍ତ୍ତକରେ ନିଃଶେଷ କରି ସନ୍ଧ୍ୟାର ଏଇ ଅବକାଶଟିକକୁ ଦୀର୍ଘାୟିତ କରିପକାଇବି। ମନେହୁଏ— ଏଥିପାଇଁ ରହିଥିବ ପୁଳାଏ ଆଲୁଅ, ବୁକୁଭରା ପବନ।

ସକାଳଠାରୁ ଯାହା କିଛି କାମ, ତାର ଲକ୍ଷ୍ୟ ଏହି ସନ୍ଧ୍ୟା, ଏହି ସନ୍ଧ୍ୟାର ସୁଷମା। ସକାଳଠାରୁ ଯାହା ଚିନ୍ତା, ତା ଯେପରି ଏହି ସନ୍ଧ୍ୟାଟିରେ ସଙ୍ଗୀତ ହୋଇ ବାଜିବା ପାଇଁ ପ୍ରସ୍ତୁତି। ଯାହା କିଛି ଭାବନା, ତାହା ଯେପରି ଏଇ ଗୋଧୂଳି ଆଲୁଅରେ ସୁନା ହୋଇ ଉଠିବାର ଧ୍ୟାନର ମନ୍ତ୍ର !

ଏହି ସନ୍ଧ୍ୟାଟି ଅଛି, ସେଥିପାଇଁ ଜଗତର ସମସ୍ତ ରୂଢ଼ତା ଯେପରି ପେଲବ ହୋଇ ଉଠେ, ଯାହା କିଛି କୁଶ୍ରୀତା ତାହା ଯେପରି ସୁଷମାରେ ମଣ୍ଡିତ ହୋଇ ଦେଖାଦିଏ। ସଂସାରଚକ୍ରର କର୍କଶ ଧ୍ୱନି ବୀଣା ବାଜେ, ସହରର ସମସ୍ତ ବିଶୃଙ୍ଖଳା ଭିତରେ ଗୋଟିଏ ଛନ୍ଦ ଖୋଜିଲେ ମିଳେ। ସମସ୍ତ ଅର୍ଥହୀନତା ଭିତରେ ନିଗୂଢ଼ ଗୋଟିଏ ଅର୍ଥ। ସମସ୍ତ ଚେତନା ଯେପରି ବିଶ୍ୱରହସ୍ୟର ସଙ୍ଗେ ଏକାନ୍ତ ହୋଇ ଏକ ସ୍ତବଗାନ ପରି ବାଜୁଥାଏ।

ମନେହୁଏ ଆକାଶରେ ଯେ ଏତେ ଆଲୁଅ, ଆଗ ତ କେଉଁଦିନ ଖିଆଲ କରିନି। ମନେହୁଏ ଉପରଓଳି ଯେ ଏତେ ପବନ, ଏତେଦିନ ହେଲା ତ ଅନୁଭବ କରିନି। ମନେହୁଏ କଲିକତାର ରାସ୍ତା ଯେ ଏତେ ଆନନ୍ଦମୟ, ଏକଥା କେବେ ଜାଣିଥିଲି !

ଅଥଚ ଆଜିକାଲି ଯେଉଁ ଜାଗାଟି ସେ ନିର୍ବାଚନ କରିଛି, ସେଥିରେ ରାସ୍ତା ଅନେକ ଦୂର ପର୍ଯ୍ୟନ୍ତ ପାରହେବାକୁ ପଡ଼େ ସେମାନଙ୍କୁ। ଭିଡ଼ରେ ଭର୍ତ୍ତି,

ଗରମରେ ପୋଡ଼ିହୋଇଥିବା ବସ୍‌ରେ ଚଢ଼ି ଆସି ଯୋଗାଯୋଗ କରିବାକୁ ଯେ ଅନେକ କଷ୍ଟ ହୁଏ । ଜଣେ ଉତ୍ତରର ଅଧିବାସୀ ଆଉ ଜଣେ ଦକ୍ଷିଣର । ସେମାନଙ୍କ ଭାଷାରେ ଜଣେ ଉତ୍ତର ମେରୁର, ଆଉ ଜଣେ ଦକ୍ଷିଣ ମେରୁର ।

ସେମାନେ ଏହିପରି କଥା କହନ୍ତି । ମୁହାଁମୁହିଁ ହୋଇ ଯେତେବେଳେ ହାଜର ହୁଅନ୍ତି, ସେତେବେଳେ କୌଣସିମତେ ବିଶ୍ୱାସ କରିହେବନି ଏତେବେଳ କବିତା ପରି ଝଙ୍କୃତ ହେଉଥିଲେ ଦୁଇଜଣଯାକ । ସେତେବେଳେ ବରଂ ଝଙ୍କାର ଦେଲେ ଅନ୍ୟ ସୁରରେ ।

ଆଜି ମଧ୍ୟ ମାନସ ଯେତେବେଳେ ଆସିଲା, ଦେଖିଲା ତାମସୀ ବସି ବସି ବାଦାମ, ଲଙ୍କାଗୁଣ୍ଡ ଓ ଲୁଣ ଖାଉଛି । ବେଞ୍ଚର ମଝିରେ ବେଶ୍ ବିସ୍ତୃତ ହୋଇ ବସିଛି । ବୋଧହୁଏ କାଳେ ଆଉ କିଏ ଆସି ଜାଗାରେ ଭାଗ ବସାଇବ ସେଥିପାଇଁ ଶାଢ଼ୀ ସମ୍ପ୍ରସାରିତ କରି ଅଧିକାର କରିଛି ନିଜକୁ ।

ମାନସକୁ ଦେଖି ଝଲସିଯାଇ ଝଙ୍କାର ଦେଇ ଉଠିଲା, ଓଃ– ଦୁଇଦଣ୍ଡ ଟିକିଏ ଗୋଡ଼ ହାତ ମେଲାଇ ପବନ ଖାଇବି ବୋଲି କେତେ ଦୂରରୁ ଆସି ବସେ, ତା ମଧ୍ୟ ସହ୍ୟ ହୁଏ ନାହିଁ ସବୁ ହିଂସୁକ ଲୋକମାନଙ୍କର !

କହିବା ସଙ୍ଗେ ସଙ୍ଗେ ଅବଶ୍ୟ ସେହି ହିଂସୁକ ଲୋକଟି ପାଇଁ ଜାଗା ଛାଡ଼ିଦିଏ । ସଜାଡ଼ି ହୋଇ ବସେ ମାନସ, ପକେଟରୁ ଠୁଙ୍ଗାଟିଏ ସଲ୍‌ଟେଡ୍ କାଜୁ ବାହାର କରି ତାମସୀର କୋଳରେ ପକାଇ ଦେଇ କହେ, ଆଜି ତମେ ବାଦାମ କିଣିଲ କାହିଁକି ? ଆଜି ତ ତମର ପାଳି ନୁହେଁ ।

ତାମସୀ ଭ୍ରୂଭଙ୍ଗୀ କରି କହିଲା, ଆହାରେ ମୋର ଗେହ୍ଲା । ଘଣ୍ଟାକଠାରୁ ବେଶୀ ଏକୁଟିଆ ବସି ଲୋକେ ବୋଧହୁଏ ପଡ଼ିଆର ଘାସ ଗଣିବେ ?

ଏକାବେଳେ ଏକ ଘଣ୍ଟା ?– ହସିଲା ମାନସ– କେତେ ମିନିଟ୍‌ର ଘଣ୍ଟା ?

ଦେଖ ! ଭଲ ହେବନି କହୁଛି । ଆଉ ଟିକିଏ ଡେରି ହୋଇଯାଇଥିଲେ ଚାଲିଯାଇଥାନ୍ତି ନିଶ୍ଚେ ।

ଚାଲିଯାଇଥାନ୍ତ ? ଇସ୍ ! ପାରିଥିଲେ ତ ।

ମାନେ ? ଭାରି ଅହଙ୍କାର । କାଲି ଦେଖିବ ।

କାଲି ? କାଲି ତ ମୋର ଦି'ଟାରେ ଛୁଟି । କାଲି ତ ଅଢ଼େଇଟାରୁ ଆସି ବସି ରହିଥିବି ।

ଥାଅ ! ଦିପହରର ଖରା ସମ୍ପର୍କରେ ଗବେଷଣା କର । ଅଥବା ତାରି ଉପରେ ଗୋଟିଏ କବିତା ଲେଖିପକାଅ ।

ତମେ ତା'ହେଲେ ଆସିବନି ?

ମୁଣ୍ଡ ଖରାପ !– ତାମସୀ ମୁଠାଏ ବାଦାମ ତାର ହାତ ମୁଠାରେ ଭର୍ତ୍ତି କରିଦେଇ ନିଜେ ଠୁଙ୍ଗା ଭିତରେ ହାତ ପୂରାଇ ବାଛୁ ବାଛୁ କହିଲା, କାଜୁ ଆଣିଛ କାହିଁକି ? ବେଶୀ ବେଶୀ ପଇସା ଖର୍ଚ୍ଚ କରି ?

ଆଃ, ତମ ପାଦତଳେ ପଡୁଛି ! ଏଇଟା ଆଉ ସ୍ମରଣ କରାଇ ଦିଅନି ।

ନ ଦେଲେ ତମେ ତ ଏକାବେଳେ ଲଗାମଛଡ଼ା ହୋଇଯିବ–

ମାସକର ଟଙ୍କା ପନ୍ଦରଦିନରେ ଖର୍ଚ୍ଚ କରିପକାଇବ ।

ମାନସ ହସି କହିଲା, ଏ ମାସଠାରୁ ହାତଖର୍ଚ୍ଚ କିଛି ବଢ଼ିଛି ।

ଆରେ ବାସ୍ ! କଣ କହୁଛ ମ ? ସାଙ୍କସନ୍ କଲା କିଏ ? ମା ନା ଭଉଣୀ ?

ହଁ, ଏଭଳି କଥା କହେ ତାମସୀ । କହିବାର ଛାଡ଼ପତ୍ର ଅଛି । ସେ ଛାଡ଼ପତ୍ର ଦେଇଛି ମାନସ ।

ମାନସର ମା ଯେ ମାନସର ଦରମାର ସବୁତକ ଗଣି ଗୁଣି ନେଇ କାନିରେ ବାନ୍ଧିଦେଇ ତା'ପରେ ପୁଣି ମାନସକୁ ତାର ମାସର ଖର୍ଚ୍ଚ ପାଇଁ ଗଣି ଗୁଣି ତେଇଶିଟି ଟଙ୍କା ଦିଅନ୍ତି, ସେକଥା ମାନସ ନିଜେ ତାମସୀ ପାଖରେ ଗପିଛି, ହସି ହସି କୌତୁକର ଆବରଣ ପିନ୍ଧାଇ । ଆଉ ମାନସର ଭଉଣୀ ଯେ ମଝି ମଝିରେ ସନ୍ଦେହ ପ୍ରକାଶ କରି ଭାଇନାର ଯାହା ଦରମା, ତା ଖୋଲି କହନ୍ତି ନାହିଁ ଭାଇନା, ଆଗରୁ କିଛି କାଢ଼ି ରଖନ୍ତି, ସେକଥା ମଧ୍ୟ କହିବାକୁ ଛାଡ଼ିନି ।

କହେ, ଆଉ ତା ସହିତ ଆଖି ଥରାଇ କହେ, ବୁଝିପାରୁଛ ? ଏମାନଙ୍କ ସହିତ ରଣକ୍ଷେତ୍ରକୁ ଓହ୍ଲାଇବାକୁ ପଡ଼ିବ ତମକୁ । ଏବେ ମଧ୍ୟ ବିବେଚନା କରି ଦେଖିପାର । ସବୁ ଖୋଲି କହୁଛି । ଯା'ପରେ ଯେ ଦୋଷାରୋପ କରିବ, ସେସବୁ ଭିତରେ ମୁଁ ନାହିଁ ।

ତାମସୀ କହିଲା, ତମ ପରି ହତଭାଗ୍ୟକୁ ପୁଣି ଦୋଷ ଦେବାକୁ ଯିବ କିଏ ? ଦୋଷ ଦେବି ତ ଭାଗ୍ୟକୁ ଦେବି, କପାଳକୁ କରାଘାତ କରି କରି ।

ମୋ ଆଗରେ କରିବ ତ ? ମତେ ଶୁଣାଇ ଶୁଣାଇ ?... ମାନସ ହସିଲା ତା'ପରେ ।

ତାମସୀ କହିଲା, ଯାହା ଖୁସି ମୋର କରିବି । ତମର ହୁକୁମ୍‌ରେ ଉଠିବି ବସିବି ନା କଣ ?

ତା ନ'ହେଲା ଏବେ ବସନି, ମାନସ କହିଲା– 'ଯାହା ଖୁସି' ଭିତରେ ଖୁସିଟା ଯେପରି ରହିଥାଏ ।

ଇସ୍ ! ରଣଚଣ୍ଡୀ ମୂର୍ତ୍ତିଟା ତ ମନରେ ଅଛି । –ଖୁସିରେ ବିଗଳିତ ହୋଇ କହିଲା ତାମସୀ । ଆଗର ସେହି ଦୁଃଖିତ, ବିଚରା ଭାବଟା କଟିଯାଇଛି ତାର । ଆଜିକାଲି ସଦାସର୍ବଦା କୌତୁକରେ ଝଲମଲ ହେଉଛି, ଉଜ୍ଜ୍ୱଳ ହେଉଛି ଆହ୍ଲାଦରେ ।

କିନ୍ତୁ ମାନସ ସବୁଦିନ ତା ନୁହେଁ । ଦିନେ ଦିନେ ମାନସର ମନ ଭଲ ରହେନି, ମାନସ ସେଦିନ ବସି ରହି ପାରେ ନାହିଁ । ପଦଚାରଣ କରେ, ଆଉ କହେ– ଆଚ୍ଛା, ତମ ସଙ୍ଗେ ମୋର ଦେଖା ନ ହୋଇଥିଲେ କଣ ଏତେ କ୍ଷତି ହୋଇଯାଇଥାନ୍ତା ପୃଥିବୀର ? ଏଇ ଯନ୍ତ୍ରଣା, ଏଇ ଗ୍ଲାନି ଏ ତ ଆଉ ସହ୍ୟ ହେଉ ନାହିଁ । ଅଥଚ ଦେଖ, ତୁମକୁ ନ ଦେଖିଲେ, ମୋର 'ମୁଁ' କୁ ନେଇ ଭାବିବାର ବିଳାସିତା ମୁଣ୍ଡକୁ ସୁଦ୍ଧା ଆସି ନ ଥାନ୍ତା । ଜୀବନର ସ୍ୱପ୍ନ ଦେଖିବାର ହାସ୍ୟକର ବୋକାମୀ କରିବାକୁ ବସିନଥାନ୍ତି ମୁଁ ।

ତାମସୀ ଟିକିଏ ଗମ୍ଭୀର ହେଲା । କହିଲା– କ୍ଷତିଟା ଯେ କେତେବେଳେ କାହାର ହୁଏ, ତାର ସବୁ ହିସାବ ତମେ ରଖିପାରିବ ? କହିପାରିବ ଲାଭ କି କ୍ଷତି ହେଲା ?

କ୍ଷତି, ତାମସୀ, ମୂଳରୁ ଚୂଳଯାଏ ଖାଲି କ୍ଷତି । ତମର ଜୀବନଟା ମଧ୍ୟ କ୍ଷତିର ଖାତାରେ–

ତାମସୀ ଦର୍ପ ସହିତ କହିଲା– ଇସ୍ ! ମୋ ଜୀବନକୁ କ୍ଷତିର ଖାତାରେ ପକାଇ ଦେଇପାରେ ଏତେ ସାଧ କାହାର ଅଛି ।

ଏଭଳି ଦର୍ପର କଥା ତାମସୀ ପ୍ରାୟ କହେ ।

ଦର୍ପର କଥା, ବିଶ୍ୱାସର କଥା । ଯେଉଁଦିନ ମାନସର ମନ ଖରାପ ଥାଏ, ଯେଉଁଦିନ ମାନସ ଜୀବନକୁ ତଳେଇ କରି ଭାବିବାକୁ ଚେଷ୍ଟା କରେ, ସେଦିନ ଆଗରେ ଅନ୍ଧକାର ଛଡ଼ା କିଛି ଦେଖି ପାରେନି ।

କିନ୍ତୁ ସବୁଦିନ ମଣିଷ କଣ ଭବିଷ୍ୟତ ଭାବିବାକୁ ବସିପାରେ ?

ପାରେ ନାହିଁ । ତା'ହେଲେ ତ ନିଃଶ୍ୱାସ ବନ୍ଦ ହୋଇଯାଇଥାନ୍ତା ।

ତେଣୁ ସେମାନେ ଆଜି ଭଳି ପବନରେ ଭାସନ୍ତି ବେଶୀ ଭାଗ ଦିନ । ସେଥିପାଇଁ ତାମସୀର ପ୍ରଶ୍ନରେ ଖୁସିର ଆଲୁଅ ବିଛି ହୋଇପଡ଼େ ମାନସର ମୁହଁରେ ।

ଆଗରୁ ଏତେ ବେଶୀ ଚିହ୍ନି ପକାଇଛ ସେମାନଙ୍କୁ ? ତେବେକେ ତ ଆଖିରେ ଦେଖି ନାହଁ, ଖାଲି ବଂଶୀ ଶୁଣିଛ । ଶୁଣ, ଅଳ୍ପ ଇନ୍‌କ୍ରିମେଣ୍ଟ ହୋଇଛି ।

ସତେକି ଡ଼େଇଁପଡ଼ିଲା ତାମସୀ– ସତରେ ନା କଣ ? ଅଭିନନ୍ଦନ ଜଣାଉଛି । ତାହେଲେ ତ ଖାଲି କାଜୁବାଦାମ ମଞ୍ଜୁର ହେବନି, ଅନ୍ୟ କିଛି ଦରକାର ।

ମାନସ ହସିଲା– ଅନ୍ୟ କିଛି ମଧ ଅଛି । ଦେବତାଙ୍କ ନିର୍ମାଲ୍ୟ ବାହାର କରିବା ଭଙ୍ଗୀରେ ମାନସ ଆସ୍ତେ ଆସ୍ତେ ପକେଟ୍‌ରୁ ଦୁଇଟା ଟିକେଟ୍ ବାହାର କଲା । 'ଲାଇଟ୍ ହାଉସ୍‌ର' । ଆଗାମୀ କାଲିର । ଭଲ ଦାମ୍‌ର ଟିକେଟ୍ ।

ଚମକିପଡ଼ିଲା ତାମସୀ । ମାରିଲା । ସିନେମା ଟିକେଟ୍ । ମୁଁ କେବେ ଦେଖିବାକୁ ଯିବି ?

ମାନସ ଆଖିକୁ ସଙ୍କୁଚିତ କଲା– କେବେ ପୁଣି ? ମାଟିନୀକୁ । କହିଲି ଯେ କାଲି ମୋର ଦୁଇଟାଠାରୁ ଛୁଟି ।

ତାମସୀ ଆକ୍ଷେପର ସ୍ୱରରେ କହିଲା– ତମର ତ ଛୁଟି, ହେଲେ ମୋର ! ମୋର କଣ ? ସେହି ଦିପହର ମଝିଟାରେ ବୁଲିବାକୁ ଚାହିଁଲେ ତ ପ୍ରଭୁଙ୍କ ଜେରାର ମୁହଁରେ ପଡ଼ିବାକୁ ହେବ । ହୁଏତ ବା ଠେଲି କାହାକୁ ପଠାଇଦେବେ ପହରାବାଲା କରି ।

ମାନସ କ୍ଷୁଣ୍ଣ ଆଉ ରୁକ୍ଷ ସ୍ୱରରେ କହିଲା– ମତେ ତମର ସେ ପ୍ରଭୁଙ୍କ ସହିତ ଥରଟିଏ ଦେଖା କରାଇ ଦେଇପାରିବ । ସେଦିନ ଖାଲି ଦୂରରୁ ଘରଟା ଦେଖାଇ ଦେଇ ଭଗେଇ ଦେଲ । ଲୋକଟାର ମୁହାଁମୁହିଁ ହେବାକୁ ଚାହେଁ ମୁଁ ।

ସର୍ବନାଶ !

ସର୍ବନାଶ କାହିଁକି ? ତମର ଭୟ ଥାଇପାରେ, ଅନ୍ନ ଆଉ ଆଶ୍ରୟ ହରାଇବାର ଭୟରେ ତମେ କଣ୍ଟା ହୋଇଯାଉଛ । ହେଲେ ମୋର ଭୟ କେଉଁଥିପାଇଁ ହେବ ? ତମର ସେ ମୁନିବକୁ ମୁଁ କେୟାର୍ କରେନି ।

ହେଲେ ତାମସୀ ରାଗିଯାଏ ନାହିଁ । ହସି କହେ, ତା ନ କଲ, କିନ୍ତୁ ବୁଢ଼ାର ସ୍ୱଭାବଟା ଯାହାନା, ଏକାବେଳେ ଦୁର୍ବାସା । କାଳେ ଗୋଟାଏ ଅପମାନର କଥା କହିଦେବ । ଏକରେ ତ ବଡ଼ଲୋକମାନଙ୍କୁ ଦେଖିଲା କ୍ଷଣି ରାଗରେ ଅପମାନରେ ତମ ମୁଣ୍ଡ ଭିତରେ ନିଆଁ ଜଳେ । କାମୁଡ଼ି ଦେବାକୁ ଇଚ୍ଛା ହୁଏ । ତା ଉପରେ ପୁଣି କଥା ଶୁଣିଲେ—

ମାନସ ତାମସୀର ମୁହଁ ଆଡ଼କୁ ଚାହିଁଲା । ବୁଝିପାରିଲାନି ତାମସୀ ପରିହାସ କରୁଛି ନା ଉପହାସ କରୁଛି । ହତାଶ ଭାବରେ କହିଲା, ଗୋଟିଏ ଗୋଟିଏ ସମୟରେ ତମକୁ ଏମିତି ଭୟଙ୍କର ପ୍ରକାର ଦୁର୍ବୋଧ ଲାଗେ ତାମସୀ, ମନେହୁଏ, ମନେହୁଏ ମୂଳରୁ ତମେ ଯେପରି ମୋ ସହିତ ତାମ୍ସା କରିଚାଲିଛ ।

ତାମ୍ସା !

ହଁ, ପ୍ରାୟ ସେଇୟା । ତମକୁ ବୁଝିପାରୁନି ।

ଆହାରେ ! ୟା'ରି ଭିତରେ ପୂରା ବୁଝି ପକାଇବାକୁ ଚାହୁଁଛ ବୋଧହୁଏ ? ଏତେ ସହଜ ନୁହେଁ ।

ମାନସ ଟିକିଏ ତୁନି ହୋଇ ରହି କହିଲା, ବେଶ୍ ! ଥାଉ, ସୁବିଧା ଯେତେବେଳେ ହେବନି, ଜୋର୍ କରିବାର ଧୃଷ୍ଟତା କରିବିନି । ଭାବିଲି ଜୀବନରେ ଥରଟେ ହେଲେ ଟିକିଏ ସଉକ୍ ମେଣ୍ଟାଇ ଦେବି । କିନ୍ତୁ, ଅତି ସଉକ୍ ଭଲ ନୁହେଁ । ଅବଶ୍ୟ ମୋ ପକ୍ଷରେ ଦାମୀ ଟିକଟରେ ଲାଇଟ୍‌ହାଉସ୍‌ରେ ଯାଇ ବସିବା ଏକାବେଳେ ନୂଆ ରଙ୍ଗ ଦେଲାପରି, ତମ ପକ୍ଷରେ ତ ତା ନୁହେଁ । ଧନୀ ମୁନିବ ସହିତ ସଙ୍ଗିନୀ ହିସାବରେ ତମେ ଅବଶ୍ୟ ଅନେକ ଯାଇଥିବ ।

କହି ଟିକେଟ୍ ଦୁଇଟାକୁ ପୁଣି ପକେଟ୍‌ରେ ରଖିଦେଇ ମାନସ ଗମ୍ଭୀର ସ୍ୱରରେ କହିଲା, ବଡ଼ଲୋକ ହେଲେ ହୁଏତ ଟିକେଟ୍ ଦୁଇଟାକୁ ଚିରି ଦେଇପାରିଥାନ୍ତି, କିନ୍ତୁ ସେ ସାଧ ନାହିଁ । ଯାଉଛି ଫେରସ୍ତ ଦେଇଦେବି ।

ତାମସୀ ଏଥର ରାଗିଲା ଏବଂ ତାହା ଲୁଚାଇଲାନି । ବେଶ୍ ଜୋର୍ ଗଳାରେ କହିଲା– ଦେଖ ବେଶୀ ରଗାଅନି କହୁଛି । ଦିଅ ମତେ ସେ ଦିଇଟା । ଦିଅ ଚଞ୍ଚଳ ।

କ'ଣ ହେବ ?

ମୁଁ ଚିରିଦେବି । ଦିଅ କହୁଛି ।... ତାମସୀ ନିଜେ ମାନସର ପକେଟରୁ ବାହାର କରିନେଲା । ଭ୍ୟାନିଟି ବ୍ୟାଗ୍‌ରେ ପୂରାଇ କହିଲା, କାଲି ଠିକ୍ ସମୟରେ ହାଜର ହୋଇଥିବ ।

ମାନସ ତେବେକେ କ୍ଷୁବ୍ଧ ଭାବ ତ୍ୟାଗ କଲା ନାହିଁ । କହିଲା, କାହିଁକି ନିଜର ବିପଦ ଡାକିଆଣୁଛ ? କିଏ ଜାଣିଛି ତମକୁ ମଧ୍ୟ ଅପମାନିତ ହେବାକୁ ପଡ଼ିବ କି ନାହିଁ । ଥାଉ ମାନସୀ, ମୋର ମୁହଁକୁ ଚାହିଁ ତମେ ଏ ବିପଦ-ବୋଝକୁ ମୁଣ୍ଡାଇବାକୁ ଆସନି ।

ଦେଖ, ପୁଣି ମନେ ପକାଇ ଦେଉଛି, ମତେ ରଗାଅନି ।

ମାନସ ଏଥର ନରମ ଗଳାରେ କହିଲା, କିନ୍ତୁ ଯଦି ମୋର ଏହି ତୁଚ୍ଛ ସଉକ୍‌ଟା ପାଇଁ ତମକୁ ବହୁତ ବେଶୀ ମୂଲ୍ୟ ଦେବାକୁ ପଡ଼ିବ ? ଯଦି–

ତାମସୀ ମାନସର ଆରକ୍ତ ମୁହଁଟା ଆଡ଼କୁ ଚାହିଁଲା । ମନେ ମନେ କହିଲା, ତମପାଇଁ ମତେ ଯେ କେତେ ବେଶୀ ମୂଲ୍ୟ ଦେବାକୁ ପଡୁଛି ସେ କଥା ଯଦି ଜାଣିଥାନ୍ତ ।

କିନ୍ତୁ ମୁହଁରେ ତାହା କହିଲାନି । କହିଲା, ତମ ପାଇଁ କଣ୍ଟକର ହାର ବି ବେକରେ ପିନ୍ଧିବାରେ ସୁଖ ମିଳେ ।

ହସି ପକାଇଲା ମାନସ । ତାର ଗୋଟାଏ ହାତ ମୁଠା ଭିତରକୁ ଟାଣିଆଣି ତୁନି ହୋଇ ବସିରହିଲା । ଏକ ସମୟରେ ନିଃଶ୍ୱାସ ପକାଇ କହିଲା, ତାମସୀ, ଆଉ ସହି ହେଉନି । ଯିଏ ଯାହା କହୁ, ଆମ ଜୀବନକୁ ଆମେ ଗ୍ରହଣ କରିନେବା ଆସ । ଏଭଳି ଆଉ ତାକୁ ଫେରାଇ ଦେଇପାରୁନି ।

ତାମସୀ କିନ୍ତୁ ଏହି ଭାବଗମ୍ଭୀରତାକୁ ନଷ୍ଟକରି କହିଲା, କହିଛି ତ, ବାବା, ଉଚ୍ଛନ୍ନ ହେଲେ କାର୍ଯ୍ୟ ହେବନି । ଧୈର୍ଯ୍ୟ ଧରିଲେ ସୀତାଫଳ ପାଚେ । ତା'ଛଡ଼ା

ମା ଓ ଭଉଣୀକୁ ରଗାଇ କିଛି କରିଦେଇ ବସିବାଟା କଣ ଭଲ ? ସେମାନଙ୍କ ମନ ଆଗ ପାଉ—

ସେମାନଙ୍କର କେଉଁ କାଳରେ ମନ ପାଇବନି । ସେ ବିଷୟରେ ଗ୍ୟାରେଣ୍ଟି ଦେଉଛି ତମକୁ ।

ତାମସୀ ମୃଦୁ ହସି କହିଲା, ମୁଁ ନ ହେଲେ ଯିବି ତାଙ୍କ ମନକୁ ଓଦା କରିବି ?

ଆଃ ତାମସୀ— ମାନସ କହିଲା, ସେସବୁ କଳ୍ପନା ଗଳ୍ପ ଉପନ୍ୟାସରେ ହିଁ ଶୋଭାପାଏ, ଜୀବନରେ ହୁଏନି । ସେଠି ମଧ୍ୟ ମାନସମ୍ମାନର ପ୍ରଶ୍ନ ।

ତାମସୀ ହସିପକାଇ କହିଲା, ତାହେଲେ ଥାଉ । ଯେମିତି ଚାଲୁଛି ଚାଲୁ । ଦେଖାଯାଉ, ଆମର ଭାଗ୍ୟ କେଉଁଠାକୁ ନେଉଛି ।

ହୁଏତ ଝିଅମାନେ ସେକଥା ପାରିବେ ତାମସୀ । ପୁରୁଷମାନେ ଏତେ ଧୈର୍ଯ୍ୟ ଧରି ପାରିବେନି । ଯଦି ମୁଁ ଅକ୍ଷମ ନ ହୋଇଥାନ୍ତି—

ମାନସ ତୁନି ହୋଇଗଲା ।

ଟିକିଏ ଗମ୍ଭୀର ହେଲା ତାମସୀ । କହିଲା, ମାନସ, ଏଭଳି କୁହନି । ସେଥିରେ ତମେ ମୋ ନିକଟରେ ଛୋଟ ହୋଇଯାଉଛ । ତମର ନିରୁପାୟତା ମୋ ପାଖରେ ବରଂ କୌତୁକର । କିନ୍ତୁ ନିରୁପାୟତାର ଏହି ଆକ୍ଷେପ ଅସହ୍ୟ । ସେସବୁ ଛାଡ଼ । କଥା ରହିଲା କାଲି ଠିକ୍ ସମୟରେ ତମେ ଆସିବ ।

ତାମସୀ ଯେପରି ମାନସକୁ ସିନେମା ଦେଖିବାକୁ ନିମନ୍ତ୍ରଣ କରୁଛି । ଗଲାବେଳେ ଅବଶ୍ୟ ସନ୍ଧି ହୋଇଗଲା । ହାତରେ ହାତରେ ଟିକିଏ ମୃଦୁ ଚାପ ଦେବା, ଟିକିଏ ଘନିଷ୍ଠ ହୋଇଯିବା । ସାମାନ୍ୟ ଟିକିଏ ହସ ଭିତରେ ସବୁ ସହଜ ହୋଇଗଲା ।

ବସ୍ ଷ୍ଟାଣ୍ଡରେ ଆସି ଠିଆହେଲେ ସେମାନେ । ଦୁଇଜଣ ଦୁଇପଟର ବସ ଧରିଲେ । ଜଣେ ଉତ୍ତର ମେରୁର, ଆଉ ଜଣେ ଦକ୍ଷିଣ ମେରୁର ।

ମାନସ ରହେ ପାଇକପଡ଼ାରେ, ତାମସୀ ବାଲିଗଣ୍ଡାର କଙ୍କୁଳିଆରେ । ଆଉ ଥରେ ପୁଣି ପ୍ରତିଶ୍ରୁତିର ପାଲା ଶେଷ ହୁଏ । ତାପରେ ଉଠିପଡ଼ିଲେ ବସ୍‌ରେ ସେମାନେ ।

ବସ୍‌ରେ ଚଢ଼ିଗଲେ । କିନ୍ତୁ ଦୁଇପ୍ରାନ୍ତର ଏହି ଦୁଇଜଣ ବାସିନ୍ଦାଙ୍କ ଭିତରେ ଏହି ଭାବର ସୂତ୍ର ସୃଷ୍ଟି ହେଲା କିପରି ? ଯୁଗଳ ଭଲପାଇବାର ଫୁଲ ଦେଇ କିଏ ସେ ସୂତାରେ ମାଳା ଗୁନ୍ଥିଲା ? କେବେ କିପରି ସେମାନଙ୍କର ପ୍ରଥମ ଦେଖାସାକ୍ଷାତ ହୋଇଥିଲା ?

ସେକଥା ଜାଣିବାକୁ ହେଲେ ଗତଥରର ବଙ୍ଗ-ସଂସ୍କୃତି ସମ୍ମିଳନୀର ସେହି ଦ୍ୱିତୀୟ ଦିନଟିକୁ ଫେରିଯିବାକୁ ହେବ । ସେଦିନ ପ୍ରବଳ ଭିଡ଼ ହୋଇଥିଲା । ଆଗର ରାସ୍ତା ଜାମ୍ ହୋଇଯାଇଥିଲା, ଭାଗ୍ୟବାନ୍‌ମାନେ ଗାଡ଼ି ପାର୍କ କରିବା ପାଇଁ ଜାଗା ନ ପାଇ ଦାନ୍ତରେ ଓଠକୁ କାମୁଡୁଥିଲେ । ଏବଂ ଗାଡ଼ିହୀନମାନେ ସେହି ଅସଂଖ୍ୟ ଗାଡ଼ିର ଅରଣ୍ୟରୁ ବାହାରିବାର ରାସ୍ତା ଖୋଜି କାଢ଼ିବାକୁ ନାକେଦମ୍ ହୋଇ ମନେ ମନେ ଗାଡ଼ିବାଲାଙ୍କର ମୁଣ୍ଡପାତ କରୁଥିଲେ ।

ସେଦିନ ମାନସ ଆସିଥିଲା । ସୀଜନ୍ ଟିକେଟ୍ ନୁହେଁ, ନିତାନ୍ତ ଗୋଟିଏ ଶସ୍ତା ମାର୍କାର ଦୈନିକ ଟିକେଟ୍ କିଣି ଦୁଇ ତିନି ଘଣ୍ଟା ସମୟ ଭିତରେ ବିରକ୍ତି, କ୍ଳାନ୍ତି ଆଉ ଗ୍ଲାନି ଛଡ଼ା କିଛି ହେଲେ ସଞ୍ଚୟ କରିପାରିନଥିଲା ।

'ମାଛ-ହାଟ' ବୋଲି ଗୋଟିଏ ଚଳନ୍ତି ଭାଷା ଅଛି । ପ୍ରକୃତ ମାଛର ବଜାରରେ ସେହି ଶବ୍ଦଟା ପ୍ରକୃତ ରୂପ ଦେଖିବାକୁ ମିଳେ କି ନାହିଁ କିଏ ଜାଣିଛି, ତେବେ ଏଭଳି ସବୁ ବିରାଟ ବିଶାଳ ସାଂସ୍କୃତିକ ସମ୍ମିଳନୀରେ ସେ ରୂପର କିଛି ଆଭାସ ମିଳେ ।

ବିରକ୍ତ, କ୍ଷୁବ୍ଧ ଏବଂ କ୍ଳାନ୍ତ ମାନସ କୌଣସିମତେ ନରକର ଭିଡ଼କୁ ଆଡ଼େଇ ଟିକିଏ ପବନରେ ଆସି ଠିଆ ହୋଇ ସଶବ୍ଦ ସ୍ୱଗତୋକ୍ତି କରିଥିଲା, ଓଃ ମୋ ହାତରେ ଯଦି ପାୱାର ଥାଆନ୍ତା, ଚଣ୍ଡାଳ ବଡ଼ଲୋକମାନଙ୍କ ଗାଡ଼ିର ମହିମା ଘୁଞ୍ଚାଇ ଦେଇ ଛାଡ଼ିଥାନ୍ତି ।

ହଠାତ୍ ପଛପଟୁ କିଏ ଯେପରି କହିଲା, ବଡ଼ଲୋକଙ୍କ ପ୍ରତି ଆପଣଙ୍କର ମନୋଭାବଟି ତ ବେଶ୍ ପ୍ରଶଂସନୀୟ ।

ମାନସ ଚମକି ପଛକୁ ଚାହିଁଥିଲା । ଦେଖିଥିଲା ସଞ୍ଚାରିଣୀ, ପଲ୍ଲବିନୀ ଏବଂ ଏକାକିନୀ ତରୁଣୀଟିଏ । ଅନ୍ତତଃ ସାଙ୍ଗରେ କାହାକୁ ଦେଖି ପାରି ନ ଥିଲା ସେ । ସମ୍ପୂର୍ଣ୍ଣ ଅଚିହ୍ନା ଏହି ତରୁଣୀଟିର ପ୍ରଗଲ୍‌ଭତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲା

ସେ । କିନ୍ତୁ କଥାରେ ହାରିବାକୁ ରାଜି ହୋଇ ନ ଥିଲା । ଅପରିଚିତା ଝିଅଟି ଯଦି ଏମିତି ଉପରେ ପଡ଼ି କଥା କହିବାକୁ ଆସିବ, ସେ ବା କାହିଁକି ଲଜ୍ଜିତ ହେବ ?

ତେବେ ଝିଅଟା ଯଦି ବଡ଼ଲୋକର ଝିଅ ହୋଇଥାନ୍ତା, ଦିପଦ ଶୁଣାଇ ଦିଆଯାଇ ପାରିଥାନ୍ତା । କିନ୍ତୁ ତା ନୁହେଁ । ନିହାତି ଗରିବ ଏକାବେଳେ ନିରାଭରଣ, ନିର୍ମଳ । ଆଉ କୁହାଯାଇ ନ ପାରେ ବିଧବା ହୋଇଥିବ ! ନଚେତ୍ ଯେତେ ଅଭାବଗ୍ରସ୍ତ ଅବସ୍ଥା ହୋଇଥିଲେ ବି ଏଭଳି ବହୁଜନ ସମାଗମର ସ୍ଥଳକୁ ଆସିବା ସମୟରେ ଟିକିଏ ସାଜସଜ୍ଜା କରିନଥିବ ଏଭଳି ଝିଅ ହୁଅନ୍ତି ନାହିଁ । ନିହାତି ପକ୍ଷରେ କଜ୍ଜଳ ଟିକିଏ ପିନ୍ଧିଥିବ । ସୁନା ନ ଥିଲେ କାଚମାଳୀ, ମାଳୀର ବାଲା ମଧ ଦେହରେ ପିନ୍ଧିଥାନ୍ତା । ଯେମିତି ମାନସର ନିଜର ଭଉଣୀଟା କରୁଛି । ମୁହୂର୍ତ୍ତକ ଭିତରେ ଏସବୁ କଥା ଭାବିନେଲା ଏବଂ ଉତ୍ତର ଦେଲା, ସ୍ୱୀକାର କରୁଛି ଭାରି ଗୋଟାଏ ପ୍ରଶଂସନୀୟ ନୁହେଁ । କିନ୍ତୁ ଆପଣ ମଧ କଣ ଏହି ଗାଡ଼ିବାଲାମାନଙ୍କର ଦୌରାତ୍ମ୍ୟ ଭାରି ପ୍ରୀତି ଚକ୍ଷୁରେ ଦେଖୁଛନ୍ତି ।

ତାମସୀ ଭ୍ରୁଟେକି ଟିକିଏ ଅପୂର୍ବ ହସ ହସି କହିଥିଲା, ଅସହ୍ୟ ! ତା'ପରେ —କାହିଁକି କେଜାଣି ଏଇ ସମ୍ପୂର୍ଣ୍ଣ ଅଜଣା ଅଚିହ୍ନା ଦୁଇଟା ମଣିଷ କଥା ପରେ କଥା ଚଳାଇ ଯାଇଥିଲେ ବେଶ୍ କିଛିକ୍ଷଣ ।

ମାନସ କହିଥିଲା— କି ଭୀଷଣ ଅସନା ଲାଗେ କହିଲେ ସତେ, ଯେତେବେଳେ ବର୍ଷାଦିନରେ ବଡ଼ଲୋକଙ୍କ ଗାଡ଼ି ହତଭାଗ୍ୟମାନଙ୍କର ଲୁଗାପଟାରେ କାଦୁଅ ଛିଞ୍ଚାଡ଼ି ଦେଇ ଚାଲିଯାଏ, ଯେତେବେଳେ ଟ୍ରାମ୍‌ବସ୍ ପାଇଁ ଧାରଣା ଦେଉ ଦେଉ ପୃଥିବୀଟାକୁ ଦାନ୍ତରେ ଛିଣ୍ଡାଇ ଖଣ୍ଡ ଖଣ୍ଡ କରି ପକାଇବାକୁ ଇଚ୍ଛା ହୁଏ, ଯେତେବେଳେ ଗୋଟିଏ ମାତ୍ର ଭାଗ୍ୟବନ୍ତକୁ ଧରି ବିରାଟ ଗୋଟିଏ ଗାଡ଼ି ନାକ ଆଗ ଦେଇ ସାଇଁକିନା ବାହାରିଯାଏ, ଯେତେବେଳେ—

ତାମସୀ ବାଧା ଦେଇ କହି ପକାଇଥିଲା, ଯେତେବେଳେ କଷ୍ଟେମଷ୍ଟେ ଗୋଟିଏ ନିମ୍ନତମ ଦାମ୍‌ର ଶସ୍ତା ଟିକେଟ୍ କିଣି ସାଂସ୍କୃତିକ ଅନୁଷ୍ଠାନ ଦେଖିବାକୁ ଆସି ଖାଲି ଗଦା ଗଦା ଅସଂସ୍କୃତ ଲୋକଙ୍କ ମୁଣ୍ଡ ଛଡ଼ା କିଛି ହେଲେ ନଜରରେ ପଡ଼େନି, ଆଉ ଦେଖିବାକୁ ମିଳେ ବଡ଼ଲୋକଙ୍କ ଦଳ ଦୁଇଶହ ଶହେ ଟଙ୍କାର ସୀଜିନ୍ ଟିକେଟ୍ କରି ସାମନା ସିଟ୍‌ରେ ବସି ପାଖ ଲୋକ ସାଙ୍ଗରେ ଶେୟାର ମାର୍କେଟ୍‌ର ଗଳ୍ପ କରୁଛନ୍ତି । ସେଇୟା ନା ?

ମାନସ ପରିଷ୍କାର ଗଳାରେ କହିଥିଲା, ଠିକ୍ ସେଇୟା । ଆପଣଙ୍କ କଥା ଅବଶ୍ୟ ଜାଣେନି । ହୁଏତ ବଡ଼ଲୋକ– ପ୍ରୀତି ଥାଇପାରେ ଆପଣଙ୍କର । କିନ୍ତୁ ମୁଁ ଘୋଷଣା କରିବାକୁ କୁଣ୍ଠିତ ହେବିନି, ବଡ଼ ଗାଡ଼ିରେ ଚଢ଼ିବା ବଡ଼ଲୋକ ଦେଖିଲାକ୍ଷଣି ମୋ ମୁଣ୍ଡକୁ ରକ୍ତ ଚଢ଼ିଯାଏ ।

ତାମସୀ ହସି ଦେଇଥିଲା । କହିଥିଲା, ଦେଖୁଛି ଆପଣ ମୋ ଦଳରେ । ଅତଏବ ଆପଣଙ୍କ ସହିତ ମନ ଖୋଲି କଥା କହିହେବ ।

କଥା କହିହେବ ! ଶୁଣି ହସ ଲାଗିଥିଲା ମାନସକୁ । ପଥରେ ଦେଖା, ପଥ ଉପରେ ଠିଆହୋଇ ଆଳାପ, ଦୁଇ ମିନିଟ୍ ପରେ କିଏ କେଉଁଠିକି ଚାଲିଯିବ, କିଏ ଜାଣିଛି । ଜୀବନରେ ଆଉ ଦେଖା ହେବାର କୌଣସି ସମ୍ଭାବନା ନାହିଁ । କହୁଛି କଣ ନା ମନ ଖୋଲି କଥା କହିହେବ ।

ବୋଧହୁଏ ମାନସର ଏ ହସ ଦେଖି ପ୍ରେମର ଦେବତା ହସିଲେ । କାରଣ ଯେଉଁ କଥାରେ କିଛି ସମ୍ଭାବନା ନ ଥିଲା ସେଇଟାହିଁ ଘଟିବାକୁ ଲାଗିଲା ସେହି ଆକସ୍ମିକ ଦୈବାତ୍‌ର ପ୍ରକୋପରୁ ।

ତା'ପରେ କେତେଦିନ ଯାଉ ନ ଯାଉଣୁ ପ୍ରେମ ଦାନା ବାନ୍ଧିଲା । ପ୍ରତିଦିନ ଦେଖିବାଟା ଜରୁରୀ ହୋଇପଡ଼ିଲା ।

ମାନସ ଭାବିଲା– ସେ ଗରିବ ବୋଲି ମୋ ଭଳି ହତଭାଗ୍ୟର ମାନସିକ ଅବସ୍ଥା ହୃଦୟଙ୍ଗମ କରିପାରିଛି । ଗରିବର ଜ୍ୱାଳା ଅନୁଧାବନ କରୁଛି । ଆଉ ରୁଚି ମାର୍ଜିତ ବୋଲି, ସେ ଜ୍ୱାଳାକୁ ଫେଣେଇ ଫେଣେଇ ବଢ଼ାଇ ପକାଉନି । ସହଜ ସ୍ୱାଭାବିକ ହୋଇପାରୁଛି । ଗରିବ ହେଲେ ଦୀନ ହୋଇ ଯାଆନ୍ତି ନାହିଁ ।

ନିଜର ଭଉଣୀଟିର କଥା ମନେପଡ଼ିଲା । କି ଦୀନ, କି ଦରିଦ୍ର ! ଅଭାବଟା ଯେପରି ତାର ସମସ୍ତ ସ୍ୱଭାବଟାକୁ ଗ୍ରାସ କରି ପକାଇଛି । ବର୍ତ୍ତମାନ ତାର ଗୋଟିଏ ମାତ୍ର ସ୍ୱଭାବ– ଅଭିଯୋଗ ଜଣାଇବା । ଖାଲି ଭାଇନା କି ମା'ଙ୍କ ଉପରେ ତାର ଅଭିଯୋଗ ନୁହେଁ । ଯେପରି ସମସ୍ତ ପୃଥିବୀ ଉପରେ ରହିଛି ତାର ଅଭିଯୋଗ– ଏପରିକି ବିଧାତାଙ୍କ ଉପରେ ମଧ୍ୟ ।

ଅଥଚ ଏ ଝିଅଟାକୁ ଦେଖ, କି ଅଦ୍ଭୁତ ଜୀବନ ତାର ! ତେବେବେ ହସ ହସ ମୁହଁରେ ସବୁକଥା ମାନି ନେଇଛି ! ଅଥଚ ତାର ଜୀବନ-କଥା ଉଠାଇଲେ

ସେ ଟିକିଏ କରୁଣ ନ ହୋଇ ରହିପାରେନି କିନ୍ତୁ ସେଇଟା ହିଁ ତାର ପ୍ରକୃତି ନୁହେଁ । ତା ପ୍ରକୃତିରେ ଯେପରି ଅପାର ରହସ୍ୟ ରହିଛି, ଯେପରି ଅନନ୍ତ ରସ ।

ମାନସ ତାକୁ ଭଲପାଇଛି । ଭଲପାଇ ଧନ୍ୟ ହୋଇଛି କିନ୍ତୁ ତାକୁ ଏକାନ୍ତ କରି ପାଇବାର ପଥ ଖୋଜି ପାଉନି । ସେ କହିଲା, ତମେ ଭୀରୁ, ତମେ ହିସାବୀ । କହିଲା, ମୁଁ ଯଦି ତମେ ହୋଇଥାନ୍ତି, କେବଠାରୁ ଜଞ୍ଜାଳ ତୁଟାଇ ଦେଇ ସାରିଥାନ୍ତି । ଜଣେ ବୁଢ଼ାର ଖାସ୍ ଚାକରଗିରି କରିବାକୁ ପ୍ରିୟାକୁ ପକାଇ ରଖି ନ ଥାନ୍ତି ।

.କହିଲା, କିନ୍ତୁ ତାର ଆଖିରେ ସେତେବେଳେ ଦୁଃଖର ଛାୟା ପଡ଼ି ନ ଥିଲା ।

ମାନସର ଭଉଣୀ ପରି ଅଭିଯୋଗର ସୁର ବାଜିଲାନି ତା କଣ୍ଠରେ ବରଂ ଗୀତର ଛନ୍ଦ ବାଜିଉଠିଲା, ତା ଆଖିରେ ପକ୍ଷୀର ନୃତ୍ୟର କମ୍ପନ ଲାଗିଲା । ଅଥଚ–

ଉତ୍ତରମୁଖୀ ଦୀର୍ଘ ପଥ । ଯାତ୍ରା କରୁ କରୁ ଉତ୍ତର ଖୋଜି ବୁଲେ ମାନସ ।

ଅଥଚ ଦିନ ତ କଟାଏ ଦାରୁଣ ଯନ୍ତ୍ରଣା ଭିତରେ । ସେହି ନିରୁପାୟତା, ସେହି ହତାଶା ମଝିରେ କିପରି ଉଚ୍ଛୁଳି ଉଠେ ଏହିପରି ପ୍ରାଣୈଶ୍ୱର୍ଯ୍ୟ ! କିପରି ଏଭଳି ଝରଣା ପରି ଝରେ ତାମସୀ !

କଥାଟା ସତ୍ୟ । ଗୋଟାଏ ଗୋଟାଏ ସମୟରେ ଝରଣା ପରି ହିଁ ଝରେ ତାମସୀ । ଯେମିତି ଆଜି । ବସ୍‌ରୁ ଓହ୍ଲାଇଲା ଯେପରି ପବନରେ ପର ଲଗାଇ ଉଡ଼ିଗଲା ପରି । ବହୁତଗୁଡ଼ିଏ ବାଟ ଚାଲିଲା, ଟିକିଏ ସର୍ପିଳ ରାସ୍ତା ବୋଧହୁଏ, ବା ଟିକିଏ ଟିକିଏ ନିର୍ଜନ ନିର୍ଜନ ।

ଆତଙ୍କର ନିର୍ଜନତା ନୁହେଁ, ଆଭିଜାତ୍ୟର ନିର୍ଜନତା । ଏକ ଅଭିଜାତ ଚେହେରାର ଘରେ ଭିତରକୁ ଆସି ପ୍ରବେଶ କଲା ମଧ । ଯେଉଁ ଘରଟି ଦୂରରୁ ଦିନେ ଦେଖାଇ ଦେଇଥିଲା ମାନସକୁ ।

ଗେଟ୍ ପାଖରେ ଭାରି ଟୁଲ୍‌ଟା ଉପରେ ଭାରି ଚେହେରାର ଜଣେ ନେପାଳୀ ଦରୁଆନ୍ ବସିଥିଲା । ତାମସୀକୁ ଦେଖି ଉଠି ଠିଆ ହେଲା, କପାଳରେ ହାତ ଛୁଆଁଇଲା ସେଲ୍ୟୁଟ୍ ଦେବା ଭଙ୍ଗୀରେ । ବଡ଼ଲୋକ ଘରର ନିୟମ । ପବନରେ

ଭାସି ଆସିଥିବା ତାମସୀ ସେହି ସସମ୍ମାନ ଭଙ୍ଗୀ ଟିକକ ଆଡ଼କୁ ଟିକିଏ ଫେରି ଚାହିଁଲାନି ସୁଦ୍ଧା । ପଶିଗଲା ଭିତରକୁ !

ଠିକ୍ ସେତିକିବେଳେ ମାନସ ମଧ ପଶିଲା ତାର ପାଇକପଡ଼ା ଘରର ଦ୍ୱାର ଠେଲି ।

ସଦର ଅନ୍ଦରର ପ୍ରଭେଦବର୍ଜିତ ଦୁଇ ବଖରାର ଘର । ଦୁଆରର ବଙ୍କାଟାକୁ ହଲାଇଲେ କାହାକୁ ପୁଣି କଷ୍ଟ ପଡ଼ି ଆସି ଖୋଲି ଦେବାକୁ ପଡ଼ିବ । ସେଥିପାଇଁ ଖୋଲିବାର କୌଶଳ ଆବିଷ୍କାର କରିଛି ମାନସର ଭଉଣୀ ଅସୀମା । ଭିତରୁ କିଳୁଣୀଟା ଏମିତି ଅଇଗା କରି ଝୁଲାଇ ଦେଇଥାଏ ଯେ, ବାହାରୁ ସାମାନ୍ୟ ଚାପ ଦେଲାକ୍ଷଣି ଖୋଲିଯାଏ ।

ସେଇଥିପାଇଁ ମାନସ ଘରକୁ ଫେରିଲେ କେହି ସସମ୍ମାନ ଭଙ୍ଗୀରେ ଅଭ୍ୟର୍ଥନା କରିବାକୁ ଉଠି ଠିଆ ହେଲେନି । ଖାଲି ରନ୍ଧାଘରଆଡୁ ମାନସର ମା ସୁରମାଙ୍କ ଗଳାର ଶବ୍ଦ ଶୁଭିଲା, କିଏ ରେ ?

ସେ ନିଶ୍ଚିତ ରୂପେ ଜାଣିଥିଲେ ଯେ ମାନସ ଛଡ଼ା କେହି ନୁହନ୍ତି, କେହି ଆସନ୍ତି ନାହିଁ । ତେବେକେ ଏକାବେଳେ ନିଶ୍ଚିନ୍ତ ହେବା, ଟିକିଏ ସତର୍କତାର ଭୂମିକା ନେବାଟା ହୁଏ ।

ମାନସ କହିଲା, ମୁଁ ।... ତାପରେ ଆଗେଇଗଲା ଟିଣର ଶେଡ଼ ଦିଆଯାଇଥିବା ଝୁମ୍ପୁଡ଼ି ବାଥ୍ରୁମଟା ଆଡ଼କୁ ।

ଅଫିସ-ଫେରନ୍ତା ବସ୍‌ର ଭିଡ଼କୁ ଠେଲି ସେମାନଙ୍କର ସେହି ସ୍ୱର୍ଗଭୂମିକୁ ଗଲାବେଳେ ଢଳି ଆସୁଥିବା ବେଳାର ତାତିଟା ମଧ ମଳୟ ପବନ ଭଳି ଜଣାପଡ଼େ, କିନ୍ତୁ ଫେରିବାବେଳେ ଅନୁଭୂତ ହୁଏ । ଅନୁଭୂତ ହୁଏ ଭିଡ଼ ଜିନିଷଟା କି କଦର୍ଯ୍ୟ ।

କଦର୍ଯ୍ୟ । ସବୁ ଭିଡ଼ ତ କଦର୍ଯ୍ୟ । ମଣିଷର ଭିଡ଼ ଛଡ଼ା ମଧ୍ୟ ଆହୁରି କେତେ ଭିଡ଼ ଅଛି । ସବୁ କଦର୍ଯ୍ୟ, କୁତ୍ସିତ ।

ଆଉ ଏତେ ଭିଡ଼ ଅଛି ମଧ ଏ ଜଗତରେ । ଦୋକାନର ଭିଡ଼, ଗାଡ଼ିର ଭିଡ଼, ଆଲୋକର ଭିଡ଼ । ଦିନ-ଯାପନ ଆଉ ଜୀବନ-ଧାରଣର ଲକ୍ଷ ଉପକରଣକୁ କେନ୍ଦ୍ର କରି ଲକ୍ଷ ଲକ୍ଷ ରକମର ବସ୍ତୁର ଭିଡ଼ । ମଣିଷକୁ ଯେପରି ଗୋଡ଼ାଇ

ଆସୁଛି । ପେଷି ମାରିଦେବାକୁ ଚାହିଁଛି । ସେହି ଅଶୁଚିକର ଭିଡ଼ର ଆକ୍ରମଣର ହାତରୁ ନିସ୍ତାର ନାହିଁ ।

ମଣିଷର କାହିଁକି ଏତେ ଉପକରଣ ଲାଗେ ? ହାଲୁକା ହେବାକୁ ଇଚ୍ଛା ହୁଏ ନାହିଁ ? ସହଜରେ ମନେ ହୁଏ କଦର୍ଯ୍ୟ । ସେହି କଦର୍ଯ୍ୟ ଭିଡ଼ ଚାପରେ ଯେପରି ମୁଣ୍ଡ ଭିତରେ ସୂକ୍ଷ୍ମ ସ୍ନାୟୁଗୁଡ଼ିକ ବିତୃଷ୍ଣାରେ ତିକ୍ତ ହୋଇଯାଆନ୍ତି, ସେତେବେଳେ ମୁଣ୍ଡ ଉପରେ ପାଣି ଢାଳିବାର ପ୍ରୟୋଜନ ହୁଏ ! ପ୍ରଚୁର ଜଳ ।

କିନ୍ତୁ ଅଭାବଗ୍ରସ୍ତ ଘରେ ଜଳର ପ୍ରାଚୁର୍ଯ୍ୟ କାହିଁ ? ନାହିଁ । ପର୍ଯ୍ୟାପ୍ତ ପରିମାଣର ଜଳ ନ ଥାଏ । ପାଣିକୁଣ୍ଡର ତଳକୁ ରହିଥିବା ତଳିତଳିଆ ପାଣି ଟିକିଏ । ଗାମୁଛାଟା ବୁଡ଼ିବକି ନାହିଁ ସନ୍ଦେହ । ଉପରଓଳି କୁଣ୍ଡର ପାଣିକୁ ଛାଡ଼ିଦେଇ ସଜ ପାଣି ଭର୍ତ୍ତି କରିବାର ବିଳାସିତା କରିବାକୁ ସାହସ କାହିଁ ? ଯଦି ସେଇ ମହାମୁହୂର୍ତ୍ତରେ ହିଁ ପାଣିଟା ବନ୍ଦ ହୋଇଯିବ ! ହୋଇଯାଇପାରେ, ଆଉ ଭର୍ତ୍ତି ନ ହୋଇ ମଧ୍ୟ ।

ଶୋଇବା ଘରର ଥାକରୁ ସାବୁନଟାକୁ କାଢି ନେଉ ନେଉ ମାନସ ଭାବିଲା, —ନା, ସେତେବେଳେ ତାମସୀର କଥା ଭାବିଲାନି । ଭାବିଲାନି ଭବିଷ୍ୟତ୍‌ର କଥା, ଏହି ତୁଚ୍ଛ ଜୀବନ ପରିକ୍ରମାରୁ ମୁକ୍ତି ପାଇବାର କଥା ମଧ୍ୟ ଭାବିଲା ନାହିଁ । ଖାଲି ଭାବିଲା, ହେ ଈଶ୍ୱର, କୁଣ୍ଡରେ ଯେପରି ଟିକିଏ ବେଶି ପାଣି ଥାଉ ।

ଗାଧୁଆ ଘରେ ସାବୁନ ରଖିଲେ କେତେ ସୁବିଧା, କିନ୍ତୁ ରଖିବାର ଉପାୟ ନାହିଁ । ସେଠାରେ ସାବୁନ୍ ରଖିଲେ ମୂଷା ନେଇଯାଆନ୍ତି, ଅସରପା ଖାଇଦିଅନ୍ତି, ଚାକରାଣୀମାନେ ଚୋରି କରନ୍ତି, ନେଇଯାଆନ୍ତି । ଅତଏବ ଏହି ସାବଧାନତା ନେବାକୁ ହୁଏ । ସମୟ ସମୟରେ ଯେପରି ଧିକ୍‌କାର ଆସେ । ଆଉ ମନେହୁଏ ଏ ଜୀବନ ସହିତ ଆଉ ଗୋଟିଏ ଜୀବନକୁ ଜଡ଼ିତ କରିବାର ସ୍ୱପ୍ନ ଦେଖୁଛି ସେ କେଉଁ ଲଜ୍ଜାରେ ?

ତାମସୀ ମଧ୍ୟ ଗରିବ ଏକଥା ସତ । କିନ୍ତୁ ଦାରିଦ୍ର୍ୟର ଏହି ରୂଢ଼ ଚେହେରା କଣ ଦେଖିଛି ସେ ? ଯାହାହେଲେ ବି ବଡ଼ଲୋକ ଘରର ଆଶ୍ରିତ । କେତେଗୁଡ଼ିଏ ସୁବିଧା ନିଶ୍ଚୟ ପାଇବ । ତା ଛଡ଼ା ସେ ଏକୁଟିଆ । ତାର ଉପାର୍ଜନ ତା ନିଜର । ମାନସ ପରି ସଂସାର ନିକଟରେ ବିକ୍ରୀତ ନୁହେଁ ତାମସୀ ।

ଯଦିଚ ସେ ବଳିଷ୍ଠ ଭରସା ଦିଏ ମାନସକୁ, ଯଦିଚ କହେ ସେହି ସୁନାର ପଞ୍ଜୁରିର ଆଶ୍ରୟରେ ରହି ଦମ୍ ବନ୍ଦ ହୋଇଯାଉଛି ତାର, ତେବେବେ ମାନସ ଜାଣିଛି ନିତ୍ୟ ଅଭ୍ୟାସର ଟିକିନିଖି ଜିନିଷଗୁଡ଼ାକ ବହୁତ ସର୍ବନାଶକାରୀ। ତାର ତ୍ରୁଟିରେ ମଣିଷର ଧୈର୍ଯ୍ୟଚ୍ୟୁତି ଘଟେ। ବରଂ ବଡ଼ ଏକ ତ୍ୟାଗ କରିପାରିବ ମଣିଷ ପ୍ରେମର ଦାୟରେ, କର୍ତ୍ତବ୍ୟର ଦାୟରେ, ମହତ୍ ହେବାର ଦାୟରେ, କିନ୍ତୁ ସେହି ଛୋଟ ଛୋଟ ଅଭ୍ୟାସଗୁଡ଼ାକୁ ଟାଣି ତଳକୁ ଓହ୍ଲାଇ ଆଣିପାରେ। ତାକୁ, ସେହି ତଳକୁ ଓହ୍ଲାଇ ଆସିଥିବା ତାମସୀର ଚେହେରାଟା କେମିତି ହୋଇଯିବ ?

କିନ୍ତୁ ତାମସୀ କଣ ଆଉ ସମସ୍ତଙ୍କ ଭଳି ହେବ ? ନା, ନା, ତାମସୀ ଓହ୍ଲାଇବନି। ଦୈନନ୍ଦିନ ଜୀବନର ତୁଚ୍ଛତା ଓ ଗ୍ଲାନି ସ୍ପର୍ଶ କରିପାରିବନି ତାମସୀକୁ। ସମୟ ସମୟରେ ଏକଥା ଭାବିଛି ମାନସ। ଯେତେବେଳେ ଆଶାବାଦୀ ମନ ସବୁକୁ ଉଜ୍ଜ୍ୱଳ ଦେଖେ, ଭାବେ ହୁଏତ ତାମସୀ ଆପଣା ମହିମାରେ ସ୍ଥିର ରହିବ। ରହି ପାରିବ; ତାର ପ୍ରେମ ତାକୁ ଉର୍ଦ୍ଧ୍ୱରେ ରଖିବ।

କିନ୍ତୁ ସେ ଭାବନାର ଚେର ମାଟି ପାଇ ନାହିଁ।

କେମିତି ହେବ ? ମାନସର ହାତରେ ହାତ ମିଳାଇଲେ ତାମସୀକୁ ତ ଏହି ଘରକୁ ହିଁ ଆସିବାକୁ ପଡ଼ିବ ! ଯେଉଁ ଘରର ଗାଧୁଆ ଜାଗାରେ ସାବୁନ୍ ରଖିଲେ ଚୁଚୁନ୍ଦ୍ରା ନେଇଯାଆନ୍ତି, ଅସରପାମାନେ କୋରି କୋରି ଖାଆନ୍ତି, ଚାକରାଣୀମାନେ ଚୋରି କରନ୍ତି।

ଆଉ ଯେଉଁଠାରେ ନିତ୍ୟସଙ୍ଗିନୀ ଦୁଇଟି ମହିଳା ଭିତରେ ଜଣେ ସମସ୍ତ ପୃଥିବୀ ପ୍ରତି ଏକ ଆକ୍ରମଣାତ୍ମକ ଭଙ୍ଗୀ ନେଇ ସର୍ବଦା ଅଭିଯୋଗର ଢେଲା ଉଞ୍ଚାଇ ବସିଥାଏ। ଆଉ, ଅନ୍ୟଜଣକ ଜଗତର ସବୁଥିକୁ ପରମ ମୂଲ୍ୟବାନ୍ ପରମ ମୂଲ୍ୟବାନ୍ ଭାବି ଅପଚୟର ଚୋରା ଦୁଆର ବନ୍ଦ କରିବାର ଆପ୍ରାଣ ଚେଷ୍ଟାରେ ଅହରହ ପ୍ରାଣଟାକୁ ଶେଷ କରି ଦେଉଥାଏ। ମମତା-ବାସନା, ସଉକ ଆହ୍ଲାଦ ଇତ୍ୟାଦି କୌଣସି ଭାବପ୍ରବଣତା ହିଁ ଠିଆହେବାକୁ ସ୍ଥାନ ପାଏ ନାହିଁ। ରୁକ୍ଷ ଶୁଖିଲା କାଠ ପରି ଗୋଟାଏ ଚେହେରା ଧରି ସେ ଅବିରାମ ସେହି ଖଟଣୀ ଖଟି ଚାଲିଛନ୍ତି ଯେ ଖଟଣୀର ବିନିମୟରେ ଗୋଟିଏ ନୂଆପଇସା ଯେମିତି ରହିଯାଏ। ମାନସର, ଅସୀମାର ଅଥବା ତାର ସାନ ଦିଇଟା ଭାଇଙ୍କ ଭିତରେ

କାହାରି କୌଣସି ଅସାବଧାନତାରେ ଯଦି ଗୋଟିଏ ନୂଆପଇସା ନଷ୍ଟ ହୋଇଯାଏ ତ ସୁରମା ପାଗଳପରି ଉନ୍ମତ୍ତ ହୋଇଯାଆନ୍ତି ।

ସେହି ଉଗ୍ର କଟୁ ନିର୍ଲଜ୍ଜତା ଆଗରେ ଠିଆ ହେଲେ ହଠାତ୍ ମନେ ହୁଏ ମଣିଷ କେତେ ଆଶାବାଦୀ ! ଅନ୍ତତଃ ମାନସର ଅଜା-ଆଈଙ୍କ କ୍ଷେତ୍ରରେ ସେଇଟା କେତେ ପ୍ରଯୁଜ୍ୟ ! କି ଏକାନ୍ତ ବିଶ୍ୱାସର ଆନନ୍ଦରେ ହିଁ ସେମାନେ ତାଙ୍କର ଝିଅର ଜନ୍ମ ସମୟରେ ନାମକରଣ କରିଥିଲେ ସୁରମା !

ସେଇ ସୁରମାଙ୍କ ପାଖକୁ ଆସିବାକୁ ପଡ଼ିବ ତାମସୀକୁ । ରହିବାକୁ ପଡ଼ିବ । ତାମସୀ ଯଦି ଦୈବାତ୍ କୌଣସି ଦିନ ପତ୍ରରେ ଦିଇଟା ଭାତ ଛାଡ଼ିଦେବ, ସୁରମାଙ୍କର ସେ ଅଗ୍ନି ମୂର୍ତ୍ତି ଆଗରେ ପଡ଼ିବାକୁ ହେବ ତାକୁ । ତାମସୀ ଯଦି କୌଣସି ଦିନ ବରାଦ ହୋଇଥିବା ପରିମାଣର ଅତିରିକ୍ତ କପେ ଚା ପିଇବ, ସୁରମା କାନ୍ଥକୁ ଶୁଣାଇ ଶୁଣାଇ ତୀକ୍ଷ୍ଣ ମନ୍ତବ୍ୟ କରିବେ— ଦୋକାନରେ ଆଜିକାଲି ଚା-ପତ୍ର ବାଣ୍ଟୁଛନ୍ତି କି ନାହିଁ, ଆଉ ରେଶନ୍‌ରେ ଚିନିର ପରିମାଣ ବଢ଼ାଇଛନ୍ତି କି ନାହିଁ । ମାନସ ଅଭାବଗ୍ରସ୍ତ । କିନ୍ତୁ ସୁରମାଙ୍କର ସ୍ୱଭାବ ସେହି ଅଭାବକୁ ନିର୍ଲଜ୍ଜ ପ୍ରକାରରୂପ ଦେଇ ରଖିଛି । ସୁରମାଙ୍କର ସ୍ୱଭାବ ଦୋଷରେ ସଂସାରର ଅନ୍ୟ ସଦସ୍ୟମାନଙ୍କ ସ୍ୱଭାବ ବିଗିଡ଼ି ଯାଉଛି । ଅସୀମା ଆଉ ସାନ ପୁଅ ଦିଇଟାରେ ତ ମିଛ କଥା ଜିଭ ଅଗରେ ଲାଗି ରହିଛି ।

ଆଉ ମାନସର ? ମାନସର ମଧ କଣ ? ମାନସ ତାର ନିଜର ଟଙ୍କା ନିଜେ ଚୋରି କରିବା ଶିଖୁଛି । ଅଫିସର ଦରମା ବଢ଼ିବା କଥା ଲୁଚାଇ ରଖିଛି । ଲୁଚାଇ ରଖିବାକୁ ଚେଷ୍ଟା କରୁଛି ସକାଳଓଳି ଆଉ ଗୋଟିଏ ଟିଉସନ୍ କରୁଥିବା କଥା ।

ମା କହିଲେ, ତୋର ଏତେ ଡେରି ହେଲା ଯେ ? ଗାଧୋଇବାକୁ ଖାଇବାକୁ ସମୟ ହେଉନି ! କେତେଘଣ୍ଟା ଲେଖାଏ ପଢ଼ାଉଛୁ ?

ମାନସ ବ୍ୟସ୍ତତା ଦେଖାଇ କହିଲା, ପିଲାଟାର ପରୀକ୍ଷା ହେଉଛି ।

ଏ ମା ! ଏବେ ପୁଣି କି ପରୀକ୍ଷା ମ ?.... ସନ୍ଦେହର ସୁର ବାଜେ ସୁରମାଙ୍କ କଣ୍ଠରେ । ମାନସ ସେ ସନ୍ଦେହ ଦୂର କରିଦିଏ— ଆଉ କହନି ମା, ଆଜିକାଲି ଯାହା ହୋଇଛି । ଗୋଟା ବର୍ଷଟାଯାକ ପରୀକ୍ଷା । ପରୀକ୍ଷାର ମା-ବାପା ନାହାନ୍ତି ।

ଏସବୁ କଥା ମଧ୍ୟ ତ ଶୁଣିପାରିବ ତାମସୀ ? ଏଭଳି ମନଗଢ଼ା କଥା ? କଣ ଭାବିବ ମାନସକୁ ? କେତେ ନୀଚ, କେତେ ଛୋଟ !

କିନ୍ତୁ ମାନସ କଣ ସତରେ ସେଇୟା ? ନା, କଦାପି ନୁହେଁ । ଖାଲି ଏହି ଘରର ସୀମା ଭିତରକୁ ଆସି ପାଦ ରଖିଲାକ୍ଷଣି ମାନସ ବଦଳିଯାଏ । ଅଥଚ ଘରର ବାହାରେ ପାଦ ପକାଇଦେଲେ ଯେପରି ଅନ୍ୟ ଏକ ଜଗତର ପବନ, ଅନ୍ୟ ଏକ ଜଗତର ମଣିଷ । ସେହି ବାହାରର ମୁଁ ବୋଧହୁଏ ପ୍ରକୃତ ମୁଁ । ଯେଉଁ ମାନସ କି ଭଲପାଇପାରେ, ଭଲପାଇବାକୁ ଗ୍ରହଣ କରିପାରେ । ସେହି ମାନସକୁ ହିଁ ତ ଦେଖିଛି ତାମସୀ ! ସେ ଦେଖାର ଆଖି ଦୁଇଟିକୁ ନେଇ ସେ ଯେତେବେଳେ ଘରର ସୀମା ଭିତରର ମାନସକୁ ଦେଖିବ ! ଧିକ୍କାର କରି କହିଉଠିବ କି— ତମେ ଏଇୟା ? ତମର ଛଦ୍ମବେଶ ଦ୍ୱାରା ତମେ ମତେ ଭୁଲାଇଛ !

ଗାଧୁଆଘରେ ଯଥାରୀତି କେତେ ଢାଳ ପାଣି ଥିଲା । ମାନସର ଇଚ୍ଛା ହେଲା ବାହାରି ଯିବାକୁ ତୀରବେଗରେ, ବାହାରି ଦେଖିବ, କେଉଁଠି କେଉଁ ଜାଗାରେ ପୋଖରୀଟିଏ ଅଛି କି ନାହିଁ । କେତେ ମିନିଟ୍ ଭାବିଲା । ତା'ପରେ ଇଚ୍ଛାକୁ ଦମନ କରି ସେହି ତଳିତଲିଆ ପାଣି ଟିକକ ସେହି ତିନିମଗ୍ ପାଣିରେ ଗାଧୁଆ ଭିତରେ କଣ ସମୟର ଜ୍ଞାନ ହଜାଇ ଦେଇଥିଲା ମାନସ ? ନ ହେଲେ ସୁରମା କାହିଁକି ହଠାତ୍ ରନ୍ଧାଘରୁ ବାହାରିଆସି ତୀବ୍ର ପ୍ରଶ୍ନ କଲେ— କିହେ ନବାବ୍ ପୁଅ, ଆଜି କଣ ଖିଆପିଆ ହେବନି ? ରାତିଟାଯାକ ହାଣ୍ଡି ଧରି ବସିଥିବି ।

ତରବର ହୋଇ ବାହାରିଆସିଲା ମାନସ । ଖାଇ ବସିଲା ।

ଆଉ ଭାତ ଦେଇସାରି କଥାଟା ପକାଇଲେ ସୁରମା । ଅଫିସ୍-ଫେରନ୍ତା ସବୁଦିନ କେଉଁଠାକୁ ଯାଉଛୁ ?

ମାନସ ଗମ୍ଭୀର ଭାବରେ ଡାଲି ଗୋଳାଉ ଗୋଳାଉ କହିଲା, କହିଛି ତ !

ହଁ, ସେଇ ଦିନଟେ କହିଥିଲୁ ସାଙ୍ଗ ଆସୁଛି, ଗପ କରୁଛୁ । ହେଲେ ତାର କଣ ଆଉ କାମ ନାହିଁ ? ସବୁଦିନ ଆସି ବସିଥାଏ ?

ବସିଥାଏ ତ । କାମ ସାରି ଆସେ ।... କହି ମାନସ ପାଣି ଗିଲାସରେ ମନ ସଂଯୋଗ କରେ ।

ଏଥର ମଞ୍ଚରେ ଆବିର୍ଭୂତ ହେଲା ଅସୀମା । ସାନ କାଚ ପ୍ଲେଟ୍‌ଟିରେ ଟିକିଏ ଆଚାର ଆଣି ଭାଇନା ମୁହଁ ଆଗରେ ଧରାଇ ଦେଇ ମା'ଙ୍କୁ ଲକ୍ଷ୍ୟ କରି କହିଲା,

ପଚାର ତ ମା ବନ୍ଧୁ ନା ବାନ୍ଧବୀ ? ଭଟ୍ଟାଚାର୍ଯ୍ୟ କକେଇଙ୍କ ପୁଅ ପିଣ୍ଟୁ ଭାଇନା କହୁଥିଲା ପ୍ରତିଦିନ କୁଆଡ଼େ ସ୍ତ୍ରୀ ଲୋକଟିଏ—

ହଠାତ୍ ଅସୀମାର ମୁହଁର କଥା ମୁହଁରେ ହିଁ ସ୍ତବ୍ଧ ହୋଇଗଲା । ସୁରମା ଚମକି ପଡ଼ିଲେ । ଏକାବେଳେ ସ୍ୱଭାବ-ବହିର୍ଭୂତ ଗଳାରେ ଚିତ୍କାର କରିଉଠିଲା ମାନସ, ଚୁପ୍ ।

ଭାଇନାଙ୍କ ଧମକ ! ରଡ଼ି ଛାଡ଼ି ।

ଅସୀମାର ବାକ୍ୟ ହଜିଗଲା । କେତେ ଥର ଯାଠାରୁ କେତେ ଉଦ୍ଧତ ଆଉ ଧୃଷ୍ଟ ଉକ୍ତି କରିଛି ଅସୀମା, ଏତେ ବଡ଼ ଧମକ ତ ଖାଇନି କେବେ ?

ମାନସର କଣ ତାହେଲେ ଏହି ଚିତ୍କାର କରିଥିବା ପାଇଁ ଲଜ୍ଜିତ ହେବା ଉଚିତ ଥିଲା ? ଟିକିଏ ବା କୁଣ୍ଠିତ ? ହୁଏତ ସେଇୟା ଥିଲା । କିନ୍ତୁ ତାହା ହୁଏନି ମାନସ । ରୀତିମତ ଚଢ଼ା ଗଳାରେ ପୁଣି କହିଲା, ହଁ ସେଇୟା ! ସେଥିପାଇଁ ତୁ କଣ କରିବୁ ? ଫାଶିର ହୁକୁମ୍ ଦେବୁ ? କେବେ କିଛି କହୁନି ବୋଲି ଦୁଃସାହସଟା ବହୁତ ବଢ଼ିଯାଇଛି ତୋର । ବେଶ୍, ସ୍ପଷ୍ଟ କଥା ଶୁଣିବାକୁ ଚାହୁଁଛୁ ତ କହି ଦେଉଛି, ହଁ ବାନ୍ଧବୀ । ଆଉ ତା ସହିତ ବାହାଘର ଠିକ୍ ହୋଇଯାଇଛି ମୋର ।

କଥାଟା ଅସୀମାକୁ ଉପଲକ୍ଷ୍ୟ କରି ବୋଧହୁଏ ସୁରମାଙ୍କୁ ହିଁ କୁହାହେଲା । ହଁ ସେଇୟା । ମାନସ ଭାବିଲା ଠିକ୍ ହୋଇଛି । ଶାପଟା ବର ପାଲଟିଛି । ମା'ଙ୍କ ମୁହଁ ଆଗରେ ଏହି ମାରାତ୍ମକ ସମ୍ବାଦଟା ଦେବାକୁ ହୁଏତ ଅନେକ ଭାବିବାକୁ ପଡ଼ିଥାନ୍ତା ମାନସକୁ, ଅନେକ ପ୍ରସ୍ତୁତିର ପ୍ରୟୋଜନ ହୋଇଥାନ୍ତା । ଏଇଟା ଚଟ୍‌କିନା ହୋଇଗଲା । ଅପ୍ରତ୍ୟାଶିତ ଭାବରେ ଟେକା ଫୋପାଡ଼ିବା ପରି ହେଲା ସତ, କିନ୍ତୁ ଉପାୟ କଣ ?

ମାନସ ଗୋଟିଏ ମଣିଷ । ଯନ୍ତ୍ର ନୁହେଁ । ତାର ମନ-ପ୍ରାଣ ଅଛି, ସୁଖ-ଦୁଃଖ ବୋଧ ଅଛି, ଅଛି ଆଶା ଓ ଆକାଂକ୍ଷା । ଆହୁରି ପାଞ୍ଚଜଣ ମଣିଷଙ୍କ ପରି ତ ଅଛି । ତମେମାନେ ଯଦି ସେ କଥାଟା ଭୁଲି ଯାଇଥିବ, ଆଘାତ ନିଶ୍ଚେ ଟିକିଏ ପାଇବାକୁ ହିଁ ହେବ । ହେଲେ ମାତ୍ର ପାଞ୍ଚ ମିନିଟ୍ ଆଗରୁ କଣ ସେ ଭାବି ପାରିଥିଲା ଏହି ସିଦ୍ଧାନ୍ତରେ ପହଞ୍ଚିବ ସେ ? ବିବାହର ସ୍ୱପ୍ନ ଦେଖିବ ? ତାମସୀକୁ ବିବାହ କରିବାର ସ୍ୱପ୍ନ ।

ନା ଭାବି ନ ଥିଲା । ବରଂ ଠିକ୍ ଓଲଟା ହିଁ ଭାବୁଥିଲା ଏତେ ସମୟ ହେଲା । ଭାବୁଥିଲା କାଲି ତାମସୀକୁ କହିଦେବ, ତାମସୀ ଇଟରୀରେ ଫାର୍ଷ୍ଟ ପ୍ରାଇଜ୍ ପାଇବା ଛଡ଼ା ବାହାହେବାର ଆଉ କୌଣସି ପଥ ନାହିଁ ମୋର । ଏବଂ ସେଇଟା ପାଇବିନି । ଅତଏବ— ହଁ, ଯେତେ ମର୍ମଘାତୀ ହେଲେ ମଧ୍ୟ କଥାଟା କହିବାକୁ ହିଁ ପଡ଼ିବ, ଅତଏବ— ଏ ପରିଚ୍ଛେଦର ଇତି କରିଦିଅ । ମୋ ଭଳି ହତଭାଗ୍ୟର ଜୀବନ ସହିତ ଜଡ଼ିତ କରି ତମର ଭବିଷ୍ୟତ୍ ନଷ୍ଟ କରନି ।

ଗାଧୁଆଘରେ ଏକଥା ସେ ଭାବୁଥିଲା । ହଠାତ୍ କେମିତି କଣ ହୋଇଗଲା । କଥାଟା କୁହା ହୋଇଥିଲା ଅସୀମାକୁ । କିନ୍ତୁ ସୁରମାଙ୍କର ବୁଝିବାକୁ ଡେରି ହେଲାନି ଲକ୍ଷ୍ୟଟି କିଏ । ସେଥିପାଇଁ ଦୁଇ ମିନିଟ୍ ଖଣ୍ଡେ ସ୍ତବ୍ଧ ରହି ସେ କହିଉଠିଲେ, ତା ସହିତ ତୋର ବାହାଘର ଏକାବେଳେ ଠିକ୍ ହୋଇଯାଇଛି । ମତେ ବୋଧହୁଏ ଥରେ ହେଲେ କହିବା ଦରକାର ବୋଲି ମନେ କରି ନାହୁଁ ?

ମାନସ ଶାନ୍ତ କଣ୍ଠରେ କହିଲା, ସମୟ ହୋଇଥିଲେ କହିଥାନ୍ତି ।

ଓଃ, ଏକାବେଳେ ବରଣଡାଲା ସଜାଇବାର ହୁକୁମ୍ ? ତା ଆଗରୁ ସମୟ ହେବନି ? ସେଇୟା ନା ?

ମାନସ ଆହୁରି ଅଧିକ ଶାନ୍ତ ଆଉ ସଂକ୍ଷେପରେ କହିଲା, ବରଣଡାଲା ସଜାଇବାକୁ ପଡ଼ିବନି । ରେଜିଷ୍ଟ୍ରୀ କରିହେବ ।

ସୁରମା ଆହୁରି ଥରେ କାଳିବୋଳା ମୁହଁରେ କହିଲେ, ସେଇୟା ଭଲ । କାହିଁକି ପରାଧୀନତା ଭିତର ଦେଇ ବା ଯିବ ? କିନ୍ତୁ ଏ ଟିକକ ତ ନ କହି ରହି ପାରୁନି ବାପା, ଭଉଣୀର ବାହା ନ ଦେଇ ନିଜେ ବାହା ହୋଇ ସଂସାର କରି ବସିବା ନ୍ୟାଯ୍ୟ କି ନୁହେଁ ଟିକିଏ ଭାବି ଦେଖିବା ପରି ସଭ୍ୟତା ମଧ୍ୟ ଆଉ ତୋର ନାହିଁ ? ଏମିତି ପାଗଳ ହୋଇଯାଇଛୁ ?

ମାନସ କଣ ଏବେ ସୁଦ୍ଧା ତୁନି ହୋଇଯିବନି ? କେବେ ମାନସ ମା'ଙ୍କର କଥା ଉପରେ କଥା କହିଛି ? ସୁରମା ଯେତେ ଅନ୍ୟାୟ କଥା କହନ୍ତୁ ପଛକେ, କେବେହେଲେ ପ୍ରତିବାଦ କରିନି ମାନସ । ତୁନି ହୋଇ ରହିଛି । ହୁଏତ କରୁଣାରେ, ହୁଏତ ବା କହିବା ନିଷ୍ଫଳ ହେବ ଜାଣି । କିନ୍ତୁ ଆଜି ମାନସକୁ ଯେମିତି ଭୂତ ଲାଗିଛି ।

ଅକାରଣରେ ସିନେମାର ଦୁଇଟା ଦାମୀ-ଆସନର ଟିକେଟ୍ କିଣି ପକାଇ କଣ ଏବେ ଅନୁତାପ ହେଉଛି ମାନସର ? ନା କଣ ଆଶାଭଙ୍ଗର ବେଦନା ?

ମାନସ କଣ ଭାବିଥିଲା ଟିକେଟ୍‌ଟା ଦେଖିଲାକ୍ଷଣି ତାମସୀ ଆହ୍ଲାଦରେ ଉଚ୍ଛୁଳି ଉଠିବ ? ଏହି ପ୍ରଥମ କରି ମାନସ ସଙ୍ଗେ ପାଖାପାଖି ହୋଇ ବସି ସିନେମା ଦେଖିବାର ଆହ୍ଲାଦ, ଦାମିକା ସିଟ୍‌ରେ ବସିବାର ଆହ୍ଲାଦ ସେଇଟା ଠିକ୍‌ରୂପେ ହେଲାନି ବୋଲି ? ସୁରଟା ବେସୁରା ହୋଇଗଲା ବୋଲି ? କିନ୍ତୁ କଣ କଥାଟା ସେଇୟା ? ତାମସୀ ତ ପୁଣି ବୀଣାଟିକୁ ହାତରେ ଟେକି ନେଇଥିଲା, ପୁଣି ସେଇଟା ଠିକ୍ ସୁରରେ ବାନ୍ଧି ପକାଇଥିଲା, ଠିକ୍ ତାରରେ ଝଙ୍କାର ତୋଳିଥିଲା ।

ନାଃ, ତାମସୀ ପାଇଁ ନୁହେଁ ।

ମାନସ ଭାବି ଦେଖିଲା, ଏହିପରି ହିଁ ହୁଏ । ପ୍ରାୟ ହୁଏ । ଆଶ୍ଚର୍ଯ୍ୟ ! ସେହି ରହସ୍ୟର ଅର୍ଥ ଖୋଜିପାଏ ନାହିଁ ମାନସ । ଯେଉଁଦିନ ମନଟା ସବୁଠାରୁ ଅଧିକ ଖୁସୀରେ ଝଳ ଝଳ ହୁଏ, ଯେଉଁଦିନ ସେ ମନ ପବନ ପରି ହାଲୁକା ହୋଇ ଭାସିଉଠେ, ଠିକ୍ ସେହିଦିନ ହିଁ ଘରକୁ ଫେରି ମନଟା ବିଗିଡ଼ିଯାଏ ।

ଘର ଭିତରକୁ ପଶିବାକୁ ପଡ଼େନି । ଗଳିର ବୁଲାଣିରେ ପାଦ ପକାଇବା ସଙ୍ଗେ ସଙ୍ଗେ ମନ ଗୋଟାଏ ଘନ ବିସ୍ୱାଦ ସ୍ୱାଦରେ ଭରିଉଠେ ।

ଘରେ ପଶି କିଛି ଭଲ ଲାଗେନି । ମା ଯେତେବେଳେ ଅନୁଯୋଗର ପ୍ରଶ୍ନ ଉଠାନ୍ତି– ଅଫିସ୍ ଫେରନ୍ତା ଆଡ୍‌ଡ଼ା ମାରି ରାତି ବେଶୀ ହେଲେ ଘରକୁ ନ ଫେରି ସାନ ଭାଇ ଦୁଇଟାକୁ ପଢ଼ାପଢ଼ି କରାଉଥିଲେ ବୁଦ୍ଧିମାନର କାମ ହୁଅନ୍ତା କି ନାହିଁ । ସେମାନେ 'ଅଖାଦ୍ୟ' ହୋଇଗଲେ ଶେଷକୁ ମାନସ ନିଜେ ଦୁର୍ଗତି ଲଭିବ କି ନାହିଁ । ସେତେବେଳେ ମାନସର ଇଚ୍ଛା ହୁଏ ଧାଇଁ ପଳାଇ ଯାଆନ୍ତା ଏ ଘରୁ । ଏମାନଙ୍କୁ ଶତ୍ରୁ ବୋଲି ମନେହୁଏ । ଆହୁରି ଅନେକ କିଛି ହୁଏ । କିନ୍ତୁ ଏଭଳି ଧୈର୍ଯ୍ୟଚ୍ୟୁତି ଘଟି ନ ଥିଲା କୌଣସି ଦିନ । ସବୁବେଳେ ଚୁପ୍‌ଚାପ୍ ରହି ଶୁଣୁଥିଲା, ଶୋଇବା ଘରୁ ସାବୁନ ନେଇ ଯାଇ ଗାଧୁଆ ଘରେ ପଶୁଥିଲା, ମଗ୍ ଘୋଷାରି ଘୋଷାରି ପାଣିକୁଣ୍ଡରୁ ପାଣି ଟାଙ୍ଗିଆଣି କାମ ସାରୁଥିଲା, ନିଃଶବ୍ଦରେ ବସୁଥିଲା ଖାଇବାକୁ ।

ମା କହୁଥିଲେ– କାହିଁକି ଯେ କହି ମରୁଛି ! ପୁଅ ତ ମୋର ହେଇଛି, 'ପିଠିରେ ବାନ୍ଧିଛି କୁଲା, କାନରେ ଦେଇଛି ତୁଳା ।' ଦିଇଟା ଟଙ୍କା ରୋଜଗାର କରି ଆଣି ଦେଉଛି ବୋଲି ତ ଭାବୁଛି ସବୁ କର୍ତ୍ତବ୍ୟ ସରିଲା ।

ସେକଥାର ଉତ୍ତର ଦିଏନି ମଧ୍ୟ ମାନସ ।

...ମା'ଙ୍କ ପ୍ରଶ୍ନ ଉତ୍ତରରେ ଆଜି କିନ୍ତୁ କହିଦେଲା, ଏ ଜଗତରେ ସ୍ୱାର୍ଥପର କିଏ ନୁହେଁ ମା ? ନିଜର କଥାହିଁ କୌଣସି ଦିନ ଭାବି ଦେଖିଛ ? ଆଉ ସଭ୍ୟତା ? ସେକଥା ଏ ଘରେ ଅନ୍ତତଃ ଉଚ୍ଚାରଣ ନ କରିବା ହିଁ ଭଲ ।

ଯାପରେ କି କଥା କହିବେ ସୁରମା ? ନା, କିଛି କହିଲେନି, ଉଠି ଚାଲିଗଲେ । ଅସୀମା ମଧ୍ୟ ଭାଇନାକୁ ଦେଖେଇ ଅଧେ ଖାଇଥିବା ଭାତର ଥାଳିରେ ପାଣି ଢାଳିଦେଇ ଚାଲିଗଲା । ବୁଝି ସାରିଥିଲା ଆଜି ଆଉ ମା'ଙ୍କ ପାଖରୁ ଏ ପ୍ରଶ୍ନ ବିନ୍ଧା ହେବନି– ଭାତ କଣ ଏମିତି ଖାଲି ଖାଲି ଆସୁଛି ?... ଅତଏବ ଭାଇନା ଦେଖନ୍ତୁ, କେତେବେଶୀ ଗର୍ହିତ କଥା ସେ କହିଛନ୍ତି ।

ମାନସ କଣ ତେବେକେ ଅପ୍ରସ୍ତୁତ ହେବନି ? ତାର କଣ ଛାତିରେ ଏତେ ସାହସ ?

ହଁ, ପ୍ରେମରେ ପଡ଼ିଲେ ହୁଏତ ଅଲଗା ଏକ ଧରଣର ଛାତିର ଜୋର୍ ବଢ଼େ । ନ ହେଲେ ତାମସୀ କେଉଁ ସାହସରେ ଶେଷକୁ ସିନେମାର ଟିକେଟ୍ ଦୁଇଟା ନେଲା ? କେଉଁ ସାହସରେ ଏତେ ରାତି ବା କରୁଛି ? ତାମସୀ କଣ ଏତେ ସ୍ୱାଧୀନ ? ଯାହା ଖୁସୀ କରିପାରିବ ? ତ୍ରିଦିବ ସେନ୍‌ର ପ୍ରକୃତି ସମ୍ପର୍କରେ ସେ ଜାଣିନି ?

ବୁଝିପାରୁନି କଣ ସିନେମାର ଅନୁମତି ପାଇବା କଷ୍ଟକର ହେବ ! ଆଉ ଘରେ ନ ପଶୁଣୁ ଦେଖିପାରିଲା ତ୍ରିଦିବ ସେନ୍ ଗେଟ୍ ପଛରେ କମ୍ପାଉଣ୍ଡ୍ ଭିତରେ ଅସ୍ଥିର ହୋଇ ପଦଚାରଣ କରୁଛନ୍ତି ।

ହଁ, ଠିକ୍ ସେଇୟା ଦେଖିପାରିଲା । ଦୂରରୁ ଦେଖିଲା ତ୍ରିଦିବ ସେନ୍ ବ୍ୟସ୍ତ ଭାବରେ ପାଦ ପକାଇ ବୁଲୁଛନ୍ତି । ଘର ଆଗରେ ବିରାଟ ମଟରଗାଡ଼ିଟା ହୃଦୟଦ୍ୱାର ଖୋଲିଦେଇ ଠିଆ ହୋଇଛି, ତେଣିକି ଚାହୁଁ ନାହାନ୍ତି ସୁଦ୍ଧା ତ୍ରିଦିବ ।

ମାଇଲାରେ ! ଏକାବେଳେ ବାଘ ମୁହଁରେ ।

କିନ୍ତୁ ନା, ନର୍ଭସ୍ ଭାବ ଦେଖାଇଲେ ଚଳିବନି । ନାଚି ନାଚି ଆସି ବାଘର ବେକକୁ କୁଣ୍ଢାଇ ଧରିବାକୁ ପଡ଼ିବ ।

ଅତଏବ ସେହି ଭୂମିକାର ପ୍ରସ୍ତୁତି ନେଇ ଧାଇଁ ଆସିଲା ତାମସୀ । ଉତ୍‌ଫୁଲ୍ଲ ହସ ହସି କହିଲା, ଏ କଣ, ବାହାରି ନାହାନ୍ତି ଏ ପର୍ଯ୍ୟନ୍ତ ?

ତ୍ରିଦିବ ସେନ୍ ଏକାବେଳେ ତାର ଆପାଦମସ୍ତକ ଦେଖିନେଇ ଗମ୍ଭୀର ଗଳାରେ କହିଲେ, ବାହାରି ଯାଇଥିଲେ ତୋର କିଛି ସୁବିଧା ହୋଇଥାନ୍ତା, ସେଇୟା ନା ?

ବାଃ, ସୁବିଧା ପୁଣି କଣ ? ଏ ତ ବରଂ ଭଲ ହେଲା, ଆପଣଙ୍କ ସହିତ ଦେଖା ହେଲା । ସବୁଦିନ ତ ଆପଣ କ୍ଲବକୁ ଚାଲିଯାଆନ୍ତି– ଗଳାର ସ୍ୱରରେ ଅଭିମାନ ଭରି ଦେଇ ତାମସୀ କହେ,– ଜମା ଦେଖା ତ ହୁଏନି ।

–ଦେଖା ତ ହୁଏନି ! ତାମସୀର ସ୍ୱରଟାକୁ ନକଲ କରନ୍ତି ତ୍ରିଦିବ ସେନ୍, ଦେଖା ହେବା ପାଇଁ ମରି ଯାଉଛୁ ବୋଧହୁଏ ? ହୁଃ ! କୋଉଠାକୁ ଯିବା ହୋଇଥିଲା ?

ସୁରଟା କୈଫିୟତ୍ ଦେଲାଭଳି । ତେଣୁ ଟାଣୁଆ ହେବା ଦରକାର । ତେବେ ସେଇଟା ଅଭିନୟର ମାଧମରେ । ଅତଏବ ତାମସୀର ଆଖି କୋଣରେ ବିଷାଦର ଛାୟା ଓହ୍ଲାଇ ଆସେ । କଣ୍ଠରେ ଉଦାସ ସୁର ଫୁଟିଉଠେ– ଯେଉଁଠିକି ଦି ଆଖି ଯାଇପାରିବ ।

ତ୍ରିଦିବ ସେନ୍‌ଙ୍କ ମୁହଁରେ ଗାମ୍ଭୀର୍ଯ୍ୟ ପାତଳ ହୋଇ ଆସିଲା । ଆଖି କୋଣରେ ଆଲୋକର ଝଲକ ଖେଳିଲା । ତେବେ ଗଳାର ସ୍ୱରଟାକୁ ଯଥାପୂର୍ବ ରଖି କହିଲେ, ସତେ ! ଅବସ୍ଥା ଯେ ଦେଖୁଛି ବେଶ୍ ମାରାତ୍ମକ ! ହେଲେ, ଏହି ବୈରାଗ୍ୟ ପଥର ଯାତ୍ରାଟା ହୋଇଥିଲା କେତେବେଳେ ? ପାଞ୍ଚଟା ବେଳେ ତ ଅଫିସ୍‌ରୁ ଫୋନ୍ କରି ପାଇଲିନି । ଅତଏବ ତା ଆଗରୁ ।

ପ୍ରତିକ୍ଷଣରେ ମୁହଁର ରଙ୍ଗକୁ ବଦଳାଇ ପକାଏ ତାମସୀ । ଉଜ୍ଜ୍ୱଳ ଉଚ୍ଛଳ ହୋଇଯାଏ– ଅଫିସ୍‌ରୁ ଫୋନ୍ କରିଥିଲେ ? ଏ ମା ! କାହିଁକି ? କାହିଁକି ?

କାହିଁକି ଆଉ ଶୁଣି ଲାଭ କଣ ? କଥାଟା ତ ଏବେ ସମାଧିସ୍ଥ ହେଲାଣି ।

ଇସ୍ ! ଏତେ ଖରାପ ଲାଗୁଛି ମତେ । କିନ୍ତୁ ଠିକ୍ ସେଇକ୍ଷଣି, ଇଷ୍ଟ ପାଞ୍ଚଟାବେଳେ ବାହାରିଥିଲି ମୁଁ... କହି ପୁଣି କଥା ପଛରେ ଲଥା ଯୋଡ଼ିବାକୁ ବସିଲା ତାମସୀ । ଯୋଡ଼ିବା ହିଁ ଭଲ । କିଏ କହିପାରେ ସେହି 'ବାହାରିଥିଲି' ଠାରେ ଶେଷ କଲେ ସଙ୍ଗେ ସଙ୍ଗେ ପୁଣି ସେ ଆଗର ପ୍ରଶ୍ନଟା ଅଧିକତର ତୀକ୍ଷ୍ଣ

ହୋଇ ଆସି ବିନ୍ଧିବ କି ନାଇଁ । ସେହି 'କେଉଁଠାକୁ ବାହାରିଥିଲୁ ?' ତାପରେ– 'ଏତେବେଳ ହେଲା କଣ କରୁଥିଲୁ ?' ତାପରେ– 'ଜାଣିଛୁ ତ ଏଇଟା ମୁଁ ପସନ୍ଦ କରେନି ।' ତାପରେ ନିଜର କି କି ଅସୁବିଧା ହୋଇଛି ତାମସୀର ଅନୁପସ୍ଥିତିରେ ତାର ହିସାବ ଦାଖଲ କରିବା । ତାଠାରୁ ବରଂ କଥା ନ ବଢ଼ାଇ ଅନ୍ୟ ପ୍ରସଙ୍ଗକୁ ନେଇଯିବା ଭଲ । କହିବା ଭଲ, ଇସ୍ ! ଆଉ ଦି ମିନିଟ୍ ରହିଥିଲେ ତ– କିନ୍ତୁ କେଉଁଥିପାଇଁ ଡାକିଥିଲେ । କହନ୍ତୁ, କହନ୍ତୁ ଦୟାକରି । ଶୁଣି ନ ପାରି ମତେ ଭାରି ଖରାପ ଲାଗୁଛି ।

"ଭୀଷଣ ଖରାପ ଲାଗୁଛି ! ଘୋଡ଼ାଡିମ୍ବ ଲାଗୁଛି ! ମନେ ମନେ ଭାବୁଛି ବୋଧହୁଏ ମୁଁ କିଛି ବୁଝୁନି ?"

ତାମସୀ ହସି ପକାଇଲା, ଏ ମାଲୋ ! ଏବେ ମଧ । ଏ-ବୟସର ଝିଅମାନଙ୍କର ମନର କଥାକୁ ଆପଣ ବୁଝୁଛନ୍ତି ? ଓଃ କି ସାଂଘାତିକ । ତାହେଲେ ସେଇ ୟଂ କାଳରେ କଣ ଥିଲେ ? ବେଶ୍ କହନ୍ତୁ ତ କେମତି ପାରୁଛନ୍ତି ? କହନ୍ତୁ କଣ ଭାବୁଥିଲି ?

କଣ ଆଉ । ଭାବୁଥିଲୁ—ବାବାଃ, ରକ୍ଷା ପାଇଯାଇଛି ଯେ ଫୋନ୍ ଧରିବାକୁ ପଡ଼ିନି । ଧରିଥିଲେତ ବୁଢ଼ାର କବଳରେ ପଡ଼ିବାକୁ ହୋଇଥାନ୍ତା । ମୋର ଅଭାଗ୍ୟ ଯେ ପଞ୍ଚଷଠୀ ବର୍ଷର ସେ ବୁଢ଼ାଟା ସାଙ୍ଗରେ ବସି ସିନେମା ଦେଖିବାକୁ ହେଉଛି–

ସିନେମା । ଏ ମା !.. ତାମସୀ କୌତୁକରେ ଉଚ୍ଛ୍ୱସିତ ହୋଇଗଲା, ସିନେମା ପାଇଁ ଫୋନ୍ କରିଥିଲେ ? କେଉଁଠି ? କେଉଁ ସିନେମା ?

ତାମସୀ ଯେପରି ନବୀନା କିଶୋରୀ । ଯେପରି ଆହ୍ଲାଦର ଖଣି...ଇସ୍ ! ହାୟ ହାୟ । ମୁଁ କଣ ନିଆଁ ଦରପୋଡ଼ା ଜାଣିଛି ହଠାତ୍ ଆପଣଙ୍କର–

ମୋର କିଛି ହେଲେ ନାହିଁ– ତ୍ରିଦିବ ସେନ୍ ପାଇପରେ ତମାଖୁ ପୂରାଉ ପୂରାଉ କହିଲେ, କହିଲି ତ କଥାଟା ସମାଧିସ୍ଥ ହୋଇଗଲାଣି । ଆଉ କହି ଲାଭ ନାହିଁ । ତେବେ ଶୁଣିବାକୁ ଚାହୁଁଛୁ ତ କହୁଛି– ଅଫିସ୍‌ରୁ ଜୋନ୍‌ସ ବୋଲି ଗୋଟାଏ ଟୋକା ଆସିଥିଲା, କଥାରେ କଥାରେ କହିଥିଲା କାଲି ଲାଇଟ୍‌ହାଉସରେ ଅପୂର୍ବ ଗୋଟାଏ ସିନେମା ଦେଖି ଆସିଲା । ସେ ସିନେମାଟା ନ ଦେଖିଲେ କୁଆଡ଼େ ଜୀବନ ବୃଥା । ମାତ୍ର ଆଜି-କାଲି ଦିଇଟା ଦିନ ରହୁଛି ।

ତାମସୀର ମୁହଁର ରଙ୍ଗରେ ପୁଣି ବୈଚିତ୍ର୍ୟର ଖେଳ ଦେଖାଗଲା । ତାମସୀର ଗଳାର ସ୍ୱରରେ ମୃଦୁ କମ୍ପନ । ସେହି କମ୍ପିତ ଗଳାରେ କହିଲା– ଲାଇଟ୍‌ହାଉସରେ ! ଆହାରେ ! କେତେଦିନ ହେଲା ଯାଇନି–

ତ୍ରିଦିବ ସେନ୍ ତୀକ୍ଷ୍ଣ ସ୍ୱରରେ କହିଲେ, ମନେ ହେଉଛି– ତୋର ଏ ଦୁଃଖଟା ମନଗଢ଼ା । ମୁହଁ ଦେଖିଲେ ଜମା ମନେ ହେଉନି ଟିକିଏ ହେଲେ କ୍ଷତି ହୋଇଛି ବୋଲି ତୁ ଅନୁଭବ କରୁଛୁ । ସେ କଥା ଥାଉ, ଇଚ୍ଛା ଥିଲେ କାଲିକି ମଧ୍ୟ ଯାଇହେବ । ଶନିବାର ଅଛି, ମାଟିନୀରେ ହିଁ ଯିବା ସୁବିଧା । ହେଲେ ମୋର ପ୍ରଶ୍ନଟାର ଉତ୍ତର ପାଇଲିନି । ଜାଣିପାରିଲିନି କେଉଁଠାକୁ ଯାଇଥିଲୁ ? ଆଉ ଏତେବେଳ ସେଠି କଣ କରୁଥିଲୁ ? ଘରେ କାହାକୁ କହିଦେଇ ସୁଦ୍ଧା ଯାଇ ନାହୁଁ–

ସେଇ ବିରାଟ ଦେହ ପୁରୁଷଟିର ଆଗରେ ନିଜକୁ ନିତାନ୍ତ କ୍ଷୁଦ୍ର ଆଉ ଅସହାୟ ମନେ ହେଲେ ବି ତାମସୀ ଚଟ୍‌କିନା ନିଜର ଦୋଷ ସ୍ୱୀକାର କଲା ନାହିଁ । ଅଭିମାନର ଆବେଗ ଧରି କହିପକାଇଲା, ଘରେ କାହାକୁ ଆଉ କହିଯାଇଥାନ୍ତି ଶୁଣେ ? ଚାକର ବାକରଙ୍କୁ ? ସେମାନଙ୍କ ଛଡ଼ା କିଏ ଅଛି ଆପଣଙ୍କ ଘରେ ? ବେଶ୍, ସେଇୟା ଯଦି ହୁଏ–

ମୋର ଘର ! ତା ନିଶ୍ଚୟ । ଭଲ କହିଛୁ !– ତ୍ରିଦିବ ସେନ୍‌ର ମୁହଁରେ ବର୍ଣ୍ଣବୈଚିତ୍ର୍ୟ ଦେଖାଗଲା । ତେବେ ସେ ବୈଚିତ୍ର୍ୟ କେବଳ ଅନ୍ଧାରରେ ଲିପା ହୋଇଛି !– ନା, ସେ ଆଦେଶ ତତେ ଦିଆଯାଉ ନାହିଁ, ତେବେ ସେମାନଙ୍କୁ କହିବା ଅର୍ଥ ସେମାନଙ୍କ ଅନୁମତି ନେବା ନୁହେଁ । ସେହି ଟିକକ ତତେ ବୁଝାଇ ଦେଉଛି । ମୋ ପାଇଁ କହିଦେଇ ଯିବା । ଅଫିସ୍‌ରୁ ଫେରି ମୁଁ କଣ ମାଗିବି– ନ ମାଗିବି, କଣ ଖାଇବି ନ ଖାଇବି–

– କଣ ଖାଇବେ ନ ଖାଇବେ !... ଯେମିତି ଆକାଶରୁ ଖସେ ତାମସୀ– କେଉଁଦିନ କଣ ଘରକୁ ଆସି ଆପଣ ଖାଆନ୍ତି ? ମୁଁ ତ ଶୁଣୁଛି ଆପଣଙ୍କ ଅଫିସରେ ପ୍ରତିଦିନ ଭୋଜି ହୁଏ । ଏସବୁ ଖାଲି ମତେ ଜବ୍ଦ କରିବା ପାଇଁ କୁହାଯାଉଛି ।

ଜବ୍ଦ ! ତତେ ଫେରେ ଜବ୍ଦ କରିବି !... ତ୍ରିଦିବ ସେନ୍ ହାତର ପାଇପ୍‌ଟା ଥରେ କପାଳରେ ଠୁକେଇ ଦେଇ କହିଲେ, ନସିବ୍ ମୋର ! ତତେ ମୁଁ ସାଧ୍ୟ କରିପାରିବି ? ଏମିତି କେବେ ଘଟିଛି ନା ଘଟିବ ? ସେ ସୌଭାଗ୍ୟ ମୋର ହେବ ?

ତା ନିଶ୍ଚୟ।... ତାମସୀ ଅଧିକ ଅଭିମାନର ଭଙ୍ଗିମା ଫୁଟାଏ ଆଖିରେ ଆଉ ମୁହଁରେ। ଜାଣିଛି ମୋ ପାଇଁ କେବଳ ଆପଣ ଚିରକାଳ ବଦ୍ଧ ହୋଇ ଏହି ମାୟା ସଂସାରରେ ପଡ଼ି ରହିଛନ୍ତି ! ନଚେତ୍ କେବେଠାରୁ ଲୋଟା-କମ୍ବଳ ଧରି ହିମାଳୟକୁ ଚାଲି ଯାଆନ୍ତେଣି। ତେବେ ଗଲେ ଟିକିଏ ଅସୁବିଧା ହୋଇଥାନ୍ତା। ଆପଣଙ୍କର ଏ କ୍ଲାଏଣ୍ଟ୍ ଦଳ ତ ସାଙ୍ଗ ଛାଡ଼ି ନ ଥାନ୍ତେ। ପଛରେ ପଛରେ ଧାଇଁଥାନ୍ତେ। ସେମାନଙ୍କ ପାଇଁ ପୁଣି—

ରହ ରହ ଚଗଲୀ ଝିଅ— ତ୍ରିଦିବ ସେନ୍ ଟିକିଏ ନକଲି ଧମକ ଦେଇ କହିଲେ— କଥାର ମାଡ଼ରେ ବୁଢ଼ାକୁ ଥଣ୍ଡା କରି ରଖୁଛୁ ତୁ। ତେବେ ଆଉ ଥଣ୍ଡା ହେବିନି। ଆଜି ମତେ ଜାଣିବାକୁ ହିଁ ପଡ଼ିବ ଯେ ପ୍ରତିଦିନ ସନ୍ଧ୍ୟାରେ ତିନିଘଣ୍ଟା ପାଇଁ ତୋର ଏ ରହସ୍ୟମୟ ଅନ୍ତର୍ଦ୍ଧାନର କାରଣ କଣ ? ଗାଡ଼ି ନେବୁ ନାହିଁ, ଭିଖାରୀ ପରି ସଜେଇ ହୋଇ ବାହାରିବୁ। କେଉଁଠାକୁ ଯାଉଛୁ କହିବୁନି ? ଏ ସବୁର ଅର୍ଥ କଣ ?

ତାମସୀର ରାଗ ଦେଖାଇଲେ ଚଳିବନି। ବର୍ତ୍ତମାନ ସମ୍ମାନ ବଞ୍ଚାଇ ରଖିବାକୁ ପଡ଼ିବ। ସେଥିପାଇଁ ଗେହ୍ଲାଇ କହିବାକୁ ପଡ଼ିଲା— ବାରେ, ଆପଣଙ୍କୁ କହିନି ?

—ହଁ, ପିଲାଙ୍କୁ ଭୁଲାଇବା ପରି ଗୋଟାଏ କଥା କହିଥିଲୁ ସତ। କିନ୍ତୁ ଏକଥା ମୁଁ ଆଦୌ ମାନିବାକୁ ରାଜି ନୁହେଁ, ଗଳ୍ପ-ଉପନ୍ୟାସ ଲେଖିବାକୁ ହେଲେ ଏସବୁ କରିବାକୁ ପଡ଼ିବ। ସେଇଟା ବାଜେ କଥା। ତାଛଡ଼ା ବେଶ୍ ପଦ୍ୟ କବିତା ଲେଖୁଥିଲୁ ଆଗେ, ପୁଣି ସେସବୁ କାହିଁକି ? ନାଟକ ନଭେଲ୍‌ର କିଛି ଅଭାବ ଅଛି ଦେଶରେ ?

ନାଃ ! ଠିକ୍ ହେଉ ନାହିଁ। ଏଥର ଟିକିଏ ରାଗ ଦେଖାଇବା ଦରକାର। ଅତଏବ ତାମସୀ ସେଇଟା ଦେଖାଇଲା। ମୁହଁଟାକୁ ନାଲି କରି କହିଲା— ଦେଶରେ ନାଟକ-ନଭେଲ୍‌ର ଅଭାବ ନାହିଁ ବୋଲି ଆଉ କେହି ଲେଖିବେନି, ଏଇଟା ଗୋଟାଏ ଯୁକ୍ତି ହେଲାନି, ବୁଝିଲେ ? ସେଇଟା ହିଁ ବାଜେ କଥା। ଆଉ ଗଳ୍ପ-ଉପନ୍ୟାସ ଲେଖିବାକୁ ହେଲେ ସେସବୁ କରିବା କଥା ବୋଲି ଯଦି କହନ୍ତି ତ କହିବି, ଯଦି ସାଧାରଣ ମଣିଷର କଥା, ଗରିବର କଥା, ଦୁଃଖୀ ଅଭାବୀମାନଙ୍କର କଥା ଲେଖିବାକୁ ପଡ଼େ ତ, ଦାମିକା ମଟରଗାଡ଼ିର ଉଚ୍ଚାସନରୁ ଓହ୍ଲାଇ ମିଶିବାକୁ

ହିଁ ପଡ଼ିବ ସେମାନଙ୍କ ସହିତ । ସେମାନଙ୍କ ପରି ବେଶ ପକାଇ । ସେମାନଙ୍କ ପରି ଭିଡ଼ ଆଡ଼େଇ ରାସ୍ତାରେ ଚାଲି ସେମାନଙ୍କୁ ବୁଝିବାକୁ ଶିଖିବା ଦରକାର, ଚିହ୍ନି ପାରିବା ଦରକାର– ହଁ, କଥା ବଢ଼ାଉଛି ତାମସୀ, କେବଳ କଥା ବଢ଼ାଇ ଭୁଲାଇ ଦେବାକୁ ଚାହେଁ ତ୍ରିଦିବ ସେନ୍‌କୁ ।

କିନ୍ତୁ ତ୍ରିଦିବ ସେନ୍ କଅଁଳ ପିଲା ନୁହଁନ୍ତି । ସେଥିପାଇଁ ସେ ନ ସରୁଣୁ ବାଧା ଦେଇ କହିଉଠନ୍ତି– ଫୋଃ । ଗରିବର କଥା ଲେଖିବାକୁ ହେଲେ ଗରିବ ହେବାକୁ ପଡ଼ିବ, ଭିଖାରୀଙ୍କ କଥା ଲେଖିବାକୁ ହେଲେ ଭିଖାରୀ ସାଜିବାକୁ ପଡ଼ିବ । ଏ ପୁଣି ଗୋଟିଏ ଯୁକ୍ତି ନା କଣ ? ଯେତେ ସବୁ ସେଣ୍ଟିମେଣ୍ଟ୍ । ଲେଖା ହେଉଛି ସମ୍ପୂର୍ଣ୍ଣ ମନର ଅନୁଭୂତିର କଥା । ଟେବୁଲ ପାଖରେ ବସି ପୃଥିବୀ ପରିକ୍ରମା କରିପାରିବ ବୁଝିଲୁ ? ଏସବୁ ତୋ ମୁଣ୍ଡରେ କିଏ ପୂରାଉଛି ଶୁଣେ ? ତାଛଡ଼ା ତୋର ସେହି 'ବସ୍ତି ଉପନ୍ୟାସ' ପ୍ରସ୍ତୁତ ହେଲେ ମଧ୍ୟ ପଢ଼ିବ କିଏ ? ଛପାଇବ କିଏ ?

– ଛପାଇବ କିଏ ? ତାମସୀ ହଠାତ୍ ଫିକ୍ କରି ଟିକିଏ ହସି ପକାଇ କହିଲା, କାହିଁକି, ଆପଣ ଅଛନ୍ତି କଣ କରିବାକୁ ? ଅନ୍ୟ କୌଣସି ପବ୍ଲିଶର୍ ନ ଛାପିଲେ ଆପଣ ପଇସା ଖର୍ଚ୍ଚ କରି ଛାପି ଦେବେ ।

ଚମତ୍କାର୍ ! – ତ୍ରିଦିବ ସେନ୍ କହି ଉଠିଲେ ଟଙ୍କାରେ ଫିମ୍ପି ଲାଗିଯାଉଛି ମୋର ! ସେ ସବୁ ବାଜେ ମତଲବ ଛାଡିଦେ । ଯେମିତି ପଦ୍ୟ-ଫଦ୍ୟ ଲେଖୁଥିଲୁ ସେମିତି ଲେଖ୍ ବସି ବସି, ସେଇଟା ଭଲ । ଉପନ୍ୟାସ ଲେଖିବାର ଭୂତ ମୁଣ୍ଡରେ ଚଢ଼ିଲା କାହିଁକି ?

କାହିଁକି ? ତାମସୀ ଏଥର ମୁଣ୍ଡକୁ ଝୁଙ୍କାଇ ଝଙ୍କାର ଦେଇ ଉଠିଲା– ଶୁଣିଛି ଆପଣବି ତ ଆଗ ବେଶ୍ ଚାକିରି ବାକିରି କରୁଥିଲେ, କୌଣସି ଭାବନା ନ ଥିଲା । ହଠାତ୍ ବିଜ୍‌ନେସ୍ କରିବାର ଭୂତ ମୁଣ୍ଡ ଉପରେ ଚଢ଼ିଲା କାହିଁକି ? ରାତିଦିନ ମୁଣ୍ଡ ଘୂରାଇବାର ଜଞ୍ଜାଳ ନେଲେ କାହିଁକି ମୁଣ୍ଡ ଉପରକୁ ?

ତ୍ରିଦିବଙ୍କ ମୁହଁରେ ଆଖିରେ ଏଥର ଆଲୋକର ଆଭାସ ଦେଖାଦେଲା । କୌତୁକର ଆଲୋକ । –ହେଇଛି, ଚୁପ୍‌କର । ତୁଚ୍ଛାକୁ କହିଛି, ଚଗଲୀ ଝିଅ । ମତେ ନ ହସାଇ ତୁ ଛାଡ଼ିବୁନି, କେମିତି ରାଗ ରଖିବାକୁ ହେବନି ! ସେଇ ଛୋଟ

ବେଲୁ ଏ ଚାଲିକିଟା ଶିଖିଛୁ, ଖାଲି କଥା । ସେହି ବାକ୍ୟର ଜୋର୍‌ରେ ହିଁ ବାଜିରେ ଜିତ୍ ହେଉଛି । କିନ୍ତୁ ମୋର କଥା ହେଉଛି ଘର ଭିତରେ ଯାହା ଖୁସୀ ତୁ କରେ, କୌଣସି ଆପତ୍ତି ନାହିଁ, ଘରର ବାହାରେ ଏମିତି ଏକା ଏକା ଯିବା ଚଳିବନି । କଦାପି ନୁହେଁ ।

ଏଥର ସତକୁ ସତ ରାଗିଯାଏ ତାମସୀ । କ୍ରୁଦ୍ଧ ଗଳାରେ କହେ– ହେଲେ ମୁଁ କଣ ଜେଲଖାନାର କଏଦୀ ଯେ, କେତେବେଳେ ହେଲେ ଟିକେ ଏକା ହୋଇ ପାରିବିନି ? ଥରଟେ ହେଲେ ଏକୁଟିଆ ବାହାରି ପାରିବିନି ? ଏଇଟା କଣ ଶହେ ବର୍ଷ ଆଗର କାଳ ହେଉଛି ? ନା, ମୋର ଶୈଶବ ସମୟ ଶେଷ ହୋଇନି ? ଏହିପରି ମତେ ଘରେ ବନ୍ଦ କରି ରଖିବାହିଁ ଯଦି ଇଚ୍ଛା ଥିଲା ଆପଣଙ୍କର, ଲେଖାପଢ଼ା ନ ଶିଖାଇଥିଲେ ତ ହୋଇଥାନ୍ତା, ଜଡ଼ବତ୍ ପ୍ରାଣୀଟିଏ କରି ଘରେ ବସାଇ ରଖି ଦେଇଥିଲେ ଚଳିଥାନ୍ତା ? ବେଶ୍, ଠିକ୍ ଅଛି, କାଲିଠାରୁ ଆଉ ଚନ୍ଦ୍ରସୂର୍ଯ୍ୟ ମୁହଁ ଦେଖିବିନି । ରହିବି ବନ୍ଦୀ ହୋଇ ।

କଥାର ଶେଷ ଦିଗଟା ଅବଶ୍ୟ ବାଷ୍ପାଛନ୍ନ ହୋଇଗଲା ଏବଂ ତ୍ରିଦିବ ସେନ୍‌ଙ୍କ ପ୍ରମାଦ ଗଣିବା ପକ୍ଷରେ ସେହି ଟିକକ ହିଁ ଯଥେଷ୍ଟ । ଅଭିନୟ କରିବାରେ ଦୁଇଜଣଯାକ ପଟୁ । ଶାସକର ଭୂମିକାରେ ଯେ ସେ ମଧ୍ୟ ଯେଉଁପରି, ଶାସିତର ଭୂମିକାରେ ଯେ ସେ ମଧ୍ୟ ସେହିପରି !

ତାମସୀକୁ ପ୍ରକୃତରେ ଶାସନ କରିବେ ଏଭଳି ସାଧ କଣ ଅଛି ତ୍ରିଦିବଙ୍କର ? ସବୁଯାକ ତ ଫାଙ୍କା ଆୱାଜ୍ । ତାମସୀ ଯାହା କହେ ସେଇଟା ମନରୁ ଗଢ଼ି କହେ, ନ ହେଲେ ସତରେ ଶାସିତ ହେଲେ ରକ୍ଷା ମିଳିଥା'ନ୍ତା ? ସେ ଶାସନ ମାନିଥା'ନ୍ତା ?

ହେଇଟି ତ, ଏତିକି ଟିକକରେ ତ ପ୍ରମାଦ ଗଣିଲେ ତ୍ରିଦିବ । କହି ଉଠିଲେ, ସାଙ୍ଗେ ସାଙ୍ଗେ ହୋଇଗଲା ରାୟ ଦେବାଟା– "କାଲିଠାରୁ ବନ୍ଦୀ ହୋଇ ରହିବି ।" ସେଇଥିପାଇଁ କହିଲି ମୁଁ ? ଖାଲି କହିଲି, ଦୟାମୟୀ ଯଦି ବାହାରନ୍ତି ତ ଅନୁଗ୍ରହ କରି ମଟରଗାଡ଼ିଟା ନେଇ ବାହାରିବେ । ସେଇଟା ହିଁ ତ ନିୟମ ଥିଲା, ହଠାତ୍ କିଛିଦିନ ହେଲା ଏଇ ଅଦ୍‌ଭୁତ ଖିଆଲଟା ମୁଣ୍ଡକୁ ଆସିଲା କାହିଁକି କହତୁ ଦେଖି ? ବ୍ୟଙ୍ଗ ସ୍ୱରରେ ଆକ୍ଷେପ କରନ୍ତି ତ୍ରିଦିବ– ଗାଡ଼ି ଚଢ଼ିବିନି, କେଉଁଠାକୁ ଯାଉଛି ଜଣାଇବିନି, କାହା ସଙ୍ଗେ ମିଶୁଛି କହିବିନି, ଭିଖାରୀ ସାଜି ବୁଲିବି– ଏ ସବୁର ଅର୍ଥ କ'ଣ ?

ତାମସୀ ମୃଦୁହସି କହିଲା, ସନ୍ଦେହ ଘନୀଭୂତ ହେଉଛି ? କୌଣସି ଷଡ଼ଯନ୍ତ୍ରକାରୀମାନଙ୍କ ଦଳରେ ମିଶୁଛି ମନେହେଉଛି ?

ତ୍ରିଦିବ ତୀବ୍ର ସ୍ୱରରେ କହିଲେ, ସେଇଆ ଯଦି ମନେହୁଏ, ଅସଙ୍ଗତ ହେବନି । ମନେ ହେଉଛି ଛଦ୍ମ ବେଶରେ ତୁ କିଛି କରୁଛୁ ।

ତାମସୀ ଟିକିଏ କୌତୁକ ହସ ହସି କହିଲା, ସତରେ ? ସତ କହୁଛନ୍ତି ଛଦ୍ମବେଶ ମନେ ହେଉଛି ? ବେଶ୍ ଗରିବ ଗରିବ ଲାଗୁଛି ?

ତ୍ରିଦିବଙ୍କ ତୀବ୍ର ସ୍ୱରରେ ଭାରି ଯେ ଡରୁଛି ତାମସୀ, ଏଭଳି ଅନ୍ତତଃ ମନେ ହେଲାନି ତାକୁ ଦେଖି । ଯେପରି ଗରିବ ଗରିବ ଲାଗିବାଟା ଫୁର୍ତ୍ତିର କଥା !

ତ୍ରିଦିବ ଆହୁରି ବିଚଳିତ ହେଲେ । କହି ଉଠିଲେ, ଖାଲି ଗରିବ ? ଗୋଟାଏ ଦୀନ ଦୁଃଖୀ ବିଧବାପରି ତୁ ଦିଶୁଛୁ ।

ବିଚଳିତ ହୋଇଛନ୍ତି, ଅତଏବ ଆହତ ହୋଇ ଆସିଛନ୍ତି । ଏଥର ଶେଷ ମାଡ଼ଟା ମାରିବାର ଅପେକ୍ଷାରେ । ଏଥର ଆଖିରେ ବିଦ୍ୟୁତ୍ ଝଲକାଇ, ଆଉ ମୁହଁରେ ରଙ୍ଗିନ୍ ହସ ହସି ଗେହ୍ଲାଳିଆ ଗଳାରେ କହିବା ହୋଇପାରିବ, ଚମତ୍କାର– ଫାଇନ୍ ! ସେଇଟାହିଁ ତ ତାହେଲେ ରୀତିମତ ସେଫ୍ ଜେଜେ ! ଆପଣଙ୍କ ନାତୁଣୀ ପରି ଏବେ ଏମିତି ଏକ ସୁନ୍ଦରୀ ତରୁଣୀ କୁମାରୀ ରାସ୍ତାରେ ବାହାରିଲେ ରକ୍ଷା ଅଛି ? ବାହାରିଲାକ୍ଷଣି ତ ରାଜ୍ୟଯାକର ବଦ୍ ପିଲାମାନେ ଆଖପାଖକୁ ଆସି ଭିଡ଼ କରିବେ । ସେ ଭିଡ଼ ସମ୍ଭାଳିବାକୁ ତ ଖାଲି ଆପଣ ଅଛନ୍ତି । ତା'ଠାରୁ ବରଂ ବିଧବା ଭାବି ଅବହେଳାରେ ନ ଚାହିଁ ଘୁଞ୍ଚିଯାଆନ୍ତୁ, ନିଶ୍ଚିନ୍ତ । କହନ୍ତୁ, ଜେଜେ, ଠିକ୍ କି ନୁହେଁ ।

ଜେଜେ ! ହଁ, ହଁ ଜେଜେ ତ । ଏକାବେଳେ ନିର୍ଜଳା । ସାକ୍ଷାତ୍ ପିତାଙ୍କ ପିତୃଦେବ । ନିତାନ୍ତ ଶୈଶବରୁ ମା-ବାପ-ମଲା ଝିଅଟାକୁ ଏକୁଟିଆ ମଣିଷ କରି ଗଢ଼ିଛନ୍ତି ସେ ନିହାତି ଜଣେ ଚାକରାଣୀର ସାମାନ୍ୟତମ ସାହାଯ୍ୟ ନେଇ । ସଦା ସତର୍କ ଦୃଷ୍ଟି ରଖି ଯତ୍ନ ନେଇଛନ୍ତି ତାର, ସଦା ଉଦ୍‌ବିଗ୍ନ ମନ ଧରି ପରିଚର୍ଯ୍ୟା କରିଛନ୍ତି ।... ଏହି ତ୍ରିଦିବ ସେନ୍ । ତାମସୀର ଜେଜେବାପା । ମାନସ ନିକଟରେ ଯାହାକୁ 'ଉପରବାଲା' ବୋଲି ପରିଚୟ ଦେଇଛି ତାମସୀ ।

ହଁ, ସେକଥା ମଧ୍ୟ ଘର ଭିତରେ ମଝି ମଝିରେ ତାମସୀ କହିଥାଏ । ଅନ୍ୟ

ସହିତ କଥା କହିବା ସମୟରେ କହେ, 'ମାଇ ମାଷ୍ଟର ! ମୋର ମୁନିବ । ଉପରବାଲା ।'

ହୁଏ ତ ତ୍ରିଦିବଙ୍କ ଶାସନର ଆଡ଼ମ୍ବର ଦେଖି କହେ । ଭାରି କଡ଼ା ଶାସନ ଭିତରେ ଯେପରି ତାମସୀକୁ ରଖିବାକୁ ଚାହାନ୍ତି ସେ । ସେଇଥିପାଇଁ ଆଡ଼ମ୍ବର ସହକାରେ ଆସନ୍ତି ଗମ୍ଭୀର ଗଳା ଆଉ ପ୍ରଶ୍ରୟହୀନ ଆଖି ତୋଳି, ଯେତେବେଳେ ତାମସୀକୁ ଦୋଷ ଦିଅନ୍ତି ଆସନ୍ତି ସେମିତି । ବାପ-ମା-ମରିଥିବା ନାତୁଣୀଟାକୁ ଆଦର ଦେଇ ଗେହ୍ଲେଇ କରିପକାଇଛନ୍ତି ତ୍ରିଦିବ ସେନ । ଏକଥା ଶୁଣିବାକୁ ସେ ଆଦୌ ରାଜି ନୁହଁନ୍ତି ।

କିନ୍ତୁ ଚେଷ୍ଟା କଣ ସଫଳ ହୁଏ ? ଚେଷ୍ଟାକୃତ କାଠିନ୍ୟର ଆବରଣ ଭେଦ କରି ସହସା ଦେଖାଦିଏ ବିଗଳିତ ସ୍ନେହର ପ୍ରଶ୍ରୟ । ଆଉ ସେଇଟା ଅତି ସହଜରେ ଧରା ପଡ଼ିଯାଏ ତ୍ରିଦିବ ସେନ୍‌ଙ୍କର ତୀକ୍ଷ୍ଣବୁଦ୍ଧି ନାତୁଣୀ ପାଖରେ । ଅତଏବ ଜେଜେ ଆଉ ନାତୁଣୀକୁ ସବୁବେଳେ ମେଘ ଆଉ ରୌଦ୍ରର ଖେଳ ଖେଳିବାକୁ ପଡ଼େ ।

ସେଥିପାଇଁ ତାମସୀ ଯେତେବେଳେ ବୈଧବ୍ୟର ବେଶଟାକୁ ନିରାପଦ ବୋଲି ଘୋଷଣା କଲା, ତ୍ରିଦିବ ସେନ୍ ହାତର ପାଇପ୍ ତାମସୀର ମୁଣ୍ଡ ଉପରେ ଠୁକେଇ ଦେଇ ହସିଦେଇ କହିଲେ, ବଢ଼ିଆ ! ସେଫ୍ ବଢ଼ିଆ । ସାବଧାନତା ! ତୋ ପରି ଅଣ୍ଡିରାଚଣ୍ଡୀ– ଅବତାର ଆଡକୁ କେଉଁ ଭଦ୍ରଲୋକର ପୁଅ ଫେରି ସୁଦ୍ଧା ଚାହେଁନି । ଯେତେ ସାଜସଜ୍ଜା କଲେ ମଧ ନୁହେଁ ।

ଏ ଯୁଗର କିଛିହେଲେ ଆପଣ ଜାଣି ନାହାନ୍ତି ଜେଜେ, ତାମସୀ ହସି ହସି କହିଲା, ଏ ଯୁଗର ହୃଦୟ– ରହସ୍ୟ ତ ହେଉଛି ଅଲଗା । ଚଣ୍ଡୀ ଝିଅ, ସିଂହୀ ଝିଅ, ଡକେଇତ ଝିଅ, ଘୋଡ଼ସବାର ଝିଅ– ସେ ସବୁଯାକ ଏ ଯୁଗର ପସନ୍ଦ ।

ଡ୍ରାଇଭର୍ ଆସି ଆଉ ଥରେ ସଚକିତ କଲା ।

ତ୍ରିଦିବ ଘଣ୍ଟାଟା ଦେଖି କହିଲେ– ଇସ୍ ! ତୋ ପାଇଁ ଆଜି ମୋର ଘଣ୍ଟାଏ ଲେଟ୍ ହୋଇଗଲାଣି । ସେମାନେ ଗାଳି କରୁଛନ୍ତି । 'ବ୍ରୀଜ୍' ଖେଳର ସାଙ୍ଗମାନଙ୍କୁ ଉଲ୍ଲେଖ କଲେ ।

ତାମସୀ ଗମ୍ଭୀର ଭାବରେ କହିଲା– ହୁଁଃ ! ଦେଖୁଛନ୍ତି ତ ଜେଜେ, ଆପଣ ହେଇଟି ଜଣେ ବୁଢ଼ା– ହାଉଡ଼ା ଯେମନ୍, ହେଲେ ଆପଣଙ୍କର ମଧ ଆଡ୍‌ଡ଼ାରେ

ଯୋଗ ଦେବାଟା ରହିଛି । ଠିକ୍ ସମୟରେ ହାଜର ହେବାକୁ ପଡ଼େ । ମୋ ବେଳକୁ ଯେତେ ଦୋଷ ।

ତ୍ରିଦିବ ଯାଉଥିଲେ ଗାଡ଼ିରେ ଚଢ଼ିବାକୁ । ଟିକିଏ ଥମକି ତାର ଗୋଡ଼ଠୁ ମୁଣ୍ଡଯାଏ ଥରଟେ ଦେଖିନେଇ କହିଲେ, ସେଇୟା ନା କଣ ? ସୁରଟା ତ ଯେପରି ଗୋଳମାଳିଆ ଲାଗୁଛି ମନେ ହେଉଛି । ତାହେଲେ ତ ଏ ଅଭାଗା ବୁଢ଼ା–ହାଉଡ଼ାର ଅନୁମାନ ସତ । କଥାଟା ସିରିୟସ୍ ବୋଲି ହିଁ ଜଣାଯାଉଛି । ମନେହେଉଛି ଗୋଟାଏ ଉପନ୍ୟାସ ଲେଖିବା ଆରମ୍ଭ ହୋଇଗଲାଣି ।

ଓଃ ଜେଜେ ! ଆପଣ ଏକାବେଳେ ଯା–ତା– । କହି ଦଉଡ଼ି ପଳାଇଗଲା ତାମସୀ । ଘର ଭିତରକୁ ଚାଲିଯାଇ ବସିପଡ଼ିଲା । ବସିପଡ଼ିଲା ଡନ୍‌ଲପ୍ ପିଲୋ ଗଦି ଥିବା ସୁସଜ୍ଜିତ ଡ୍ରଇଙ୍ଗ୍ ରୁମ୍‌ରେ । ଏ ଘରେ ଆଧୁନିକ ଗୃହସଜ୍ଜାର କୌଣସି ଉପକରଣ ହିଁ ବାଦ୍ ନାହିଁ, ଆଉ ଯାହା କିଛି ଅଛି ସବୁ ଦାମିକା ଆଉ ସୌଖୀନ୍ ।

ତ୍ରିଦିବ ସେନ୍ ଲୋକଟା ସୌଖୀନ୍ । ତ୍ରିଦିବଙ୍କର ଝିଅ ନାହିଁ, ସ୍ତ୍ରୀ ଗତ ହୋଇଛନ୍ତି ବହୁଦିନ ହେଲାଣି । ଗୋଟିଏ ବୋଲି ପୁଅ ଏବଂ ପୁଅର ସ୍ତ୍ରୀ ଦୁଇଜଣଯାକ ମରିଯାଇଛନ୍ତି, ତେବେବି ସିଧାସଳଖ ଟାଣ ମଜବୁତ୍ ହୋଇ ରହିଛନ୍ତି ସେ । ଆଜି ବୋଲି ନୁହେଁ, କୋଡ଼ିଏ ବାଇଶି ବର୍ଷ ଆଗରୁ ସେହି ସଦ୍ୟ ଶୋକର ସମୟରେ ମଧ ଥିଲେ ।

ସେମାନଙ୍କର ପରିତ୍ୟକ୍ତ ଏହି ଶିଶୁଟିକୁ ଯେପରି ଜୀବନର ବ୍ରତ ବୋଲି ଗ୍ରହଣ କରିନେଇ ଚାଲି ଆସିଛନ୍ତି ଏହି ନିଃସଙ୍ଗ ଜୀବନ ପଥରେ । ନାନାପ୍ରକାର ବ୍ୟବସାୟ ଅଛି, ଅନେକ ପ୍ରତିଷ୍ଠାନ ସହିତ ମଧ ଜଡ଼ିତ । ସେସବୁ ଜାଗାରେ ସେନ୍ ସାହେବ ଏକାବେଳେ ଗମ୍ଭୀର, ପୁଣି 'ବ୍ରୀଜ୍'ର ଆଡ୍‌ଡ଼ାରେ ତ୍ରିଦିବ ସେନ୍ ପରି ମଜଲିସବାଲା ଜଣେ ଦି'ଜଣ ମାତ୍ର ଅଛନ୍ତି କି ନାହିଁ ।

ଘରେ ? ଘର କହିଲେ ଆଉ କଣ ? ତାମସୀ ଯାହା କହେ, ଖାଲି କେତେଗୁଡ଼ିଏ ଚାକର-ବାକର । ଦୂର ସମ୍ପର୍କର ଜଣେ ବିଧବା ଝିଆରୀ ଅଛନ୍ତି, ମଝି ମଝିରେ ଗାଁର ଘରୁ ଆସି ରହିଥାନ୍ତି । ତାମସୀକୁ ଯିଏ ଦେଖାଶୁଣା କରିଥିଲା ସେଇ ଚାକରାଣୀଟା ଏପର୍ଯ୍ୟନ୍ତ ରହିଯାଇଛି, ମୋଟ ଉପରେ ସେ ରାସୁର ମା' ହିଁ ତାମସୀର ମହିଳା ଅଭିଭାବକ ।

ତ୍ରିଦିବ ସେନ୍‌ଙ୍କ ଘରସଂସାର ଏଇଟା । ତେବେକେ ଏ ସଂସାରରେ ହିଁ ସେ ସ୍ନେହଶୀଳ ଏବଂ ସତର୍କ-ଚକ୍ଷୁ ଗୃହକର୍ତ୍ତା । ଖାଲି ତାମସୀ ପାଖରେ ସେ 'ସର୍ବରୂପ' । କେତେବେଳେ ତୁଷ୍ଟ, କେତେବେଳେ ରୁଷ୍ଟ, କେତେବେଳେ ଗମ୍ଭୀର, କେତେବେଳେ ରସିକ । ରାଗରେ, ଅନୁରାଗରେ, ମାନ-ଅଭିମାନରେ ତାମସୀ ତାଙ୍କ ଜୀବନକୁ ଭରିରଖିଛି, ଜୀବନ୍ତ କରିରଖିଛି ।

କିନ୍ତୁ– ତାମସୀ ସୋଫାରୁ ଉଠିଯାଇ ଗୋଟାଏ ରକିଂ–ଚେୟାରରେ ଅଧାଶୁଆ ଭାବରେ ଦୋହଲୁ ଦୋହଲୁ ଭାବିଲା– କିନ୍ତୁ ଆଜିକାଲି ଯେପରି ମୁଁ ଆଉ ଡ୍ୟୁଟି ପାଳନ କରି ପାରୁ ନାହିଁ । ମୁଁ ଯେପରି ଭାସିଯାଉଛି । ଏ ଘରର ସୁର ଆଉ ମୋ ମନରେ ଖାପ ଖାଇବ ନାହିଁ । ଏତେ ବିଳାସିତା, ଏତେ ଆଡ଼ମ୍ବର, ଜୀବନଯାପନ ପାଇଁ ଏତେ ଆୟୋଜନ, ଏହା ଯେପରି ଅନ୍ୟାୟ ମନେ ହେଉଛି । ମାନସ ଯେ ବଡ଼ଲୋକମାନଙ୍କ ଉପରେ ଏତେ ରାଗୁଛି ତାର କାରଣ ନିଶ୍ଚୟ ଅଛି । ଆମେ ଅପର୍ଯ୍ୟାପ୍ତ ପ୍ରାଚୁର୍ଯ୍ୟ ଭିତରେ ଆବର୍ତ୍ତିତ ହେଉ ହେଉ କେତେ ବିଞ୍ଚିପକାଉ, କେତେ ଉଛୁଳି ନଷ୍ଟ ହୋଇଯାଏ । ଅଥଚ ସେମାନେ ନିତାନ୍ତ ପ୍ରୟୋଜନୀୟଠାରୁ ମଧ୍ୟ ବଞ୍ଚିତ । ମୋର ଏକା ମଣିଷର ସାରା ମାସର ପ୍ରସାଧନ ବସ୍ତୁରେ ଯାହା ଖର୍ଚ୍ଚ ହୁଏ, ମାନସର ପାଞ୍ଚପାଞ୍ଚଟା ମଣିଷ ଥିବା ସଂସାରରେ ଚାଉଳ, ଡାଲି ଦୋକାନର ଖର୍ଚ୍ଚ ତା'ଠାରୁ ବି କମ୍ । କମ୍ କରିବାକୁ ହିଁ ପଡ଼େ । ମୋ ପାଖରେ ପ୍ରାଣ ଖୋଲି ସବୁ କହେ ବୋଲି ହିଁ ଜାଣିପାରୁଛି । ତ୍ରିଦିବ ସେନ୍‌ଙ୍କର ନାତୁଣୀ ପରିଚୟଟା ପ୍ରକାଶ ପାଇଗଲେ ସର୍ବନାଶ ।

କିନ୍ତୁ ମୁଁ କଣ ତାକୁ ଠକୁଛି ? ତାମସୀ ଭାବିଲା, ଏହାକୁ କଣ ଠକିବା ବୋଲି କୁହାଯାଏ ? ସେଦିନ ମୁଁ ଭିଡ଼ ଭିତରେ ଆସିବି ବୋଲି କେବଳ ସଉକ୍ ପାଇଁ ଏକାବେଳେକେ ସାଦା ବେଶ ସାଜି ଯାଇଥିଲି । ଯେଉଁଦିନ ପ୍ରଥମେ ଦେଖା ହୋଇଥିଲା ଯା ସହିତ । ମୁଁ ଯଦି ମୋର ଗାଡ଼ି ପାଖରେ ରହିଥା'ନ୍ତି, ନିଶ୍ଚୟ ସେ ମୋ ଆଡ଼କୁ ଗୋଟିଏ ବ୍ୟଙ୍ଗ ଦୃଷ୍ଟି ନିକ୍ଷେପ କରି ଚାଲିଯାଇଥାନ୍ତା । କିନ୍ତୁ ଭଗବାନ୍‌ଙ୍କ ଖେଳ ! ମୁଁ ଖାଲି ପାଦରେ ଚାଲି ଚାଲି ଯାଉଥିଲି । ହଠାତ୍ ସେ ମତେ ତାଙ୍କ ଦଳର ବୋଲି ଭାବିନେଲା । ଦରିଦ୍ର, ଅଭାବଗ୍ରସ୍ତ, ବଞ୍ଚିତ, ସମଗୋତ୍ର ନିକଟରେ ନିଜକୁ ଖୋଲିଧରିଲା ସେ ।

କିନ୍ତୁ ମୁଁ ତ ସେଇକ୍ଷଣି ତାର ସେଇ ଭୁଲ ଭାଙ୍ଗି ଦେଇ ପାରିଥାନ୍ତି । ତା'ର

ନିର୍ବୋଧତାରେ ହସି ଦେଇପାରିଥାନ୍ତି । ବଡ଼ଲୋକଙ୍କୁ ଅଶ୍ରଦ୍ଧା କରିବା ନେଇ ତର୍କ କରିପାରିଥାନ୍ତି...ତାମସୀ ଭାବିଲା, କାହିଁ, ତା ତ କଲି ନାହିଁ ମୁଁ ! ବରଂ ଆତ୍ମଗୋପନ ଖେଳରେ ମାତିଲି ।

ତା'ମାନେ– ତା'ମାନେ ମୁଁ ତା' ସାଙ୍ଗରେ ସମ୍ପର୍କ ତୁଟାଇ ଦେଇପାରିଲି ନାହିଁ । ତା'ମାନେ–ମୁଁ ତା' ପ୍ରତି ଆକର୍ଷିତ ହେଲି । ତା'ମାନେ– ତାମସୀ ମନେ ମନେ ଟିକିଏ ହସିଲା, ତା'ମାନେ ଯା'ରି ନାମ 'ଦର୍ଶନ ମାତ୍ରକେ ପ୍ରେମ ସଞ୍ଚାର ।' ସେଇ ପ୍ରେମ ଯୋଗୁଁ ମରିବାକୁ ବସିଲିଣି ।

ହଁ, ସେଇଆ । ପ୍ରେମ । ନ ହେଲେ ତା' ନିକଟରେ ଏଇ ଛଦ୍ମବେଶ ବଞ୍ଚାଇ ରଖିବାରେ କମ୍ ଅସୁବିଧା ଭୋଗୁଛି ? କମ୍ କଷ୍ଟ ଭୋଗ କରୁଛି ? ଜେଜେଙ୍କ ସାଙ୍ଗରେ ତ ରୀତିମତ ଫାଇଟ୍ ହୋଇଯାଉଛି ଦିନେ ଦିନେ । ମିଥ୍ୟାର ଜାଲ ବୁଣି ବୁଣି କୌଣସି ପ୍ରକାରେ ଚଳେଇଛି । କିନ୍ତୁ ସେଇ ଜାଲରେ କେତେ ବେଶି ଗୁଡ଼େଇ ତୁଡ଼େଇ ହୋଇଯାଉଛି । ତେବେ ବି ପାରୁନି ସବୁ ଦ୍ୱିଧା, ଦ୍ୱନ୍ଦ୍ୱ ଘୁଞ୍ଚାଇ ଦେଇ ତ୍ରିଦିବ ସେନ୍ଙ୍କର ନାତୁଣୀ ପରିଚୟଟା ପ୍ରକାଶ କରି ପକାଇବାକୁ ।

ଭୟ ହୁଏ । ଭୀଷଣ ଭୟ । ମନେହୁଏ ସେଇ ପରିଚୟ ପ୍ରକାଶିତ ହୋଇଗଲାକ୍ଷଣି ମାନସ ମତେ ତ୍ୟାଗ କରିବ । ମତେ ଘୃଣା କରିବ । ଧିକ୍କାର ଦେଇ କହିବ, ତମେ ଏଇଆ । ..ଆତ୍ମପରିଚୟ ଗୋପନ କରି ଅନ୍ୟର ଖୋଲାମନର କଥା ଶୁଣି ନେବା ଆଢୁଆଳରେ ରହି କାନପାତି ଅନ୍ୟର ଗୋପନ କଥା ଶୁଣିବା ପରି ହିଁ ଗର୍ହିତ । ଅଥଚ ଇଚ୍ଛା କରି ଏପରି କରିନି ।

ହଁ, ପ୍ରଥମେ ଅବଶ୍ୟ ଟିକିଏ ମଜା କରିବାକୁ ହିଁ ଏପରି କରିଥିଲି । ତାର ରାଗର ତେଜ ଦେଖି ବହୁତ ମଜା ଲାଗିଥିଲା, କିନ୍ତୁ ତା'ପରେ ନିରୁପାୟ ହୋଇଗଲି । ତାକୁ ଦିନୁଟେ ନ ଦେଖିଲେ ଯେ ରହିପାରୁନି, ତା' ସାଙ୍ଗରେ ଛଡ଼ାଛଡ଼ି ହୋଇଯିବ ବୋଲି ଭାବିଲେ ପୃଥିବୀ ଅନ୍ଧକାର ଦିଶେ ।

ଜେଜେ ଯଦି ଏଡ଼େ ବଡ଼ଲୋକ ହୋଇ ନ ଥା'ନ୍ତେ ! ବେଶ୍ ଗରିବ ଗରିବ ଜଣେ ଜେଜେଙ୍କର ନାତୁଣୀ ଯଦି ହୋଇଥା'ନ୍ତି ମୁଁ ! ମାନସ ଯେତେବେଳେ ତାର ଅଭାବର କଥା କୁହେ, ଅସୁବିଧାର କଥା କୁହେ, ସେତେବେଳେ କେତେ କଥା ବନେଇ ଚୁନେଇ କହିଲେ ଯାଇ ତା' ସାଙ୍ଗରେ ତାଳ ରଖିପାରେ । ତା'ର ଛନ୍ଦରେ ଛନ୍ଦ ମିଳାଇପାରେ ! ଜେଜେ କଥାଟା ଭୁଲ କହି ନାହାନ୍ତି । ତାମସୀର ମୁହଁରେ

ଅଳ୍ପଟିକିଏ ହସ ଫୁଟି ଉଠିଲା । 'ଉପନ୍ୟାସ ଲେଖା ହେଉଛି' । ଅବଶ୍ୟ ଖଣ୍ଡେ ନୁହେଁ, ଦୁଇଖଣ୍ଡ । ମୁଁ ଖଣ୍ଡେ ଲେଖିଚାଲିଛି । ବିଧାତା ଆଉ ଖଣ୍ଡେ ଲେଖୁଛନ୍ତି ।

ଘରେ ମାନସର କେତେ କଷ୍ଟ ! ଆଶ୍ଚର୍ଯ୍ୟ ! ନିଜର ମା' ଭଉଣୀ ତା'ର ଏଡ଼େ ନିଷ୍ଠୁର କାହିଁକି ?

ମାନସ କହେ, 'ଅଭାବରେ ସ୍ୱଭାବ ନଷ୍ଟ' । କିନ୍ତୁ ମାନସ ବି ତ କମ୍ ଅଭାବଗ୍ରସ୍ତ ନୁହେଁ ! ନିଜର ଟଙ୍କା ନିଜ ଇଚ୍ଛା ଅନୁସାରେ ନିଜେ ଗୋଟିଏ ହେଲେ ଖର୍ଚ୍ଚ କରିପାରେନି । ମା ଗଣିକରି ଗୁଣ୍ଠିକରି ଧରେଇ ଦିଅନ୍ତି । ତେବେବି ମାନସର ସ୍ୱଭାବ ନଷ୍ଟ ହୋଇଯାଇନି !

ନା, ନା, ଅଭାବରେ ସ୍ୱଭାବ ନଷ୍ଟ, ସେଇ କଥାଟା ଭୁଲ । ଯାହାର ଯାହା ସ୍ୱଭାବ । ମାନସର ମା'ଙ୍କୁ ଯଦି ପ୍ରାଚୁର୍ଯ୍ୟ ମଧ୍ୟରେ ଆଣି ବସାଇ ଦିଆଯାଏ, ସେ କଣ ମଧୁର, ସୁନ୍ଦର, ଉଦାର, ଅକୃପଣ ହୋଇଯିବେ ? ସେ କଣ କହିପାରିବେ ମାନସ ଯାହା କରୁଛି କରୁ, ମୋର ଦେଖିବା ଦରକାର ନାହିଁ, ମୁଁ ତ ସ୍ୱଚ୍ଛଳରେ ଅଛି !

ଉହୁଁ ! ବୋଧହୁଏ, ପାରିବେନି । ନିଶ୍ଚୟ ସେତେବେଳେ ବି ତଦାରଖ କରିବାକୁ ଆସିବେ— ମାନସ ଅପବ୍ୟୟ କରୁଛି କି ନାହିଁ, ଅପଚୟ କରୁଛି କି ନାହିଁ । ଯା'ଛଡ଼ା ଆଉ କିଛି ନୁହେଁ । ଆଉ କିଛି ନୁହେଁ, ଅଭାବ ଆଉ ସ୍ୱଭାବ ମଧ୍ୟରେ ଧ୍ୱନିଗତ ମେଳ ଅଛି ବୋଲି ହିଁ ସେ ଦୁଇଟିକୁ ଏକା ସାଙ୍ଗରେ ଯୋଡ଼ି ଦିଆହୋଇଛି । କବିତାପ୍ରିୟ ବଙ୍ଗାଳୀର ଯେ ଗୋଟିଏ କାବ୍ୟିକ ଅବଦାନ । ମାନସର ଅଭାବ ଘୁଞ୍ଚିଲେ ! କିନ୍ତୁ ସେ ଆଶା କ'ଣ ସତରେ ଅଛି ? ମାନସ କଣ ତ୍ରିଦିବ ସେନ୍‌ଙ୍କର ଟଙ୍କା ଛୁଇଁବ ? ତାମସୀ ଯେ ତ୍ରିଦିବ ସେନ୍‌ଙ୍କର ଏକମାତ୍ର ଉତ୍ତରାଧିକାରିଣୀ, ସେ କଥା କ'ଣ ମାନିବ ମାନସ ?

ଠିକ୍ ଏଇଠି ଯେପରି ସବୁ ଗୋଳମାଳ ହୋଇଯାଏ ତାମସୀର । ତାମସୀ ଏଇ ଅଗାଧ ସମ୍ପତ୍ତିର ଭାବୀ ମାଲିକ, ତାମସୀ ମାଲିକଙ୍କର ଆଦରର ଆଦରିଣୀ, ପ୍ରାଣର ପ୍ରାଣ, ଏ ସବୁ ବୁଝିବା ପରେ ମାନସର ମୁହଁର ଚେହେରା ଭାବିବାକୁ ବସିଲେ ତାମସୀ କିଛି ଭରସା ପାଏନି । କେବଳ ଅନ୍ଧକାର ହିଁ ଦେଖେ ।

ସେଇ ମୁହଁ ନେଇ କଣ ସେ ତାମସୀର ମୁହଁ ରକ୍ଷା କରିବ ? ହୁଏତ କହିବସିବ, ପାଗଳ ନା କଣ । ରାଜକନ୍ୟାକୁ ବିବାହ ! ହେ ରାଜକନ୍ୟା, ତୁମର

ସେଇ ଅର୍ଦ୍ଧେକ ରାଜତ୍ୱ ସହିତ ବିଦାୟ ହୁଅ ତୁମେ । ତୁମର ଛଦ୍ମବେଶକୁ ନମସ୍କାର, ତୁମର ଛଳନାକୁ ନମସ୍କାର ! ତୁମର ଦୁଃସାହସକୁ ନମସ୍କାର ! ତୁମକୁ ବିବାହ କରିବା ମୋର ଅସାଧ । ମାନସ କଣ ସେଇ କଥା କହିବ ? ଭାବୁ ଭାବୁ ହଠାତ୍ ଆଖିରେ ଲୁହ ଆସିଯାଏ ତାମସୀର ।

ବିଚାରୀ ତାମସୀ । କ'ଣ କରିବ ସେ ? କିଏ ତାର ସହାୟ ହେବ ? ବିବାହ ସମୟରେ ତ ସବୁ ଜଣାଜଣି ହୋଇଯିବ ।

ମଝିରେ ମଝିରେ ମନେହୁଏ, ଧେତ୍‌ତେରି, ରେଜିଷ୍ଟ୍ରୀ ବିବାହ ନ ହେଲେ ବା କରିପକାଇବ । କିନ୍ତୁ ସେଥିରେ ଲାଭ କଣ ? ଲୁଚେଇ ବିବାହ କଲେ ତ ତାକୁ ଯା'ଠୁ ବେଶୀକରି ପାଇବିନି । ତା' ଛଡ଼ା– ମୁକୁଟ ପିନ୍ଧି ବର ଆସିବନି ତାମସୀର ? ଆଲୁଅ ଜଳିବନି ? ପେଁକାଳୀ ବାଜିବନି ? ଅନେକ ଅନେକ ଲୋକ ଖାଇବେନି ? ସେ କିମିତି ବିବାହ ? ନା, ନା, ଏଇ ପରମ-ରମଣୀୟ ଚିରନ୍ତନ ଛବିଟିର କଳ୍ପନାରେ ଯେତେବେଳେ ବିଭୋର ହୋଇଯାଏ ତାମସୀ, ସେତେବେଳେ ଆଉ ତା'ର ମନେ ପଡ଼େନି ଖୁବ୍ ଗରିବ ଢେଙ୍କେଙ୍କର ନାତୁଣୀ ହେବାର ବାସନା ହେଉଥିଲା ଠିକ୍ ଏଇକ୍ଷଣି ।

ମାନସ କହେ, ତାର ମା ଭଉଣୀଙ୍କ ସାଙ୍ଗରେ କଣ ନା ଘର କରି ପାରିବିନି ମୁଁ । ଆଶ୍ଚର୍ଯ୍ୟ ! ମୋ ଉପରେ ଏଇଟିକକ ଆସ୍ଥା କାହିଁକି ନାହିଁ ତାର ? କିନ୍ତୁ ମୁଁ ଦେଖାଇ ଦେବି, ଦେଖାଇ ଦେବି ପାରିବି କି ନାହିଁ ! ମୁଁ ରାଗିବିନି, ସେମାନଙ୍କ କଥା ଉପରେ କଥା କହିବିନି । ସେମାନଙ୍କର ଅବାଧ ହେବିନି । ଆଉ ସେ ଦୁଇଜଣଙ୍କର କାମ ଏକା କରି ପକାଇବି । ମୁଁ ବାସନ ମାଜିବି, ଲୁଗା କାଚିବି, ଘର ଝାଡ଼ିବି, କୋଇଲା ଭାଙ୍ଗିବି, ମସଲା ବାଟିବି ।

ହଠାତ୍ ଅକାରଣ ଆଉ ଏକ ଝଲକ ଲୁହ ତାମସୀର ଆଖିରୁ ଉଛୁଳି ଗାଲରେ ଗଡ଼ିପଡ଼ିଲା ।... କାହିଁକି ? ତାମସୀର ଭବିଷ୍ୟତ୍‌କାଳୀନ ଚେହେରା ଦେଖି ? କିନ୍ତୁ ତାମସୀ ସେଇଟା ନିଜେ ହିଁ... ତେବେ ବି– ମନସ୍ତତ୍ତ୍ୱର ବ୍ୟାପାର କହି ହେବନି । ଆଉ ନିଜର ଦୁରବସ୍ଥା କଥା ଭାବି ନିଜେ କାନ୍ଦି ପକାଇଲା ତାମସୀ ।

ରାସ୍ତୁର ମା ଗିଲାସେ ଦୁଧ ଆଉ ଦୁଇଟା ବଡ଼ ବଡ଼ ମିଠା ଧରି କୋଠରିଟା ଭିତରେ ପଶିଗଲାକ୍ଷଣି ଠିଆ ହୋଇ ପଡ଼ିଲା । ତା'ପରେ ସାବଧାନରେ ପଚାରିଲା–

ବାବୁ ବହୁତ ବକିଲେ ତ ?

ତାମସୀ ଚମକି ପଡ଼ି ଜାଣିପାରିଲା ତା ଗାଲ ଦୁଇଟା ଓଦା ହୋଇଯାଇଛି । ହେଲେବି ଓଦା ଗାଲରେ ହିଁ ହସି ପକାଇଲା ସେ । ତାମସୀ କହିଲା, ବକିବେ କାହିଁକି ଯେ ? ତାଙ୍କର ସାଧ ଅଛି । କାହିଁକି, କାହିଁକି ବକିବେ ଯେ ?

ଏ ମା ! କହୁଛନ୍ତି କଣ ନା କାହିଁକି ବକିବେ ! ସେତେବେଳେ ମନେ ହେଉଥିଲା ଆସି ଠିଆ ହେଲାକ୍ଷଣି ତମକୁ ଶୂଳିରେ ବସେଇବେ କି ଜେଲ୍‌ରେ ପୂରାଇବେ । ଘରର ସମସ୍ତଙ୍କୁ ଏକାବେଳେ ଗାଳି ।

କହିଲେ କି, ତମେ ସମସ୍ତେ କଣ କର ? ଗୋଟାଏ ଝିଅକୁ ଏତେ ଗୁଡ଼ାଏ ଲୋକ ସମ୍ଭାଳି ଘରେ ରଖି ପାରନି ? କଥା ଶୁଣିଲ ! ଏ କ'ଣ ଦୁଧଖିଆ ପିଲା ହୋଇଛି ଯେ କୋଳରେ ଜାକି ଅଟକାଇ ରଖିବେ ! ମନୁ ନାନୀ ମା ତ କାନ୍ଦିକାଟି ଅସ୍ଥିର । ପ୍ରତିଦିନ ତମର ଏତେ କଣ କାମ ଝିଅ ?

ମନୁ ହେଉଛି ତ୍ରିଦିବଙ୍କ ଝିଆରୀ ।

ତାମସୀ ଚଞ୍ଚଳ ହୋଇଯାଇ କହିଲା, ସେ କଥା କହିଲେ ମଧ ତୁ ବୁଝିବୁନି, ହେଲେ ମନୁ– ପିଉସୀଙ୍କୁ ବକିବାର କଣ ଥିଲା ? ଜେଜେଙ୍କର ଏଇଟା ଗୋଟାଏ ରୋଗ ! କାହିଁ, ପିଉସୀ କେଉଁଠି ?

ସେ ତ ଚାଲିଯିବେ ବୋଲି ପେଡ଼ି ସଜାଡୁଛନ୍ତି ।

ଚାଲିଯିବେ ବୋଲି ! ତାମସୀ ବିଦ୍ୟୁତ୍ ବେଗରେ ଉଠି ଠିଆ ହୋଇପଡ଼ି କହିଲା, ସେ କଣ ? ମୁଁ ଦେଖୁଛି ସେ କେମିତି ଚାଲିଯିବେ ।

ଏ ମା ! ତମେ ଯେ ଚାଲିଯାଉଛ । ଦୁଧତକ ପିଇଦିଅ । ଏ ଝିଅ ମା, ଥଣ୍ଡା ହୋଇଯିବ ଯେ–

ତାମସୀ ଦୂରରୁ କହିଲା– ତୁ ଯା, ଖାଇଦେ । ଆଖିର ଶକ୍ତି ବଢ଼ିବ ।

ପିଉସୀ ଅବଶ୍ୟ ସତରେ ଗଲେ ନାହିଁ । ଖାଲି 'ଯାଉଛି' ବୋଲି ଟିକିଏ ସମ୍ମାନ ରକ୍ଷା କଲେ । ହେଲେବି ତ ତାମସୀ ଆସିଲା ଖୋସାମତ କରିବାକୁ ।

ଖୋସାମତ କରିବା ପରେ ଟ୍ରଙ୍କ୍‌ଟାକୁ ଠେଲି ରଖିଦେଇ ମନୋରମା କହିଲେ– ହେଲେ ତୁ ପ୍ରତିଦିନ କେଉଁଠାକୁ ଯାଉଛୁ ଯେ ? ଏକାବେଳେ ତିନି ଚାରିଘଣ୍ଟା ସମୟ–

ତିନି ଚାରି !

ପ୍ରାୟ ସେଇୟା । ଏକାବେଳେ ଖରା ଥିଲା, ବାହାରିଥିଲୁ, ଏଇଲେ କେତେ ରାତି ହେଲାଣି ଦେଖେ ।

ଆସିଲିଣି ତ ବହୁତ ବେଳ ହେଲା !... ତାମସୀ କହିଲା, ଆଚ୍ଛା, ସେଇୟା ଏବେ ହେଲା ପିଉସୀ, କିନ୍ତୁ ଦିନଟାତ ଚବିଶି ଘଣ୍ଟା । ସେଥିରୁ ଯଦି ଚାରିଟା ଘଣ୍ଟା ସମୟ ମୁଁ ନିଜପାଇଁ ଚୋରି କରି ଲୁଚେଇ ରଖିବି, ପୃଥିବୀ କଣ ରସାତଳକୁ ଚାଲିଯିବ ?

''ସମୟ ଚୋରି । ସେ ପୁଣି କି କଥା'' । ମନୋରମା କହିଲେ । ତୋ କଥା ବୁଝି ପାରୁନିଲୋ ମା । ତେବେ କାକା ଆଜି ସାଂଘାତିକ ଭାବରେ ରାଗିଛନ୍ତି । କହିଛନ୍ତି ଏଥର ତୋର ବାହା ଦେଇଦେବା ଦରକାର । ଆସନ୍ତା ମାସରେ ତ କରିଦେବେ–

ତାମସୀ ଟିକିଏ ବଙ୍କା ହସ ହସି କହିଲା...ହେଲେ ସେତେଦିନ ପର୍ଯ୍ୟନ୍ତ ଅପେକ୍ଷା କାହିଁକି ? କାଲି ସକାଳୁ ଉଠି ଯାହାର ମୁହଁ ଦେଖିବେ, ତାକୁ ହିଁ ଦେଇଦେଲେ ଯାଏ ।

ଉପହାସ କରିଦେଇଗଲା ମନୋରମାଙ୍କୁ ତାମସୀ, କିନ୍ତୁ ଯେମିତି ଡର ମାଡ଼ିଲା ତାକୁ । ଏଥର ନିଶ୍ଚିନ୍ତତାର ଦିନ ଚାଲିଗଲା । ଏଥର ସମ୍ମୁଖ ସମରରେ ଓହ୍ଲାଇବାକୁ ପଡ଼ିବ ।

ଜେଜେଙ୍କ ଆଗରେ ନିର୍ଭୟ ଭାବ ଫୁଟାଇବାର ଚେଷ୍ଟା କଲେ ମଧ ତାଙ୍କୁ ଡରେ ତାମସୀ । ଭଲରୂପେ ଡରେ ତାଙ୍କୁ । ଛୋଟ ଛୋଟ କଥାରେ ସେ ଅବଶ୍ୟ ଏକ ଧରଣର ପରାଜୟ ସ୍ୱୀକାର କରିନିଅନ୍ତି, ମେଘର ଆଢୁଆଳକୁ ଘୁଞ୍ଚିଯାଆନ୍ତି, ଆଲୋକ ଫୁଟିଉଠେ । କିନ୍ତୁ ଏଇଟା ତ ତା ନୁହେଁ । କଥାଟା ଯେ ଗୁରୁତର । ଏ ମେଘରୁ ବଜ୍ରପାତର ଆଶଙ୍କା ପ୍ରବଳ ।

ତ୍ରିଦିବ ସେନ୍ ଏଥର ସତରେ ତାମସୀର ବିବାହ କଥା ଭାବୁଛନ୍ତି । କିନ୍ତୁ ଏତେ ଦିନ କଣ ଭାବିବାର ସମୟ ଆସିନି ? ଭୟାନକ ଭାବେ ଜଣେ ଆଧୁନିକ

ତ ନୁହନ୍ତି ତ୍ରିଦିବ ସେନ୍ ଯେ କୋଡ଼ିଏ ବର୍ଷର ଝିଅକୁ 'ପିଲା' ବୋଲି ହସି ଉଡ଼ାଇ ଦେବେ ! ମନ ମଧ୍ୟରେ ଚେତନା ଥିଲା, କିନ୍ତୁ ତା' ସାଙ୍ଗରେ ଥିଲା ଗଭୀର ଗୋଟିଏ ଦୁର୍ବଳତା ।

ବିବାହ ହେଲାକ୍ଷଣି ତ ଚାଲିଯିବ । ପର ହୋଇଯିବ ।

ଯଦି ତ୍ରିଦିବ ତାକୁ ଏଇ ଘରେ ବି ପ୍ରତିଷ୍ଠିତ କରନ୍ତି, ପର ହେବା ଅଟକାଇ ହେବନି । ତ୍ରିଦିବ ଦେଖିଛନ୍ତି, ତ୍ରିଦିବଙ୍କର ଜଣେ ପିଉସା 'ଘରଜ୍ୱାଇଁ' ହୋଇଥିଲେ । ପିଉସୀ ସାରା ଜୀବନରେ ଶଶୁର ଘରର ଚେହେରା ଦେଖି ନାହାନ୍ତି । ଯେଉଁଠି ଥିଲେ ସେଇଠି ହିଁ ରହିଯାଇଛନ୍ତି । କିନ୍ତୁ ପିଉସୀ ସଦା-ସର୍ବଦା ଅସନ୍ତୋଷ ପ୍ରକାଶ କରି କହନ୍ତି, "ତୁମମାନଙ୍କ ଘରର ଅବ୍ୟବସ୍ଥା !" ତା'ଛଡ଼ା ପ୍ରତି ନିୟତ ତ୍ରୁଟି ଆବିଷ୍କାର କରନ୍ତି ମା-ବାପ-ଭାଇ-ଭାଉଜଙ୍କର । 'ଜ୍ୱାଇଁ ଆଦରଟା' ଯେ ଉଚିତ ନିୟମରେ ହେଉ ନାହିଁ, ସେ କଥାଟି କେବଳ ବୁଝାଇ ଦେଇ କ୍ଷାନ୍ତ ହୁଅନ୍ତି ନାହିଁ, ବୁଝାଇବାବେଳେ ମା-ଭାଉଜଙ୍କୁ କନ୍ଦେଇ ଛାଡ଼ନ୍ତି । ଅତଏବ ଧରିହିଁ ନେବାକୁ ହେବ, ବାହାଘରର ଅର୍ଥ ହିଁ ହେଉଛି ଝିଅ ଖର୍ଚ୍ଚର ଖାତାରେ । ଆଉ ଆପଣାର ହୋଇ ରହେନି । ସେଇଥିପାଇଁ ଉତ୍ସାହ ଲାଗୁ ନ ଥିଲା । କିନ୍ତୁ ବାହାଘରଟା ତ କେବଳ ଉତ୍ସାହ ଆନନ୍ଦର ହିଁ କଥା ନୁହେଁ, କର୍ତ୍ତବ୍ୟ ମଧ୍ୟ । ସେହି କର୍ତ୍ତବ୍ୟରେ ଏଥର ସ୍ଥିର ହେଉଛନ୍ତି ତ୍ରିଦିବ । ତେବେ ଆଜି ଗୋଟିଏ ଛୋଟ କଥାରେ ମନ ସ୍ଥିର କରି ଟିକଟ କଟାଇ ରଖିଛନ୍ତି ଦୁଇଟା । କାଲି ଝିଅଟାକୁ ନେଇ ଲାଇଟ୍ ହାଉସ୍‌କୁ ଯିବାକୁହିଁ ହେବ ଥରେ । ବଡ଼୍ଡ ଗାଳିଦିଆ ହୋଇଯାଇଛି ଆଜି । ତା'ଛଡ଼ା ନିଜେ ତ୍ରିଦିବ ମଧ୍ୟ ସିନେମା ଦେଖିବାକୁ ଭଲ ପା'ନ୍ତି । ଭଲ ଇଂରାଜୀ ଫିଲ୍ମ ଅବଶ୍ୟ ।

ଊନବିଂଶ ଶତାବ୍ଦୀରେ ଜାତ ଅନେକ ବ୍ୟକ୍ତିଙ୍କର ଧାରଣା ପରି ତ୍ରିଦିବଙ୍କର ମଧ୍ୟ ଧାରଣା 'ଦେଶୀ' ଜିନିଷ ମାତ୍ରେ ହିଁ ବାଜେ । ଏବେ ଆହୁରି ଗୋଟିଏ ଧାରଣା ମଧ୍ୟ ଜନ୍ମିଅଛି, 'ଉଡ଼ିଯିବ' 'ଉଡ଼ିଯିବ' ହେଉଥିବା ମନକୁ ଶାସନଦ୍ୱାରା ବନ୍ଧା ଯାଇପାରେ ନାହିଁ । ବାନ୍ଧିବାକୁ ହୁଏ ସଙ୍ଗ ଦେଇ, ଆମୋଦପ୍ରମୋଦ ଦେଇ, ତାର ଶୂନ୍ୟତା ପୂରଣ ପାଇଁ ଉପକରଣ ଯୋଗାଡ଼ କରି, ତାମସୀ ପାଇଁ ଏସବୁ କିଛିଟା ସମୟ ବ୍ୟୟ କରିବାକୁ ହେବ ତ୍ରିଦିବଙ୍କୁ । ଉପରଓଳିର ସେଇ ବୁଲିବାଟା ବନ୍ଦ କରିବାକୁ ହେବ ।

ରାତି ଖାଇବାବେଳେ କଥାଟା ପକାଇଲେ ତ୍ରିଦିବ, କହିଲେ, 'ତା'ହେଲେ ମନେରଖ୍। ପୁଣି ଯେପରି ଭୁଲିଯାଇ କୁଆଡ଼କୁ ବାହାରି ନ ଯାଉ।'

ତାମସୀକୁ ଏତେବେଳେ ଅନେକଟା ଅଭିନୟ କରିବାକୁ ହୋଇଛି, ସିନେମା ନାମରେ ଯଥେଷ୍ଟ ପରିମାଣ ଉତ୍ସାହ ଦେଖାଇବାକୁ ହୋଇଛି, କିନ୍ତୁ 'ଲାଇଟ୍-ହାଉସ'ରେ ଆଗାମୀ କାଲି 'ମାଟିନୀ'ରେ ଏଇ ଭୟଙ୍କର ଶବ୍ଦଟା ଯେ କ୍ରମଶଃହିଁ ସମସ୍ତ ଚେତନାକୁ ଅବଶ କରି ଦେଉଛି। ଯେପରି ଗୋଟିଏ ଅଶରୀରୀ ଛାୟା କାନ ନିକଟରେ ଠିଆ ହୋଇ କହିଚାଲିଛି– 'ଲାଇଟ୍‌ହାଉସ୍‌ରେ ମ୍ୟାଟିନୀ ଶୋ'ରେ କାଲି...କାଲି 'ଲାଇଟ୍‌ହାଉସ୍'ରେ–

ଧକ୍କା ଖାଇ ଖାଇ ଚେତନା ଶିଥିଳ ହୋଇଆସିଲେ ମଧ ପ୍ରତିବାଦ କରିବାକୁ ହେବ ନିଶ୍ଚୟ– ସେଥିପାଇଁ ତାମସୀ କ୍ଷୀଣ ପ୍ରତିବାଦ ଜଣାଇଲା। କହିଲା, ଦିପହର ଖରାରେ କାହିଁକି ଜେଜେ, ଇଭିନିଂ ଶୋ'ରେ ହିଁ ତ ଭଲ ହୁଅନ୍ତା।

ମନେ ମନେ ହସିଲେ ତ୍ରିଦିବ। ହଁ, ତାହେଲେ ତୋର ବୈକାଳିକ ଭ୍ରମଣଟା କିଛି ମାତ୍ରାରେ ଚଳିଯିବ। କୌଣସି ଗୋଟାଏ ଆଳରେ ତୁ ନିଶ୍ଚେ ବାହାରିବୁ– ସେଇଟା ହେବାକୁ ଦେବିନି।

କିନ୍ତୁ ମୁହଁରେ ହସନ୍ତି ନାହିଁ। ମୁହଁରେ କହନ୍ତି, ଇଭିନିଂଟାରେ ଗଲେ ମୁଁ ତ ମୋର କ୍ଲବ୍‌କୁ ଯାଇପାରିବି ନାହିଁ।

ତାମସୀ ମନେ ମନେ ଭ୍ରୂକୁଞ୍ଚିତ କଲା। ହୁଁଃ, ନିଜର ସବୁତକ ବଞ୍ଚାଇ ରଖିବା ଦରକାର। ଦିନଟେ କ୍ଲବ୍‌କୁ ନ ଗଲେ କଣ ଚଳିବନି ? ମୁଁ ଆଡ୍‌ଡ଼ା କରୁଛି ଭାବି ମୁଣ୍ଡରେ ନିଆଁ ଜଳୁଛି।

କିନ୍ତୁ ମୁହଁରେ କହିଲା ତାମସୀ, କଥାଟା ହେଉଛି କଣ ଜାଣିଛ ଜେଜେ ? ଦିପହର ଟାଇମ୍‌ରେ ସିନେମା ଦେଖିଲାକ୍ଷଣି ଆଜିକାଲି ମୋ ମୁଣ୍ଡ ବଥାଉଛି–

ମୁଣ୍ଡ ବଥଉଛି ! ଚିରକାଳର ପୁରୁଣା ଅସ୍ତ୍ର, ତେବେ ବ୍ରହ୍ମାସ୍ତ୍ର। ମୁଣ୍ଡ ବଥାଏ। ଯେଉଁ ରୋଗ ଦିଶେନି, ସେଇ ରୋଗହିଁ ତ ସମସ୍ୟା-ନିଧନର ଅସ୍ତ୍ର।

ତ୍ରିଦିବ ପୁଣି ମନେ ମନେ ହସିଦେଇ କହିଲେ, ସତେ ନା କଣ ! ସେଇଟା ତ ଭଲ କଥା ନୁହେଁ। ହେଲେ, ଗୋଟାଏ କାମ କରିବୁ, ତୋର ଏ ବଟୁଆ ଭିତରେ ବରଂ ଦିଇଟା ସାରିଡନ୍ ଟ୍ୟାବଲେଟ୍ ନେବୁ–

ଓଃ, ବୁଢ଼ା କି ଚଲାକ୍ । ଏବେ ମୁଁ କଣ କରିବି ! କାଲି ଯଦି ସେହି କଥା ଘଟିବ ? ଏ ଜୀବନରେ କଣ ଆଉ ମାନସ ପାଖରେ ମୁହଁ ଦେଖାଇପାରିବି ? ଟିକେଟ୍ ଦୁଇଟା ମୁଁ ନେଇଆସିଛି, ମାନସ ଠିକ୍ ଆସି ଲାଉଞ୍ଜରେ ଠିଆ ହୋଇ ରହିଥିବ । କଣ ଦେଖିବ ସେ ! ହେ ଈଶ୍ୱର, ଗୋଟାଏ କିଛି ତମେ କର ।

ଆଚ୍ଛା, କାଲି ଯଦି ମୋର 'ଅସମ୍ଭବ' ପ୍ରକାର ମୁଣ୍ଡବ୍ୟଥା ହେବ ? ଯଦି ନ ଯିବି ? ଜେଜେଙ୍କୁ ସେଥିରେ ମ୍ୟାନେଜ୍ କରି ଦିଆ ଯାଇପାରିବନି ? ହୁଏତ ହୋଇଯିବ । ଭାରି ଛଟପଟ ହେବି, ଆଖି-ମୁହଁ ଲାଲ ହୋଇଯିବ (ଲାଲ କରି ପକାଇବାର କୌଶଳ ଅଛି, ସେଇଟା କଷ୍ଟକର ନୁହେଁ) ଜେଜେ ବାଧ୍ୟ ହେବେ ବିଶ୍ୱାସ କରିବାକୁ ।

କିନ୍ତୁ ? ଖାଲି ଜେଜେଙ୍କୁ ମ୍ୟାନେଜ୍ କରିବା ତ ଶେଷ କଥା ନୁହେଁ । ମାନସର ପ୍ରଶ୍ନଟା ତ ରହିଛି । ମାନସ ଆସି ଠିଆ ହୋଇଥିବ । ଶେଷକୁ ଫେରିଯିବ । ବୁଝିବ, ମୁଁ ମୋର କଡ଼ା ମୁନିବ ପାଖରୁ ଛୁଟି ପାଇଲିନି ।

ନିଆଁ-ଦରପୋଡ଼ା ମାଲିକ-ଫାଲିକ କଥା ଏସବୁ ମୁଁ ତାକୁ କହିଲି ବା କାହିଁକି ? ତାମସୀ ଭାବିଲା—ନକହି ମଧ୍ୟ କଣ କିଛି ଉପାୟ ଥିଲା ? କେତେଥର କହିଛି ତାର ଅଫିସ୍‌ର ଫୋନ୍ ନମ୍ବର ଦେବାକୁ, ସେ ଦେଇନି । କହିଛି— ଭାରି ତ ଗୋଟାଏ ଚାକିରି, କିରାନିଟିଏ, ତା ଟେବୁଲରେ ଟେଲିଫୋନ୍ ରଖାହୋଇଛି ନା କଣ । ତା'ଛଡ଼ା ତମେ ମଧ୍ୟ କେଉଁଠାରୁ ଟେଲିଫୋନ୍ କରିବ ? ସେଇଟା ତ ପଇସା ଖର୍ଚ୍ଚ କରି ପବ୍ଲିକ୍ ଟେଲିଫୋନ୍‌ରୁ ।

ତାମସୀ ମୃଦୁମଧୁର ହସି କହିଲା— ମତେ କଣ ଆଉ ପଇସା ପଡ଼ିବ ? ମୋ ଚେହେରାଟା ଦେଖି ଖାଲିରେ ଛାଡ଼ିଦେବେ ।

ମାନସ କହିଥିଲା— ଦେଇପାରନ୍ତି, ତେବେ ଯେମିତି ଶୁଣିବେ ଶବ୍ଦଭେଦୀ ବାଣରେ ପ୍ରେମାଳାପ ଚଲାଉଛି, ସେତେବେଳେ ଆଶାଭଙ୍ଗର ଆକ୍ରୋଶରେ ଡବଲ ଚାର୍ଜ୍ଜ କରିଦେବେ ।

ଏହିପରି ହସ-ଥଟ୍ଟା ମଝିରେ ହିଁ କଥାଟା ଲୁଚି ଯାଇଥାନ୍ତା । ପ୍ରକୃତରେ ମାନସର ଅଫିସ୍‌ରେ ତାର ଫୋନ୍‌ର ସେଭଳି କୌଣସି ସୁବିଧା ନାହିଁ, ଜଣାପଡୁଛି ।

ତାହେଲେ ? ବର୍ତ୍ତମାନ ତାକୁ ଖବର ଦେବାର କୌଣସି ଉପାୟ ନାହିଁ । ବର୍ତ୍ତମାନ ଖାଲି ଚରମ ପରିଣତି ପାଇଁ ପ୍ରସ୍ତୁତ ହେବା ଦରକାର । ହେବ ତ 'ଦେହ

ଖରାପ’ ବୋଲି ପଡ଼ିରହିବା, ନ ହେଲେ ତା ଆଗ ଦେଇ ଢେଙ୍କେଙ୍କ ସଙ୍ଗେ ଯାଇ ଅପରିଚିତର ଛଳନା କରି ଅନ୍ୟ ଆସନରେ ବସିବା । ଅବସ୍ଥା ବୁଝାଇ କହିବାର ବା ମୁହଁ କେଉଁଠି ଅଛି ? ଏବେ ଯଦି ତାମସୀ କହିବାକୁ ଯିବ, ଶୁଣ, ଏ ମୋର ଢେଙ୍କେ ! ବିଶ୍ୱାସଯୋଗ୍ୟ ହେବ ସେକଥା ? ହେବନି । ହେବା ସମ୍ଭବ ନୁହେଁ । ମାନସ ଖାଲି ତାମସୀର ବ୍ୟବହାରରେ ବିସ୍ମିତ ହେବ ନାହିଁ ନୁହେଁ, ତାକୁ ଘୃଣା କରିବ ।

ସାରା ରାତି ତାମସୀକୁ ନିଦ ଲାଗିଲା ନାହିଁ । ଯିବ କି ଯିବ ନାହିଁ ? ଶେଷକୁ ଯିବାକୁ ସ୍ଥିର କଲା ।

ତେବେକେ ତ ଆଖିରେ ଆଖି ପଡ଼ିବ । ସେ ଭାଷାରେ ଅବସ୍ଥା ବୁଝାଇପାରିବନି ? ତା’ଛଡ଼ା ବୁଢ଼ା ଆଖିରେ ଧୂଳି ପକାଇ ଟିକିଏ ଆଗ ପଛ ହୋଇ ଆସ୍ତେ ଘଟଣାଟା କହିଦେବିନି ? ମାନସ ହାତରେ ଟିକେଟ୍ ଗୁଞ୍ଜି ଦେଇ ପାରିବନି ? କହି ପାରିବନି, ତମେ ବସିପଡ଼, ଦେଖ । ମୁଁ ତ ରହିଲି । କାଲି ସବୁ ବୁଝାଇବି ।– ଏଇଟା ଠିକ୍ ହେବ । ଯା’ଛଡ଼ା ଗତି ନାହିଁ ।

ତା’ପର ଦିନ ମୁହଁର ଚେହେରାରେ ରାତି ଜାଗିବାର କାହାଣୀ ଲେଖାଥିଲା ।

ତ୍ରିଦିବ ସେନ୍ କହିଲେ, ତୁ ଯେମିତି ବଡ଼ କଷ୍ଟ ପାଉଛୁ ମନେ ହେଉଛି । ତେବେ ତ ଆଖିଟା ଦେଖାଇବା ଦରକାର । ଚଷମା ବଦଳାଇବାକୁ ପଡ଼ିପାରେ ।

ତାମସୀ ବ୍ୟସ୍ତ ହୋଇ କହିଲା, ନା ନା, ଢେଙ୍କେ । ସେ କଣ । ଚଷମାରେ କଣ ଅଛି ? ଏମିତିରେ ସକାଳୁ ମୁଣ୍ଡଟା–

ଆରେ ବାବା– ହଠାତ୍ ଅକାରଣରେ ମୁଣ୍ଡ ବଥାଇବାର କାରଣ ତ ହେଉଛି ଆଖି ! ଆଖି ବିଗିଡ଼ିଲା ମାତ୍ରେ ମୁଣ୍ଡ ବଥାଇବ । ଗୋଟାଏ କାମ କରିବି, ଫେରିବାବେଳେ ବରଂ ମୁନ୍‌ସୀ ଘର ହୋଇ ଆସିବା । ଆଖି ବୋଲି ଜିନିଷ ଶୀଘ୍ର ଦେଖାଇବା ଦରକାର ।

ପୁଣି ଫେରିବାବେଳେ ! ତା ଅର୍ଥ କବଳମୁକ୍ତ ହେବାର ଉପାୟ ନାହିଁ । ...ଢେଙ୍କେ, ରକ୍ଷାକର, ସେସବୁ ଜଞ୍ଜାଳ ଲଗାଇବନି । ମୁଁ ମୋର ଆଖିକୁ ଫୁଟାଇ ଦେଇନି । କାହିଁକି, ମୁଣ୍ଡ ପାଇଁ ମୁଣ୍ଡ ବଥାଏନି ମଣିଷର ?

ଆହା ! କେଉଁଥି ପାଇଁ କଣ, ସେକଥା ପରୀକ୍ଷା କରିବା ଦରକାର ନାହିଁ ? କହି ମନେ ମନେ ହସିଲେ ତ୍ରିଦିବ ।

ତାମସୀ ଗୁମ୍ ହୋଇଗଲା । ତା'ପରେ କହିଲା, ଆପଣଙ୍କୁ କିଛି କହିବା ମାନେ ଦେଖୁଛି ବିପଦ ! ଏତେ ବ୍ୟସ୍ତ ହୋଇଯାଆନ୍ତି ।

ତ୍ରିଦିବ ସେନ୍ ହଠାତ୍ ହସିଉଠି କହିଲେ– ଆଉ ହେବନି । ଏଥର ତୋ ପାଇଁ ବ୍ୟସ୍ତ ହେବାର ଲୋକ ଧରି ଆଣିବାକୁ ପଡ଼ିବ ।

ଠିକ୍ ହୋଇଛି । ଏଥର ସୁଯୋଗ ମିଳିଛି ! ତାମସୀ ଝଙ୍କାର ଦେଇ କହିଲା– କାହିଁକି, ଆଉ ଭାର ବୋହିପାରୁନ ବୋଧହୁଏ ! ଗଳଗ୍ରହ ହୋଇଗଲିଣି ।

ତ୍ରିଦିବ ହସି ଉଠିଲେ, ରାଗିଲେ କଣ ହେବ ? ଚିରକାଳ ଏଇ ବୃଦ୍ଧର ଗଳଲଗ୍ନ ହୋଇପଡ଼ି ରହିବାକୁ ରାଜି ହେବୁ ? ରାଜି ଅଛୁ ଯଦି କହିବେ, ଲଗ୍ନ ଖୋଜିବି ।

ପ୍ରାୟ ପ୍ରକୃତିଛଡ଼ା ଏହି ହାଲୁକା ରସିକତା ଟିକକ କରି ତ୍ରିଦିବ ସେନ୍ ଆଉ ଖଣ୍ଡେ ଇଟା ବସାଇଲେ ତାମସୀର ମୁଣ୍ଡରେ । କହିଲେ, ମୁଁ ତା'ହେଲେ ଠିକ୍ ସମୟରେ ଆସି ହାଜର ହେଉଛି । ତୁ ପ୍ରସ୍ତୁତ ହୋଇ ରହିଥିବୁ । ଆଉ ଦେଖ୍, ତୋର ଏହି ଦୀନଦୁଃଖୀର ବେଶଟା ଯେମିତି ନ ଦେଖେ । ଭଲରୂପେ ସାଜସଜ୍ଜା ହୋଇଥିବୁ । ଭଦ୍ରଲୋକ ଘରର ଝିଅପରି । ସେଇ ଯେ କଣ ଗୋଟାଏ ଜରିଧଡ଼ିଆ ନୀଳଶାଢ଼ୀ ପିନ୍ଧି–

ହଁ, ସେ ଜରିଧଡ଼ିଆ ନୀଳ କ୍ରେପ୍‌ର ଶାଢ଼ୀଟା ପିନ୍ଧି ମଟରରେ ଚଢ଼ିବାକୁ ପଡ଼ିଲା ତାମସୀକୁ । ନୀଳ ଶାଢ଼ୀ, ଲାଲ୍ ବ୍ଲାଉଜ୍, ହାତରେ, ଗଳାରେ ହାଲୁକା ମୁକ୍ତାର ଅଳଙ୍କାର । ପାଦରେ ନୀଳ ମଖମଲର ମୁସଲମାନୀ ଚଟି, ହାତରେ ନୀଳ ମାଳୀର ବଟୁଆ ।

ତ୍ରିଦିବ ସେନଙ୍କ ନିର୍ଦ୍ଦେଶ । ତାମସୀ ଆଶା ଛାଡ଼ି ଦେଇଛି । ତାମସୀ ମନେ ମନେ କହିଲା– ମାନସ, ମାନସ, ମୁଁ ଓହ୍ଲାଇଲା ବେଳକୁ ତମେ ଦେଖିବ ସେତେବେଳେ କଣ ବୁଝିପାରିବ ବିଷରେ ନୀଳ ହୋଇଯାଇଛି ମୁଁ ! ତା'ପରେ ଭାବିଲା...ହେ ଈଶ୍ୱର । ଏମିତି ହେଉ ଯେ ଜେଜେଙ୍କ ଅନେକ ସବୁ ଚିହ୍ନାଲୋକ ସେ ଜାଗାରେ ଥାଆନ୍ତୁ, ଜେଜେ ଅନ୍ୟମନସ୍କ ହୋଇଯାନ୍ତୁ । –ଆଚ୍ଛା, ତା'ହେଲେ ମଧ ତାମସୀ ମାନସର ପାଖକୁ ଯିବାର ସୁଯୋଗ ପାଇଲେ ମଧ, ମାନସ କେଉଁ ଦୃଷ୍ଟିରେ ଚାହିଁବ ?

ଭାବୁ ଭାବୁ ଗାଡ଼ି ଆସି ପହଞ୍ଚିଲା 'ଲାଇଟ୍ ହାଉସ୍' ସାମନାରେ । ଦେଖିବାର କ୍ଷମତା ଅଛି ତାମସୀର ? ଗାଡ଼ିରୁ ଓହ୍ଲାଇବା ଆଗରୁ ତ ଆଖି ତଳକୁ କରିବାକୁ ପଡ଼ିଛି ତାକୁ । ମାନସ ଠିଆ ହୋଇଛି । ଠିକ୍ ଜାଗାଟିରେ ହିଁ ଅଛି– ତା'ପରେ ? ତା'ପରେ ତାମସୀ ତାର ସର୍ବାଙ୍ଗରେ ଏକ ଆହତ ଦୃଷ୍ଟିର ତୀକ୍ଷ୍ଣ ବାଣ ଅନୁଭବ କରିଛି । ସେ ଦୃଷ୍ଟି ଯେପରି ତାମସୀକୁ ଗୋଡ଼ାଇଛି, ସର୍ବାଙ୍ଗରେ ଅଗ୍ନିର ମଶାଲ ବୁଲାଇ ଦେଉଛି, ଯେପରି ତାକୁ ଧିକ୍କାରରେ ଜର୍ଜରିତ କରୁଛି । କିନ୍ତୁ ପୃଥିବୀ ଦ୍ୱିଧା ହେଉ ନାହିଁ । ସେ, ଓଃ ! ମୁହଁ ଲୁଚାଇପାରୁନି ।

ମାନସ କଣ ହଠାତ୍ ଏହି ପ୍ରବଳ ଖରାର ଦିପହରରେ ଗଦାଏ ଲୋକଙ୍କ ଭିଡ଼ ଭିତରେ ଠିଆ ହୋଇ ଶୋଇପଡ଼ିଥିଲା ? ଶୋଇ ଶୋଇ ସ୍ୱପ୍ନ ଦେଖୁଛି ? ନା 'ଭ୍ରାନ୍ତିବିଳାସ'ର ଯମକ ରହସ୍ୟର ଗଳ୍ପକାହାଣୀ ପ୍ରକୃତ ଜୀବନରେ ଆସି ଦେଖା ଦେଲା ? ମାନସ କଣ ରଡ଼ି ପକାଇବ 'କିଏ-କିଏ' କହି ? ନା ପଳାଇଯିବ ଏଠୁ ?

ନା, ଚିତ୍କାର କରି ଉଠିଲାନି ମାନସ । ପଳାଇ ଗଲା ନାହିଁ । 'ଭ୍ରାନ୍ତିବିଳାସ'ର କଳ୍ପନାବିଳାସକୁ ମଧ୍ୟ ଜାବୁଡ଼ି ଧରିଲାନି, ଖାଲି ସ୍ତବ୍ଧ ହୋଇ ଚାହିଁ ଠିଆହୋଇ ରହିଲା । ସ୍ୱପ୍ନ ଦେଖୁଛି ଭାବି ନିଜକୁ ଭୁଲାଇବାକୁ ଯିବ, ଏଭଳି ପାଗଳ ନୁହେଁ ମାନସ । କେବଳ ପ୍ରଥମ ଚମକର ଧକ୍କାଟା ସମ୍ଭାଳିବାକୁ ବେଶ୍ କେତେ ସମୟ ଲାଗିଲା । ସମୟ ନେଇ ଦେଖିବାର ସମୟ ମିଳୁଛି, ସିନେମା ଆରମ୍ଭ ହେବାକୁ ଏବେ ମଧ୍ୟ ଡେରି ଅଛି । ଲାଉଞ୍ଜ୍‌ରେ ବିରାଟ ଭିଡ଼ । କିନ୍ତୁ ସହସ୍ର ଲୋକଙ୍କ ଭିଡ଼ ଭିତରେ କଣ ତାମସୀକୁ ଚିହ୍ନିବାକୁ ଭୁଲ୍ ହେବ ?

ଏ ତାହେଲେ ତାମସୀର ମୁନିବ ? ଯାଙ୍କରି ସହଚାରିଣୀ ସଙ୍ଗିନୀର ଚାକିରି ମାନସୀର ? ଷ୍ଟେନୋ ନୁହେଁ, ପି.ଏ ନୁହେଁ, କେବଳ ରଙ୍ଗ-ସଙ୍ଗିନୀ ।

ବୃଦ୍ଧ ! ସେଇଟା ବୟସରେ । ଚେହେରାରେ କାହିଁ ତ ଖୁବ୍ ବେଶି ବାର୍ଦ୍ଧକ୍ୟର ଛାପ ପଡ଼ି ନାହିଁ ! ମଜବୁତ୍ ଦୀର୍ଘ ଦେହ, ସିଧାସଳଖ ସତେଜ । ମୁହଁର ଚେହେରାରେ ଆଭିଜାତ୍ୟର ଦୀପ୍ତି ସହିତ ବିଶେଷ ଏକ ଆତ୍ମପ୍ରତିଷ୍ଠାର ଦୃପ୍ତଭଙ୍ଗୀ ।

ଆକୃତି ଦେଖି ପ୍ରକୃତି ବୁଝିବା କଠିନ । ଭିତରେ ଭିତରେ ଓମରଖୈୟାମ୍ । ହାତ ପାଖରେ ସର୍ବଦା ଗୋଟିଏ ତରୁଣୀ ସଙ୍ଗୀର ପ୍ରୟୋଜନ । ହଁ, ଏ ଧରଣର ଚରିତ୍ରର ଅଭାବ ନାହିଁ ଜଗତରେ ।

କିନ୍ତୁ ତାମସୀ ? ସେ ଏତେ ନିର୍ଲଜ୍ଜ, ଏତେ ଅସନା, ଏତେ ଜଘନ୍ୟ ! ସେ ଲୋକଙ୍କୁ ଦେଖାଇ ଘରିବ ସାଜେ, ଏହି କୁଚରିତ୍ର ଲୋକଟା ପାଖରେ ନୀଳାମ୍ବରୀ ସାଜି ତାଙ୍କରି ଗାଡ଼ି ଚଢ଼ି ଘୂରିବୁଲେ, ବିଲାତି ପଡ଼ାରେ ସିନେମା ଦେଖିବାକୁ ଆସେ, କୋଉନା କୋଉ ହୋଟେଲରେ ଖାଇବାକୁ ଯାଏ ? ହଁ, ଚାକିରିଟା ତ ତାର କେଉଁ ଜାତିର ସେକଥା ସେ କହିଥିଲା । ସତ, ତେବେକେ ଏତେ ବେଶୀ ଯେ ହୋଇପାରେ, ଏତେ ବେଶୀ ହେବା ଯେ ସମ୍ଭବ– ସେ କଥା କଣ ମାନସ ପକ୍ଷରେ ଧାରଣା କରିବା ସମ୍ଭବ ଥିଲା ?

'ନାରୀ ଛଳନାମୟୀ' ବୋଲି ଗୋଟିଏ କଥା ଅଛି, ମାନସ ପାଖରେ ହିଁ ସେଇଟା ଏଭଳି ଭୟଙ୍କର ସତ୍ୟ ହୋଇ ଦେଖାଦେବ ? ଆଶ୍ଚର୍ଯ୍ୟ ! ତାମସୀ ଏମିତି ! ପ୍ରତିଦିନର ଦେଖା ସେହି ରୂକ୍ଷ କେଶ, ପ୍ଲେନ୍ ଅତି ସାଧାରଣ ଶାଢ଼ୀ ପିନ୍ଧା ନିରାଭରଣା ତାମସୀକୁ ମନେ ପକାଇବାକୁ ଚେଷ୍ଟା କଲା ମାନସ । ଝାପ୍‌ସା ହୋଇ କମ୍ପିତ ହେବାକୁ ଲାଗିଲା ସେ ଚିତ୍ରଟା । ତାକୁ ଆଢୁଆଳ କରି ସ୍ପଷ୍ଟ ପ୍ରତ୍ୟକ୍ଷ ନିର୍ଲଜ୍ଜ ଚେହେରା ଧରି ଠିଆହୋଇ ରହିଲା ନୀଳ ଜରୀର ଚକ୍‌ମକ୍ ଶାଢ଼ୀ ଆଉ ମୁକ୍ତାର ମାଳା ପିନ୍ଧିଥିବା ଏଇ ଛଳନାମୟୀ ମାୟାବିନୀ !

ଭିଡ଼ଟା କ୍ରମଶଃ ହାଲୁକା ହୋଇଯାଉଛି, ସମସ୍ତେ ଯେ ଭିତରେ ପଶିଯାଉଛନ୍ତି, ବୋଧହୁଏ ମାନସର ଖିଆଲ ହେଉନଥିଲା । ହଠାତ୍ ଜଣକର ତୀବ୍ର ଉପହାସ, ଶୁଣି ଚୈତନ୍ୟ ଆସିଲା । କିଏ ଯେପରି ପାଖରୁ କହିଲା– କଣ ଭାଇନା ସିନେମା ଦେଖିବାକୁ ଆସିଛନ୍ତି ନା ଜୀଅନ୍ତା ସୁନ୍ଦରୀମାନଙ୍କ ରୂପଯୌବନ ? ସେତେବେଳଠାରୁ ତ ଆଁଟିଏ କରି–

ଘୃଣାରେ ଧିକ୍‌କାରରେ ମାନସ ଘୁଞ୍ଚି ଆସୁଥିଲା, ଠିକ୍ ସେହି ସମୟରେ ତା ଆଡ଼କୁ ଘୁଞ୍ଚି ଆସିଲା ନୀଳପରୀ ।

କଣ କହିବାକୁ ଯାଇ ଯେପରି ଓଠ ଥରିଲା, ଥରଟେ ଚାହିଁଲା, କଥା କହିଲାନି, କାଲିର ସେ ଟିକେଟ୍ ଦୁଇଟା ବଢ଼ାଇ ଦେଲା ମାନସ ଆଡ଼କୁ । ମାନସର ଅନେକ ଦୁଃଖର, ଅନେକ ଆଶାର ଅନେକ ସ୍ୱପ୍ନ ଆଉ ଅନେକ କଳ୍ପନାରେ ଅଭିଷିକ୍ତ ଟିକେଟ୍ । ତା ଘରର ଏକ ସପ୍ତାହର ବଜାର ଖର୍ଚ୍ଚ ଟଙ୍କାର ଦାମ୍‌ରେ ସେ ଟିକେଟ୍ ଆସିଛି । ନିର୍ବୋଧ ପରି ସେ ଟଙ୍କାଟା ଖର୍ଚ୍ଚ କରିଛି ମାନସ ।

ଭଲ ହୋଇଛି ! ଉଚିତ ଶାସ୍ତି ହୋଇଛି ! ତେବେବେ ଭଗବାନ୍‌ଙ୍କ ଦୟା ଯେ ସେହି ଟିକଟ ଉପର ଦେଇ ଶିକ୍ଷା ମିଳିଗଲା । କିଏ କହିପାରେ ଆହୁରି କେତେ ଅନିଷ୍ଟ ହୋଇପାରିଥାନ୍ତା ।

କିନ୍ତୁ ଆଜିର ଏହି ଆସିବାଟା ସହିତ ଗତକାଲିର ଘଟନାକୁ ତ କୌଣସିମତେ ଗୋଟିଏ ଶିକୁଳିରେ ବନ୍ଧା ହୋଇପାରୁନି । ଟିକେଟ ଦୁଇଟା କାଲି ତାହେଲେ କାଢ଼ି ରଖିଲା କାହିଁକି ତାମସୀ ? କାହିଁକି ଏକାନ୍ତ ନିର୍ବୋଧତା ପ୍ରକାଶ କଲା ମାନସକୁ ଆଜି ଏଠାକୁ ଆସିବା ପାଇଁ ? ମାନସ ଆଗରେ ନିଜର ସ୍ୱରୂପର ଉଦ୍‌ଘାଟନର ଇଚ୍ଛା ହିଁ କଣ ଥିଲା ତାର ? ନାଃ ଆଜିର ଏ ଆସିବାଟା ହିଁ ଆକସ୍ମିକ । ହୁଏତ ବଡ଼ଲୋକ ମାଲିକର ହଠାତ୍ ଖିଆଲ ହୋଇଛି । ଅଥବା ଗରିବ ସାଜି ଗରିବ ମାନସ ସହିତ ପ୍ରେମର ଖେଳ ଖେଳିବାର ସଉକ ମେଣ୍ଟିଯାଇଛି ବୋଲି ମାନସର ମୋହଭଙ୍ଗ ପାଇଁ ମୋହମୁଦ୍‌ଗରର ବ୍ୟବସ୍ଥା ଏଇଟା । ଏ ଦେଖାଇ ହେବାଟା ଇଚ୍ଛାକୃତ ।

ଆଚ୍ଛା, ମାନସ ମଧ ଆଘାତ ଦେଇପାରେ । ସେ ଚିହ୍ନି ପାରିବନି ଏ ପ୍ରସାରିତହାତ ତରୁଣୀକୁ । ଅତଏବ ଉଚ୍ଚକୁ ଟଙ୍ଗା ହୋଇଥିବା ଫଟୋଗୁଡ଼ାକ ଦେଖିବାକୁ ଲାଗିଲା ସେ । ଏକାନ୍ତ ପାଖରେ ଠିଆହୋଇ ଯେଉଁ ଝିଅଟା ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଛି ତାକୁ ସେ ଚିହ୍ନୁନାହିଁ– ଜୀବନରେ କେବେ ଦେଖିନି ।

ତାମସୀ କଣ ମାନସର ଆଖିରେ ସେହି ଅପରିଚିତର ଦୃଷ୍ଟି ଦେଖି ଅବାକ୍ ହେଉଛି ? ବୁଝିପାରୁନି ? ନା ନିଜର ମତଲବ ଆଉ କାମ କରୁନି ଦେଖି 'ଭ୍ରାନ୍ତିବିଳାସ'ର କଥା ଚିନ୍ତା କରୁଛି ? ହୁଏତ ସେଇୟା କରୁଛି ।

ତେବେବେ ତାମସୀ ଈଷତ୍ କମ୍ପିତ ଗଳାରେ କହୁଥିଲା– ଏ ଟିକେଟ୍ ଦିଇଟା ?

ଟିକେଟ୍ ଦିଇଟା ! ଟିକେଟ୍ ଦିଇଟା ଫେରସ୍ତ ଦେବାକୁ ଆସିଛି ସେ ! ତାର ଅର୍ଥ ଭ୍ରାନ୍ତି-ବିଳାସ ନୁହେଁ । ସିନେମାରେ ଦେଖା ହେବା ଭିନ୍ନ ପରିବେଶରେ ଦୁଇ ଯମକର ଗଳ୍ପ ନୁହେଁ । ପ୍ରତ୍ୟକ୍ଷ ସତ୍ୟ । ନିଷ୍ଠୁର ନିର୍ଲଜ୍ଜ ସତ୍ୟ । ଅତଏବ ମଣିଷ ଚକିତ ହେବ । ଆକାଶରୁ ପଡ଼ିବ । – କହିବ ମତେ କହୁଛନ୍ତି ।

ତାମସୀ ଅଭିମାନଭରା ଆଖିରେ କହିଲା, ତାହେଲେ କାହାକୁ ଆଉ କହୁଛି ?

ରକ୍ଷା କରନ୍ତୁ । ଆପଣ ବୋଧହୁଏ ଚିହ୍ନିବାକୁ ଭୁଲ୍ କରିଛନ୍ତି ।

ଚିହ୍ନିବାରେ ଭୁଲ୍ କରିଛି ! ତାମସୀ ତୀକ୍ଷ୍ଣ ହେଲା, ଚିହ୍ନିବାକୁ ଯଦି ବା ଭୁଲ ହୁଏ, ଗଳାର ସ୍ୱର ଭୁଲ ହୁଏ ନାହିଁ । ସେଠାରେ ଯମଜ ଭାଇଙ୍କ ଭୂମିକା ନେଇ ଲୋକଙ୍କ ଆଖିର ଦୃଷ୍ଟିକୁ ଫାଙ୍କିଦେଇ ହେବନି ।

ମାନସ ଆହୁରି ଅଧିକ ଭଦ୍ର ହେଲା– ଦେଖନ୍ତୁ, ବୁଝିପାରୁ ନାହାନ୍ତି ଆପଣ, ଆପଣଙ୍କର କେଉଁଠି ଗୋଟାଏ ଭୀଷଣ ଭୁଲ୍ ହେଉଛି । ଆପଣ ହୁଏତ କୌଣସି ସାଦୃଶ୍ୟ ଦେଖି ବିଭ୍ରାନ୍ତ ହେଉଛନ୍ତି ।

ସାଦୃଶ୍ୟ ଦେଖି ! ସାଦୃଶ୍ୟ ଦେଖି ବିଭ୍ରାନ୍ତ ହେଉଛି ? ତାମସୀ ହଠାତ୍ କାନ୍ଦ କାନ୍ଦ ହୋଇଗଲା । ମାନସ, ତମେ ରାଗିଛ, ବୁଝିପାରୁଛି । ତମେ ମୋ ଅବସ୍ଥା ଜାଣି ନାହଁ । ମୋର ଏପରି ଅଭୁତ ନ ହୋଇ ଉପାୟ ନାହିଁ । ବାଧ୍ୟ ହୋଇ ମତେ...

କି ହଇରାଣ ! ଲାଗୁଛି ଆପଣଙ୍କର ମୁଣ୍ଡରେ କିଛି ଗୋଳମାଳ ଅଛି । କ୍ଷମା କରିବେ ।

ମାନସ ! ତାମସୀର କଣ୍ଠରେ ଅଧିକ କାତରତା ଫୁଟିଉଠିଲା, ବୁଝିପାରୁଛି ମତେ ଦେଖି ତମର କଣ ମନେ ହେଉଛି କି ଘୃଣା ହେଉଛି, କିନ୍ତୁ ଏବେ ଯଦି ପ୍ରକୃତ କଥା କହିବାକୁ ବସିବି, ତମେ ତାହା ବିଶ୍ୱାସ କରିବନି । ତମେ ମତେ ମିଥ୍ୟାବାଦୀ ବୋଲି ଭାବିବ । ସେ ଚେଷ୍ଟା ଏବେ କରୁନି । ଖାଲି ତମକୁ ହାତ ଯୋଡୁଛି, ଟିକେଟ୍ ଦୁଇଟା ତମେ ନେଇଯାଅ । ଏବେ ମଧ ସମୟ ଅଛି, ଗୋଟିଏ ହୁଏତ ବିକିଦେଇ ପାରିବ ।

ମାନସ ତୀବ୍ର ଅଥଚ ଚପା କଣ୍ଠରେ କହିଲା, ହଠାତ୍ ଆପଣଙ୍କର ଦିଖଣ୍ଡ ଟିକଟରୁ ମୁଁ ଖଣ୍ଡେ ବିକିଦେବି ! ଯାଠାରୁ ବଳି ଅର୍ଥହୀନ କଥା ମତେ ଜଣା ନାହିଁ, ନମସ୍କାର !... ଦ୍ରୁତପାଦରେ ଆଗେଇଗଲା ମାନସ ।

'ମାନସ, ମାନସ !' –ତାମସୀ ଭୁଲିଯାଉଛି ଏଇଟା କେଉଁ ଜାଗା । ତାର ମନେ ହେଲା ମାନସ ଚିରଦିନ ପାଇଁ ଚାଲିଗଲା । ସେ କଣ ତା ପଛେ ପଛେ ଧାଇଁବ ?

ପିଠି ଉପରେ ଗୋଟିଏ ଭାରି ହାତର ପାପୁଲି ରହିଲା, ତ୍ରିଦିବ ସେନ୍ ମୃଦୁ ହସି କହିଲେ– ତାମସ୍, ଟୋକାଟା କିଏ ?

‘ଜାଣେନି, କେହି ନୁହେଁ’ କହି ତାମସୀ ପ୍ରାୟ କାନ୍ଦିବା ବନ୍ଦ କରୁ କରୁ ପାଖରୁ ଦୂରେଇଗଲା ।

ତ୍ରିଦିବ ମଧ୍ୟ ଅଗତ୍ୟା ଘୁଞ୍ଚିଆସି କହିଲେ, ଯେତେବେଳେ କହୁଛୁ କେହି ନୁହେଁ, ସେତେବେଳେ ତ ଧରିନେବାକୁ ହେଉଛି ଅନେକ କିଏ ! କିନ୍ତୁ ସେ ଲକ୍ଷ୍ମୀଛଡ଼ା ବାରବୁଲା ଭିଖାରି ଭଳି ଚେହେରାର ଟୋକାଟା ତୋର କିଏ ହେଲା କିପରି କହିଲୁ ମତେ ! କହିବାକୁ ହିଁ ପଡ଼ିବ । ସେଇଟା ପାଇଁ କେବଳ ପ୍ରତିଦିନ ଉପରଓଳି ନିଜେ ତୁ ମଧ୍ୟ ଭିଖାରି ସାଜି ଗଛତଳକୁ ଧାଉଁଛୁ । ଛି, ଛି, ତାମସ୍ ! ତୋ ରୁଚି ଏମିତି ?

ମୁଁ ସିନେମା ଦେଖିବିନି । ମୁଣ୍ଡ ବଥାଉଛି– କହି ତାମସୀ ଦ୍ରୁତପାଦରେ ଓହ୍ଲାଇଯାଇ ଗାଡ଼ିରେ ଚଢ଼ି ବସିଲା । ସେହି ପ୍ରକାଣ୍ଡ ରାଜକୀୟ ଗାଡ଼ିଟାରେ । ତ୍ରିଦିବ ସେନ୍ ଅବଶ୍ୟ ଚଢ଼ି ବସିଲେ । ଆଉ ତାଙ୍କର କଡ଼ା ଚେହେରାର ଆଢୁଆଳରେ ଟିକିଏ ପିଲାଳିଆ ହସ ଖେଳିଗଲା । କିନ୍ତୁ ସ୍ୱର ଗମ୍ଭୀର ।

ହୁଁଃ, ସଭ୍ୟତାଟା ତ ବେଶ୍ ଭଲ ଦେଖାଇଲୁ । ହବ ତ, ଅସଭ୍ୟମାନଙ୍କ ସାଙ୍ଗରେ ମିଶିଲେ ଏଭଳି ହୁଏ ! ସେ କିଏ ?

କହିଲି ତ କେହି ନୁହେଁ । ଜାଣିନି ମୁଁ, ଚିହ୍ନିନି ତାକୁ !

ତ୍ରିଦିବ ଏଥର ସ୍ପଷ୍ଟ ହସିଦେଇ କହିଲେ, ତୁ ଚିହ୍ନିନୁ ଏମିତି ତ ମନେ ହେଉନି ! ସେଇ ଟୋକା ତତେ ନ ଚିହ୍ନିବାର ଆଳ ଦେଖାଇ ଅପମାନ କରିଦେଇଗଲା । ଏ ଅପୂର୍ବ ନିଧିଟା ସଂଗ୍ରହ କରାଗଲା କେଉଁଠାରୁ ?

ତାମସୀ ନିରୁତ୍ତର । ଅନ୍ୟପଟକୁ ମୁହଁ ବୁଲାଇ ବସି ରହିଲା, ଆଜି ବୋଧହୁଏ ପ୍ରତିଜ୍ଞା କରିଛି ବୁଢ଼ା ରାଗୁ, ଗାଳିଦେଉ, ମାରୁ, କାଟୁ, ମୁଁ ଡରିବିନି ।

ତ୍ରିଦିବ କିନ୍ତୁ ମରା କଟା ଆଡ଼କୁ ଗଲେ ନାହିଁ । ଗାଳି ସୁଦ୍ଧା ଦେଲେ ନାହିଁ । ଗମ୍ଭୀର ହୋଇ କହିଲେ, ତାକୁ କୋଉଠୁ ପାଇଛୁ ? ସେ କଥାଟା ମୋର ଜାଣିବା ଦରକାର ।

‘ତା ଜାଣି ଲାଭ କଣ ?’ ତାମସୀ ଝଙ୍କାର ଦେଇ ଉଠିଲା, ‘ତା ସହିତ କଣ ମୋର ବାହା ଦେବ ?’

ତ୍ରିଦିବ ଚଟ୍‌କିନା କିଛି କହିଦେଲେନି । ଆହୁରି ଗମ୍ଭୀର ହୋଇ ଆସ୍ତେ କହିଲେ– କଣ ଯେ ହୋଇପାରେ, କଣ ଯେ ନ ହୋଇପାରେ କିଛି କହିହେବନି । ସବୁ ହୋଇପାରେ, ତେବେ ଟୋକାଟା କେତେ ପରିମାଣରେ ଲକ୍ଷ୍ମୀଛଡ଼ା ସେଇଟା ଜାଣିବା ଦରକାର । ତା ଠିକଣାଟା ମତେ ଦେ ।

ତା ଠିକଣା ! ହଠାତ୍ ଡରିଯାଇ କାନ୍ଦି ପକାଇଲା ତାମସୀ ! 'ତାର କଣ ଦୋଷ ? ତାକୁ ଆପଣ ଅପମାନ କରିବାକୁ ଯିବେ କାହିଁକି ? ସେ ତ ଆପଣଙ୍କ ଘରକୁ ଯାଏନି । ଯାହା କହିବା କଥା ମତେ କହନ୍ତୁ ।'

ତ୍ରିଦିବ ସେନଙ୍କ ଗାମ୍ଭୀର୍ଯ୍ୟର ଅନ୍ତରାଳରେ ଟିକିଏ ଗୋପନ ହସ ଫୁଟି ଉଠିଲା । କହିଲେ, ନା ତାକୁ ଟିକିଏ ଶାସ୍ତି ଦେବା ଦରକାର ।

କଦାପି ନୁହେଁ । ତାମସୀ ଏକାବେଳେ ମରିକି ସରି ଅବସ୍ଥାକୁ ଆସିଗଲା । 'ତାକୁ ଖାଲି ଖାଲି ଶାସ୍ତି ଦେବାର କଣ ଦରକାର ? ସେ ଗରିବ, କିନ୍ତୁ ମହତ୍ । ଅନେକ ଉଚ୍ଚ ଜଗତର ଲୋକ । ଗରିବ ବୋଲି ନିଜକୁ 'ଛୋଟ' ଭାବେନି, ପଇସାକୁ ଘୃଣା କରେ ।'

ଅଭିଜ୍ଞ ତ୍ରିଦିବ ସେନ୍‌ଙ୍କର ବୁଝିବାକୁ ଅସୁବିଧା ହୁଏ ନାହିଁ କେଉଁଥିପାଇଁ କଣ ହୋଇଛି । ସେଇ ଭିକମଗା ଘରର ପୁଅଟା ନିଶ୍ଚୟ ବଡ଼ଲୋକଙ୍କ ଘର, ଗାଡ଼ି, ବେଶ-ପୋଷାକ ଦେଖି ହିଂସାରେ ମରିଯାଇଛି, ଆଉ ସେ ଜ୍ୱାଳାରେ ଚିକ୍‌କଣ ଚାକ୍‌କଣ ବଡ଼ ବଡ଼ କଥା କହିହୁଏ, ସେଇୟା ଶୁଣି ମୋହିତ ହୋଇଯାଇଛି ନାତୁଣୀଟି ।

କିନ୍ତୁ କେତେଦୂର ଆଗେଇଛି ? ଖାଲି କଥାବାର୍ତ୍ତା ନା ଘୋରତର ପ୍ରେମ ? ମନେ ହେଉଛି ଶେଷଟା । ଏମିତିରେ ପିଲାଟା ଦେଖିବାକୁ ନିହାତି ମନ୍ଦ ନୁହେଁ, ମୁହଁର ଭାବରେ ଅହଙ୍କାର ଅଛି ।

ସେ ଭାବଟାକୁ ପସନ୍ଦ କରନ୍ତି ତ୍ରିଦିବ । ଦୈନ୍ୟଭାବ ତାଙ୍କର ଅସହ୍ୟ । ହଁ, ନିଜର ପ୍ରଭାବଟା ବେଶ୍ ବିସ୍ତାର କରିଛି । ମୋର ବୋକୀ ନାତୁଣୀଟା ତାର ମନ ପାଇବା ପାଇଁ ବୋଧହୁଏ ଦୀନଦୁଃଖୀ ସାଜି ତାରି ପାଖକୁ ଯାଉଛି । ହଁ, ତାରି ପାଖକୁ ହିଁ ଯାଉଛି । ଆଉ କେଉଁଠାକୁ ଯିବ ? ସିନେମା ଟିକେଟ୍ ଫେରାଇ ଦେଉଥିଲା ତାମସୀ । ତା ଅର୍ଥ ସେମାନଙ୍କ ନିଜର କଣ ଗୋଟାଏ ବ୍ୟବସ୍ଥା ଥିଲା । ମୁଁ ସେଇଟାକୁ ନଷ୍ଟ କଲି, ମୁଁ 'ଡଗ୍ ଇନ୍ ଦି ମେଞ୍ଜର୍' ହେଲି । ହେଲେ ବୁଢ଼ାଲୋକ

ହେଲେ ସେଇୟା ହୁଅନ୍ତି । ଯୌବନର ପାନପାତ୍ରରେ ବାର୍ଦ୍ଧକ୍ୟ ଆସି ବିଶ୍ରାମ ନେବାକୁ ଚାହେଁ । ଯୌବନରେ କି ଅସୁବିଧା କରୁଛି ଚାହିଁ ଦେଖେନି । ଥାଉ, ସେଇଟାହିଁ ତ ଜଗତର ନିୟମ । କିନ୍ତୁ ହାଲୁକା ହେଲେ ଚଳିବନି । ଗମ୍ଭୀର ହୋଇ କହିଲେ, ପଇସାକୁ ଘୃଣା କରୁଛନ୍ତି ? ସେଥିପାଇଁ ସେ ମହତ୍ ? କିନ୍ତୁ ଯା ଭିତରେ ମହତ୍ତ୍ୱଟା କେଉଁଠି ? ପଇସା ଜିନିଷଟା ଖରାପ ?

ନିଶ୍ଚୟ ଖରାପ । ତାମସୀ ତର୍କ ସ୍ୱରରେ କହିଲା, ଖରାପ ତ । ପଇସା ହେଲେ ଲୋକଙ୍କ ପ୍ରାଣରେ ଆଉ ମାୟା ଦୟା ରହେନି ।

ସତରେ ରହେନି ? ଗରିବମାନଙ୍କର ଭାରି ରହେ ।

ରହେ ତ ।

ହୁଁ ! ସମାଜତତ୍ତ୍ୱର ଅନେକ କିଛି ତଥ୍ୟ ଜାଣି ପକାଇଲୁଣି ଦେଖୁଛି । ସେଇଟା ହିଁ ବୋଧହୁଏ ଶିକ୍ଷାଗୁରୁ ? କିନ୍ତୁ, ଏ ଭୁଲ ଶିକ୍ଷା ତାମସ୍ ! ଲକ୍ଷ୍ମୀ ହେଉଛନ୍ତି ଶ୍ରୀ, ଲକ୍ଷ୍ମୀ ହିଁ ହେଉଛନ୍ତି ଶୋଭା । ଲକ୍ଷ୍ମୀ ପରମା ଦେବୀ । ପଇସା ଯଦି ଗୋଟାଏ ଘୃଣାର ବସ୍ତୁ ହୋଇଥାନ୍ତା, ସବୁ କାଳରେ, ସବୁ ଦେଶରେ, ସବୁ ସମାଜରେ ଲକ୍ଷ୍ମୀଙ୍କୁ 'ଦେବୀ' ବୋଲି କହନ୍ତେ ନାହିଁ । ଟଙ୍କାକୁ କେଉଁମାନେ ଘୃଣା କରନ୍ତି, ବଡ଼ଲୋକଙ୍କୁ କେଉଁମାନେ ଗାଳିମନ୍ଦ ଦିଅନ୍ତି, ଜାଣିଛୁ ? ଅକ୍ଷମମାନେ । ସେହି ବଡ଼ ବଡ଼ ବଡ଼ପଣିଆ କଥା ହେଉଛି ଅକ୍ଷମତାର ଚିହ୍ନ । କିନ୍ତୁ ଦାରିଦ୍ର୍ୟ ଭିତରେ କୌଣସି ମହିମା ନାହିଁ ତାମସୀ, ଲକ୍ଷ୍ମୀଙ୍କୁ ନ ପାଇବା ଭିତରେ ମଧ୍ୟ କୌଣସି କୌଶଳ ନାହିଁ ।

ତାମସୀ କ୍ରୁଦ୍ଧ ସ୍ୱରରେ କହିଲା, ତାହେଲେ ଯେତେସବୁ ଚୋରା କାରବାରୀ ଆଉ ଭେଜାଲ ମିଶାଉଥିବା ଲୋକମାନେ ବହୁତ ପୌରୁଷଶାଳୀ ?

ତ୍ରିଦିବ ହସି ପକାଇଲେ । କହିଲେ– ତୋର କଥାଟା କେମିତି ହେଲା ଜାଣିଛୁ ! ପଚା ମାଛ ହେଲେ ଯଦି ଦେହ ଖରାପ ହୁଏ, ମାଛ ଖାଇଲେ ମଧ୍ୟ ଦେହ ଖରାପ ହେବନି କାହିଁକି ? ପ୍ରକୃତରେ ମଝିରେ ଗୋଟାଏ ଗୋଲକଧନ୍ଦା ରହିଛି । ଆଉ ସେ ଗୋଲକଧନ୍ଦା ବା ଠକାମିଟା ତମମାନଙ୍କର ସେ ଚକ୍‌ଚକ୍ କରୁଥିବା ଗୁଳି ମାରୁଥିବା ଲୋକଗୁଡ଼ାକ କରୁଛନ୍ତି । ଜାଣିଛୁ, ଦୈବାତ୍ ଯଦି ସେମାନଙ୍କର କାହାର ହଠାତ୍ ବହୁତ ଟଙ୍କା ହୋଇଯାଏ, ସେମାନେ ତମମାନଙ୍କର 'ଫାଶିର ଆସାମୀ' ବଡ଼ଲୋକମାନଙ୍କ ପରି ଗରିବର ଦେହରେ କାଦୁଅ ପକାଇ

ଗାଡ଼ିରେ ହର୍ଣ୍ଣ ବଜାଇ ଚାଲିଯିବେ। ବରଂ ଅନେକ ଦିନର ଶୋଧ ନେବାପାଇଁ ବେଶି କାଦୁଅ ପକାଇବେ। ସେତେବେଳେ ଲକ୍ଷ୍ମୀଛଡ଼ା ପୁରୁଣା ବନ୍ଧୁମାନଙ୍କ ଘରେ ସେମାନଙ୍କର ଚୁଟି ସୁଦ୍ଧା ଦେଖାଯିବନି। ଲକ୍ଷ୍ମୀବନ୍ତ ନୂଆ ନୂଆ ବନ୍ଧୁ ଯୋଗାଡ଼ କରିବେ।

ସେ ସେଭଳି ନୁହେଁ।... ତାମସୀ ଭାରି ମୁହଁରେ କହିଲା, ସେ ଖାଣ୍ଟି ଲୋକ।

ତ୍ରିଦିବ ପୁଣି ଥରେ ଅଲକ୍ଷ୍ୟରେ ହସିଲେ, 'ଉତ୍ତମ କଥା, ତାହେଲେ ବି ଠିକଣାଟା ଦରକାର। ଏ ଜଗତରେ ଏମିତି ଗୋଟିଏ ଖାଣ୍ଟି ଆଉ ମହତ୍ ଲୋକ ତ ଦୁର୍ଲଭ! ଭଲ କରି ଦର୍ଶନ କରି ଆସିବାକୁ ପଡ଼ିବ।'

ଜେଜେ! ତାମସୀ କାତର ଭାବରେ କହିଲା, ତାଙ୍କ ପାଖକୁ ଯାଇ ତମର ଲାଭ କଣ ହେବ? ହୁଏତ ଆପଣଙ୍କର ସମ୍ମାନ ସେ ରକ୍ଷା କରିବେନି କିମ୍ବା ଅପମାନ କରିବେ।

ସତେ ନା କଣ? ତ୍ରିଦିବ କୌତୁକ ସହିତ ହସିଦେଇ କହିଲେ, ତାହେଲେ ତ ଖାଲି ମହତ୍ ନୁହେଁ, ମହାପୁରୁଷ ବ୍ୟକ୍ତି। ମୁଁ ଜଣେ ବୁଢ଼ା ଲୋକ, ତାଙ୍କୁ ଦର୍ଶନ କରିବାକୁ ଯିବି, ଆଉ ସେ ଶୂନ୍ୟରେ ମତେ ଅପମାନ କରିବସିବେ? ଆହା, ଶୁଣି ବଡ଼ ଆନନ୍ଦ ପାଇଲି, ଏଭଳି ଦେବଦୁର୍ଲ୍ଲଭ ଖାଣ୍ଟି ବ୍ୟକ୍ତି ସଚରାଚର ଆଖିରେ ପଡ଼ନ୍ତି ନାହିଁ।

ଆଃ ଜେଜେ! ଆପଣ ଭୁଲ୍ ବୁଝୁଛନ୍ତି। ସେ ତ ଜାଣନ୍ତି ମୁଁ ବଡ଼ଲୋକଙ୍କ କିରାଣି, ଆପଣ ମୋର ଜେଜେ ବୋଲି ଜାଣନ୍ତି ନାହିଁ! ସେ ଜାଣନ୍ତି ଆପଣ ମୋର ମୁନିବ, ମୁଁ ଆପଣଙ୍କର ଚାକରାଣୀ।

ମୁଁ ତୋର ମୁନିବ! ତୁ ମୋର ଚାକରାଣୀ! ସେ ଏଇୟା ଜାଣିଛି?– ତ୍ରିଦିବ ସେନ୍‌ଙ୍କୁ ବସାଇ ଦେଇଛି ତାମସୀ।

ଆଉ କଣ କରିବି। ତାମସୀ ଝଙ୍କାର ଦେଇ କହିଲା, ଏସବୁ ନ କହିଲେ ସେ ମୋ ସହିତ କଥା କହିଥା'ନ୍ତେ? ଆଜି ଏଇ ବଡ଼ ଗାଡ଼ି ଚଢ଼ି ସାଜସଜ୍ଜା ହୋଇ ଯିବା ଦେଖି–

ବୁଝିଛି। ତ୍ରିଦିବ କହିଲେ, ମୂଳରୁ ଚୂଳ ଯାଏ ମତେ ଶୁଣିବାକୁ ପଡ଼ିବ। କି ସୂତ୍ରରେ ପରିଚୟ ହେଲା, କେଉଁଠି ଦେଖା ହେଲା, ଆଉ ସେ ତୋ ସହିତ

କଥା 'ନ କହିଲେ ଜୀବନ କାହିଁକି ମିଥ୍ୟା ହେଉଛି, ସବୁ ଶୁଣିବା ଦରକାର । ମୋ ଛଡ଼ା ଆଉ କିଏ ଏଇ ଭାର ନେବ !

କିଛିକ୍ଷଣ ପରେ ତାମସୀ ଆସ୍ତେ କହିଲା, ଆଚ୍ଛା ଜେଜେ, ଆଗ ତ ଆପଣ ଖୁବ୍ ଗରିବ ଥିଲେ । ସେଇଆ ନା ?

କିଏ କହିଲା ଲୋ,... ହସିଉଠିଲେ ତ୍ରିଦିବ ।

ମନୋ ପିଉସୀ କହିଲେ । ଆଚ୍ଛା ଜେଜେ, ପୁଣି ଆପଣଙ୍କର ସେହିପରି ଗରିବ ହୋଇଯିବାକୁ ଇଚ୍ଛା ହେଉନି ?

ତ୍ରିଦିବ ସହସା ଚମକିପଡ଼ିଲେ । କିମିତି ଗୋଟିଏ ପ୍ରକାର ହସିଲେ । କହିଲେ, ମନେ କରିପାରୁନି, ସେଇ ଇଚ୍ଛା କେବେ ହେଇଛି କି ନାହିଁ । ତେବେ ତୋର ଜେଜେମା ମଝିରେ ମଝିରେ କହୁଥିଲେ, ଫେର୍ ଯଦି ଆମେ ଆଗ ପରି ଗରିବ ହୋଇଯିବା, ତା'ହେଲେ ବେଶ୍ ହେବ ।

କହୁଥିଲେ !... ଉଜ୍ଜ୍ୱଳ ଆଖିରେ ଚାହିଁଲା ତାମସୀ, ସତରେ ?

ହଁ ଲୋ ! କହୁଥିଲେ, ଭାରି ଇଚ୍ଛା ହେଉଛି ତମେ ସେହିପରି ମୁଣି ଧରି ବଜାର କରି ଆଣିବ, ମୁଁ କଟା ବଟା କରି ରାନ୍ଧିବି...

ତାମସୀ ମହା ଉତ୍ସାହରେ କହିଲା, ଠିକ୍ ମୋ ଭଳି । ମୋର ଆହୁରି ଅଧିକ ଗରିବ ହେବାକୁ ଭଲ ଲାଗୁଛି । ବେଶ୍, ଆପଣ କହିବେ, ଆଜି ଆଉ ଘରେ ପଇସାଟିଏ ହେଲେ ନାହିଁ, ସଉଦା ହୋଇପାରିବନି । ମୁଁ ତାଳିମାରି କହିବି, କି ମଜା, ଆଜି ଆମେ ଖାଲି ଲୁଣ ଆଉ କଞ୍ଚା ଲଙ୍କା ଲଗାଇ ଭାତ ଖାଇବା ।

ଚମତ୍କାର !...... ତ୍ରିଦିବ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ସହସା ଯେପରି ଗୋଟାଏ ବିଚିତ୍ର ଜଗତର ଖୋଲା ଦ୍ୱାର ସାମନାରେ ଆସି ଠିଆ ହୋଇପଡ଼ିଛନ୍ତି ସେ ।

ତ୍ରିଦିବ ସେନ୍‌ଙ୍କ ନାତୁଣୀର ସଉକ ହେଲା ସଉଦା ଅଭାବରେ ଖାଲି ଲୁଣ ଲଙ୍କା ଦେଇ ଭାତ ଖାଇବ । କିନ୍ତୁ ଯେଉଁମାନଙ୍କର ସତରେ ଏଭଳି ଘଟେ ?

ନା, ନିଶ୍ଚୟ ସେମାନେ ଯା ଭିତରେ କୌଣସି ସୌନ୍ଦର୍ଯ୍ୟ, କୌଣସି କାବ୍ୟ ଦେଖିପାରନ୍ତି ନାହିଁ। ଦୁତୀଅରାଣୀମାନଙ୍କର କେଉଁଦିନ ସଉକ ହୁଏ ନାହିଁ ମାଟି ଅଗଣାରେ ପଦ୍ମପତ୍ର ପକାଇ ଖୁଦ-ଭାତ ଖାଇବାକୁ।

ମାନସର ଭଉଣୀର ମଧ୍ୟ ସେ ସଉକ ହୁଏ ନାହିଁ। ସେଥିପାଇଁ ମା ଯେତେବେଳେ କହିଲେ, ଆଜି ତ ରୁଟି ଗଢ଼ା ହୋଇନି, ଅଟା ନ ଥିଲା, ଟିଣରେ ଚାଉଳଭଜା ଅଛି, ତେଲ ଲୁଣ ଗୋଳେଇ ସେଥିରୁ ମୁଠାଏ ଚୋବାଇ ଦେ, ସେତେବେଳେ ମୁହଁ ଛିଞ୍ଚାଡ଼ି ଦେଇ ସେ ବାହାରି ଯାଇଥିଲା, ପାଉଁଶ ଗୋଳେଇ ଖାଇବି, ପାଉଁଶ ପକେଇ ଦେଇ ଖାଇବି– ବୋଲି।

କିନ୍ତୁ ଘରର ଦ୍ୱାର ପାଖକୁ ଯାଇ ଏ କି ଅଭିନବ ଦୃଶ୍ୟ ସେ ଦେଖିଲା ! ଏ କି ଅଭାବନୀୟ, ଏ କି ଅପରୂପ ! ଏଭଳି ପୁଣି କେବେ ଘଟିଥାଏ ?

ରୂପକଥାର ବହିରେ ପଢ଼ିଥିଲା ସତ, ଭାବି ରାଜାଙ୍କୁ ଖୋଜିବାକୁ ଶ୍ୱେତହସ୍ତୀ ଧରି ବାହାରିବାର ଗଳ୍ପ। ଯାହାର ଲଲାଟରେ ରାଜଚକ୍ରବର୍ତ୍ତୀ ଚିହ୍ନ ଅଛି, ତାକୁ ହିଁ ଟେକି ନିଆହେବ ହାତୀର ପିଠିରେ। କିନ୍ତୁ ରୂପକଥା ପୁଣି ସତ ହୁଏ ? ରୁଦ୍ଧଶ୍ୱାସ ବକ୍ଷରେ ଧାଇଁ ଭିତରକୁ ଯାଇ ସେ ଡାକିଲା, ମା !... ପ୍ରାୟ ଆର୍ତ୍ତନାଦ ପରି ଶୁଭିଲା ତାର ଡାକଟା।

ମା ! ...ସେମିତି ଆର୍ତ୍ତନାଦ ପରି ଶୁଭିଲା ମାନସର ଡାକଟା ମଧ୍ୟ। ...ତମେ କଥା ଦେଲ ?

ମାନସର ମା ଗାଲରେ ହାତଦେଇ କହିଲେ– ହଁରେ, କଥା ଦେବିନି ? ସେ କଣ ଜଣେ ଏମିତି ସେମିତି ଲୋକ ହୋଇଛନ୍ତି ? ରଜା କହିଲେ ହେବ। ତାଙ୍କୁ ମୁଁ କହିବି– ମୋ ପୁଅକୁ ବାହା କରିବାକୁ ମୋର ମନ ନାହିଁ।

ମାନସ ତୀବ୍ର ସ୍ୱରରେ କହିଲା, ହେଲେ ମୁଁ ତ ପୁଣି ଗୋଟିଏ ମଣିଷ ଅଛି ମଝିରେ ? ନା ନାହିଁ ? ବାହା ହେବ କିଏ ? ମୁଁ ନା ତମେମାନେ ?

ମାନସର ଭଉଣୀ କଥାରେ ହାରିଯିବା ଲୋକ ନୁହେଁ। ସେ ମଧ୍ୟ ତୀବ୍ରସ୍ୱରରେ କହି ପକାଇଲା, ହେଲେ ତମ ପାଖରୁ ଯେ ହଠାତ୍ ଆପତ୍ତି ଉଠିବ,

ସେ କଥା କିଏ ଜାଣିଛି ? ବଡ଼ଲୋକଙ୍କ ନାତୁଣୀ ସହିତ ପ୍ରେମ କରିବାକୁ ଆପତ୍ତି ନାହିଁ, ବାହାହେବାକୁ ଆପତ୍ତି ?

କଣ ? କଣ କହିଲୁ ?

କଣ ଆଉ କହିବି ? ଯାହା ସତ କଥା ସେଇୟା କହୁଛି ! ତମେ ଭାବୁଛ ଏମାନେ ବାହାର ଜଗତର ମୁହଁ ଦେଖନ୍ତି ନାହିଁ, ଏମାନେ କିପରି ଜାଣିବେ ? କିନ୍ତୁ ଧର୍ମର କଳ ପବନରେ ହଲେ ଭାଇନା ! ସେ ସବୁ କଥା ପ୍ରକାଶିତ ହୋଇଯିବ ନିଶ୍ଚୟ । ନାତୁଣୀର ପ୍ରେମର ଦାୟିତ୍ୱ ନ ଥିଲେ ଆଉ ଯେଉଁ ଗଳିରେ ଗାଡ଼ି ପଶିପାରେନି ଗାଡ଼ିରୁ ଓହ୍ଲାଇ ଚାଲି ଚାଲି ସେଇ ଗଳିରେ ପଶି, ସେହି ରାଜତୁଲ୍ୟ ବ୍ୟକ୍ତି ଏଇ କୁଡ଼ିଆଘରକୁ ଆସି ଭଙ୍ଗା ଚୌକିରେ ବସି ତୁମକୁ ନାତୁଣୀ ଜୋଇଁ କରିବା ପାଇଁ ଆବେଦନ ନିବେଦନ କରିବାକୁ ଆସନ୍ତେ କି ?

ନାତୁଣୀଜୋଇଁ ! ନାତୁଣୀଜୋଇଁ କରିବାକୁ ଚାହିଁଛି ? ମାନସ ଉତ୍‌କ୍ଷିପ୍ତ ହୋଇ ଠିଆହୋଇପଡ଼ିଲା, ବଡ଼ ଲୋକ ଦେଖି ତୁ ଏକାବେଳେକେ ତରଳିଗଲୁ, ନାଇଁ ? ସେ ଯାହା କହିଲା, ତା' ବେଦବାକ୍ୟ । ସେଇ ସବୁ ବଡ଼ଲୋକମାନଙ୍କୁ ଚିହ୍ନିବାକୁ ତୁମମାନଙ୍କୁ ସାତ ଜନ୍ମ ଘୂରି ଆସିବାକୁ ହେବ । ...ନାତୁଣୀ ! ...ନାତୁଣୀ ବୋଲି ପରିଚୟ ଦେଇଛି ? ସେଇ ଝିଅଟା ତାର ଚାକରାଣୀ, ବୁଝିଲୁ ? କେବଳ ଚାକରାଣୀ ।

କାମ କରିବା ଲୋକ !... ଚାକରାଣୀ !

ସେଇଆ, ତା'ଛଡ଼ା ଆଉ କଣ ? ଖାସ୍ ଭୃତ୍ୟର କାମ କରେ, ସାଙ୍ଗରେ ସାଙ୍ଗରେ ଘୂରେ—

ମା ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁଲେ । ତୀବ୍ର କଣ୍ଠରେ କହିଲେ, ହେଲେ ସେ ଚାକରାଣୀ ସାଙ୍ଗରେ ହିଁ ତୋର ଚିହ୍ନା-ପରିଚୟ ହେଲା କିପରି ?

ମାନସ ଉଦ୍ଧତଭାବେ ଉଠି ଠିଆ ହୋଇପଡ଼ି ବୁଲୁ ବୁଲୁ କହିଲା, କିଏ କହିଲା ଚିହ୍ନା ଜଣା ଅଛି ? ନାଇଁ । କାହାରି ସାଙ୍ଗରେ ମୋର ଚିହ୍ନା ପରିଚୟ ନାହିଁ । ଇସ୍, ମୁଁ ଥିଲାବେଳେ ଆସିଲାନି ବୁଢ଼ା । ଦେଖେଇ ଦେଇଥା'ନ୍ତି ତାକୁ ଥରେ ।

ମାନସର ମା ସିଧା ଆସି ପୁଅର ମୁହାଁମୁହିଁ ଠିଆହେଲେ । ତୀକ୍ଷ୍ଣ ଗଳାରେ କହିଲେ, ଦେଖ୍ ତୁ ମୋର ପେଟ'ର ପୁଅ, ତଥାପି ତତେ ମୁଁ ଅବିଶ୍ୱାସ କରୁଛି ।

ମୁଁ ବୁଝିପାରୁଛି ତୋରି ଭିତରେ ହିଁ କିଛି ଦୋଷ ଅଛି। ନିଶ୍ଚୟ ସେଇ ବୋକାହାଉଡ଼ା ବଡ଼ଲୋକର ନାତୁଣୀଟିକୁ ତୁ କେଉଁ ସୂତ୍ରରେ ଭୁଲେଇ ଭାଲେଇ ଫସେଇଛୁ, ସେଇଥିପାଇଁ ବୁଢ଼ାଟା ଜୀବନ ଉପରେ ପଡ଼ିବାରୁ ଧାଇଁ ଆସିଚି।

ମା ! –ପ୍ରକୃତିବିରୁଦ୍ଧ କାମ ମଧ ମଣିଷ କରେ ନିଶ୍ଚୟ। ସେମିତି ଅବସ୍ଥାରେ ପଡ଼ିଲେ କରେ। ସେଥିପାଇଁ– ବାଘପରି କ୍ରୁଦ୍ଧ ଗର୍ଜନ କରି ଉଠେ ମାନସ, ତୁମେ ଖାଲି ମା ବୋଲି ଆଜି ରକ୍ଷା ପାଇଗଲ। ଏ କଥା ଆଉ କିଏ କହିଥିଲେ–

ଚାରିହାତ ଘରଖଣ୍ଡିକ ଭିତ୍ରରେ ଏପଟ ସେପଟ ଘୁରୁଥାଏ ମାନସ।

କିନ୍ତୁ ମାନସର ମା ସହଜ ସ୍ତ୍ରୀଲୋକ ନୁହନ୍ତି। ପୁଅର ଏଇ ଧମକରେ ଭୟ ପାଇବା ଲୋକ ନୁହନ୍ତି ସେ। ଲକ୍ଷପତି ତ୍ରିଦିବ ସେନ୍ ପ୍ରକାଣ୍ଡ ଗୋଟିଏ ବାକ୍ସ ସନ୍ଦେଶ ହାତରେ ଧରି ତାଙ୍କର ଘରକୁ ଆସି ହାତଯୋଡ଼ି ତାଙ୍କର ମା-ବାପ-ମରା ଏକମାତ୍ର ନାତୁଣୀଟା ପାଇଁ ମାନସକୁ ପ୍ରାର୍ଥନା କରିଛନ୍ତି, ବାହାଘର ସମୟରେ ହିଁ ଗୋଟିଏ ସୁସଜ୍ଜିତ ଘର ଆଉ ଗୋଟିଏ ଗାଡ଼ି ଦେବାର ପ୍ରତିଶ୍ରୁତି ଦେଇଛନ୍ତି, ଆଉ ତା' ସାଙ୍ଗେ ସାଙ୍ଗେ ଜଣାଇଛନ୍ତି– ମୋର ତ ଆଉ କେହି ନାହିଁ, ତା'ରି ସବୁ। ହେଲେ ଆପଣଙ୍କ ପୁଅଟିକୁ, ବୁଝିପାରୁଥିବେ....ତା'ର ଟିକିଏ ପସନ୍ଦ ହୋଇଛି, ସେଇଥିପାଇଁ–

ତା'ବୋଲି ଆଉ ଯାହା ଫେରସ୍ତ ଦେଇ ଯାଇଛନ୍ତି, ସେଥିରେ ତାଙ୍କର ବାକି ଜୀବନର ଦୁଃଖମୋଚନର ଭରସା। କେବଳ ସେତିକି ନୁହେଁ, ତାଙ୍କର ଝିଅର ବିଭାଘର ସମ୍ପର୍କରେ ବି ଆଶ୍ୱାସର ସୁର ପାଇଛନ୍ତି। ଆଉ ବର୍ତ୍ତମାନ କ'ଣ ନା ତାଙ୍କର ପେଟର ଶତ୍ରୁ ସବୁ ଆଶା ଘୁଞ୍ଚାଇବାକୁ ଚାହୁଁଛି ? ....ଠିକ୍, ସେ ଯାହା ଭାବିଛନ୍ତି ସେଇଆ, ସେତିକିରେ ହିଁ ହରିକାଠରେ ପଡ଼ି ବୁଢ଼ାଟା ଏମିତି 'ନୀଚ' ହୋଇଯାଇଛି। ....ହେଲେ, ତୁ ଅଭାଗା ଚଗଲାମି କଲାବେଳକୁ ଅଛୁ, ଆଉ ବିଭାହେବାର କଥା ଶୁଣିଲା କ୍ଷଣି ଗଜ ଗଜ ହେଉଛୁ।

ସେଥିପାଇଁ ସେ ଗର୍ଜି ଉଠନ୍ତି – ହଁ, ମୁଁ ମଧ କାହିଁକି ବାଦ୍ ପଡ଼ିବି ? ଦି ଲାତ୍ ମାରେ। ଏଭଳି ଲକ୍ଷ୍ମୀପ୍ରତିମା ଭଳି ଝିଅ। ତାକୁ କହୁଛି କ'ଣ ନା ଚାକରାଣୀ !

ଝିଅ ! ଲକ୍ଷ୍ମୀପ୍ରତିମା ଭଳି ଝିଅ।

ମାନସ ଚମକି ପଡ଼ିଲା । କି ନିର୍ଲଜ୍ଜ ! ନିଜେ ଆସିଥିଲା । ତା ଅର୍ଥ ଧରା ପଡ଼ିଯାଇ ଏହି ପଥ ଅବଲମ୍ବନ କରିଛି । ବଦମାସ୍ ବୁଢ଼ାଟାର ନାତୁଣୀ ବୋଲି ପରିଚୟ ଦେଇ ଗୋଟାଏ ବାହା ହୋଇପଡ଼ି ସମାଜ ଭିତରେ ରହିବାକୁ ଚାହୁଁଛି । ଆଉ ମାନସ ହେଉଛି ସେହି ଷଡ଼ଯନ୍ତ୍ରର ବଳି । ନିଶ୍ଚୟ ମା ପାଖରେ ଅନେକ ବର ପଣର ଥୋପ ପକାଇ ଦେଇଯାଇଛି । ମା ତ ଜାଣିନାହାନ୍ତି, ଏ ପୃଥିବୀରେ କେତେପ୍ରକାର ଚରିତ୍ରର ଲୋକ ଅଛନ୍ତି । କେତେ ଅସନା, କୁତ୍ସିତ, ଜଘନ୍ୟ ସବୁ ଘଟଣା ଘଟୁଛି । ମା ଖାଲି ଟଙ୍କାଟାକୁ ଚିହ୍ନନ୍ତି । ଯେଉଁଠାରେ ଟଙ୍କାର ଛାୟା ଦେଖିବେ, ମା ସେଠାରେ ସବୁ ଦୋଷ-ଫୋଷ ଆଡ଼କୁ ଆଖି ବୁଜିଦେଇ ବସିଥିବେ ।

ମା ନିଜେ ତାକୁ ମୁହଁରେ କହିଛନ୍ତି, ଶୁଣୁଛି କେତେ ଲୋକଙ୍କର ଲାଞ୍ଚ ଖାଇବା ଚାକିରି ଅଛି ! ତୋର କ'ଣ ଏମିତି ଶୁଖିଲା କପାଳ ଯେ, ଟିକିଏ ହେଲେ ଲାଞ୍ଚ ନେବାର ସୁବିଧା ନାହିଁ ? ସେହି ମା, ମାନସର ଏ ବିଦ୍ରୋହରେ ନିକ୍ଷେ କ୍ଷିପ୍ତ ହୋଇଯିବେ ।

କିନ୍ତୁ ତାମସୀ କି ନିର୍ଲଜ୍ଜ ! ତାମସୀ ତମେ ଏଇୟା ! ନା ନା, ତମେ ଠିକ୍ ତମର ନାଁର ଉପଯୁକ୍ତ ।

ତାମସୀର ନାଁରେ ଘୃଣାର 'ପାହାଡ଼ ଜମି ଉଠିଲା, ତେବେକେ ଚମକି ପଡ଼ିଲା ମାନସ । ଚମକି କହିଲା, ଝିଅ ! ଝିଅଟାକୁ ମଧ୍ୟ ସାଙ୍ଗରେ ଧରି ଆଣିଥିଲା !

ମାନସର ଭଉଣୀ ଖର କଣ୍ଠରେ କହିଲା– ଏଠିକୁ କ'ଣ ଆଉ ଆଣିଥିଲା ? ଗାଡ଼ିରେ ବସିଥିଲା । ମୁଁ ସାଙ୍ଗରେ ଗଲି, ସେଥିପାଇଁ ଦେଖି ପାରିଲି ।

ତୁ ସାଙ୍ଗରେ ଗଲୁ ?

ଯିବିନି ! ବୁଢ଼ା ଭଦ୍ରଲୋକ...ସେ ହିସାବରେ ମଧ୍ୟ ଟିକିଏ ସୌଜନ୍ୟ ଦେଖାଇବାକୁ ହୁଏ ।

ମାନସ ତୀବ୍ର କଣ୍ଠରେ କହିଲା– ତା'ଛଡ଼ା ଯଦି ପୁଣି ସେ ଭଦ୍ରଲୋକ ଏଡ଼େ ବଡ଼ ଗୋଟାଏ ସନ୍ଦେଶର ବାକ୍ସ ଲାଞ୍ଚ ଦେଇଯିବ, ତାହେଲେ ତ ଭଦ୍ରତାର ବାଣ ଡାକିବ ନିଶ୍ଚୟ.... କହି ଚଟିଟା ପାଦରେ ଗଳାଇ ହଠାତ୍ ବାହାରିଗଲା ।

ଆହୁରି ଆଶ୍ଚର୍ଯ୍ୟ, ରାସ୍ତାକୁ ବାହାରିଲାକ୍ଷଣି ନିଆଁଟା ବଦଳି ଯାଇ ହଠାତ୍ ଝଲକାଏ ପାଣି ଉଛୁଳି ଉଠିଲା । ତାମସୀ, ତମେ ଏଇୟା ! ତାମସୀ, ତମକୁ ମୁଁ କି ବିଶ୍ୱାସ କରିଥିଲି ! ଅନେକ ସମୟ ଗୋଟାଏ ପାର୍କରେ ବସିରହି ସଙ୍କଳ୍ପ ସ୍ଥିର କରିପକାଇଲା ମାନସ । ସେ ତ୍ରିଦିବ ସେନ୍‌କୁ ଥରଟେ ଦେଖିନେବ । ତା'ପରେ ଜେଲକୁ ଯିବାକୁ ପଡ଼ିବ, ଫାଶିକୁ ଯିବାକୁ ପଡ଼ିବ, ଯାହା ଥିବ କପାଳରେ ହେବ !

ଏଇଲେ ଯାଇ ହେବନି । କେତେ ରାତି ହୋଇଗଲାଣି । କାଲି । କାଲି ଯିବ । ସକାଳେ ଯିବ ଏବେ ସାରା ରାତି ଝଡ଼ର ଧକ୍‌କା ଖାଇବା ଛଡ଼ା ବାଟ ନାହିଁ ।

ହୁଁ, ତାମସୀର ମନ ଭିତରେ ମଧ କ'ଣ ଝଡ଼ ବହୁ ନ ଥିଲା ? ଅପୂର୍ବ ଗୋଟିଏ ଛନ୍ଦରେ ଦିନ ତ କି ସୁନ୍ଦର କଟିଯାଉଥିଲା । ଦୁଃଖୀ ପରି ସେ ଅଭିନୟ, ଜେଜେଙ୍କ ସାଙ୍ଗରେ ସେ ଲୁଚକାଳି ଖେଳି ଖେଳି ବାହାରି ପଡ଼ିବା.... ଘଣ୍ଟା କଣ୍ଟା ମାନି ଚଳୁଥିବା ସମୟ ଟିକକ କୌଣସି ଫାଙ୍କରେ ଘଣ୍ଟାକୁ ଡେଇଁ ପଡ଼ିବାଟା.. କି ମଧୁର, କି ସୁନ୍ଦର । ଗୋପନ ଅଭିସାରର ସ୍ୱାଦରେ କି ମାଦକତା !...ହଠାତ୍ ଜେଜେ ଯେ କ'ଣ କରିଦେଲେ....ସବୁ ଯେପରି ଅସ୍ତବ୍ୟସ୍ତ ହୋଇଗଲା । ମାନସ ସହିତ ଦେଖା ହୋଇନାହିଁ ।

ଭାବିବାକୁ ଲାଗିଲା– ମାନସର ଘରର ଦୁଆର ପର୍ଯ୍ୟନ୍ତ ଗଲି, ଓହ୍ଲାଇ ପାରିଲିନି । ତା ଘର କେମିତି କେଜାଣି ! ଜେଜେ ଯେ କି ମତଲବରେ ସେଠାକୁ ଗଲେ ସେ କଥା ସେ ଜାଣନ୍ତି । କିନ୍ତୁ ଜେଜେଙ୍କର ମୁହଁ ତ କଠିନ ଦେଖିଲି ନାହିଁ । ମୁଁ ତ ପଚାରି ପାରିବିନି –ଜେଜେ, ସେଠାରେ କ'ଣ ମାନସ ଥିଲେ ?

ହଠାତ୍ ଚିନ୍ତାର ମୋଡ଼ ଘୂରିଗଲା । ନିଜକୁ ଅପରାଧିନୀ ଭାବି ଚିନ୍ତାର ସେ ଧାରା ଯେଉଁ ଖାତ ଆଡ଼କୁ ପ୍ରବାହିତ ହେଉଥିଲା, ସେ ଧାରା ବଦଳାଇଲା ତାର ଗତିପଥ ।

ମାନସ ଉପରେ ଭୟଙ୍କର ରାଗ ଲାଗିଲା । ଭଲପାଇବା କ'ଣ ଏତେ ଭଙ୍ଗୁର ବସ୍ତୁ ? ଏତେ ଟିକିଏ ଏପଟ-ସେପଟ ଭାର ସେ ସହିପାରୁନି ? ମୋର ଦୋଷ ହେଲା ଭିତରେ ତା ସହିତ ଯେଉଁ ଏପୟଣ୍ଟମେଣ୍ଟ କରିଥିଲି, ତାହା ରଖି

ପାରିଲି ନାହିଁ । ବାସ୍ ! ହୋଇଗଲା । ଭଲପାଇବା ଭାଙ୍ଗିଗଲା ? କାହିଁକି ପାରିଲି ନାହିଁ, କି ଦୁଃଖରେ ପଡ଼ି ପାରିଲି ନାହିଁ, ସେଇଟା ଦେଖିବ ତ ?

ତେବେ ସେ ଭଲପାଇବାର ମୂଲ୍ୟ କ'ଣ ? ସେ କାହିଁକି ମତେ ଗାଳି ଦେଲାନି ? ଚିହ୍ନି ନପାରିବାଠାରୁ ସେଇଟା ଅନେକ ଭଲ ହୋଇଥାନ୍ତା । ତେବେ ମୋର ବେଶଭୂଷା ଦେଖି ସେ ଆଶ୍ଚର୍ଯ୍ୟ ହୋଇଯାଇଥିଲା । ତା ଆଖିରେ ସେ ବିସ୍ମୟ ଦେଖିଲି ମୁଁ । ସେ ଚମକି ପଡ଼ିଥିଲା, ମୋର ମୁନିବ ଭାବି ଜେଜେଙ୍କ ଆଡ଼କୁ ଘୃଣାର ଦୃଷ୍ଟିରେ ଚାହୁଁଥିଲା– ମୁଁ ଦେଖିଛି । ଘୃଣା ଆଉ ଆକ୍ରୋଶ । ହୁଏତ ଭାବିଥିଲା ମୁନିବଙ୍କ ନିର୍ଦ୍ଦେଶରେ ମତେ ସଖିକଣ୍ଢେଇ ସାଜିବାକୁ ହୁଏ ।

ସେଇଆ ହୁଏ ସତ । ସେଇ ଜରି, ଚକ୍‌ମକ୍ ହୀରା-ମୁକ୍ତାରେ ମୋର ଦମ୍ ଅଟକି ଆସେ । ନିଜକୁ ସେମାନଙ୍କର ଦାସ ବୋଲି ମନେହୁଏ, ଆଉ ମନେହୁଏ ମୁଁ ସେମାନଙ୍କ ପାଇଁ ନୁହେଁ । ସେହି ଝକ୍‌ମକ୍ ସାଜସଜ୍ଜା ଭିତରେ ମୋର 'ମୁଁ'ଟା ହଜିଯାଏ, ବୁଡ଼ିଯାଏ । ତାଠାରୁ ବରଂ କେତେ ସୁନ୍ଦର ମୋର ଅଭିସାରର ବେଶ । ସୁନ୍ଦର, ସହଜ, ପବିତ୍ର ।

ମୁଁ କ'ଣ କାଲିକି ପୁଣି ସେଠାକୁ ଯିବି ? କିନ୍ତୁ ଯାଇ କ'ଣ ହେବ ? ସେ କ'ଣ ଆସିବ ? ଜୀବନରେ କ'ଣ ଆଉ କେବେ ଆସିବ ? ଆସିବନି । ମୋ ଉପରେ ଜନ୍ମିଥିବା ଘୃଣା ହେତୁ ଆସିବନି । ଜେଜେଙ୍କ ଶାସନ ଦେଖି ମଧ ହୁଏତ ଆସିବନି । ଜେଜେ ତ ଅକାରଣରେ ତା ଘରକୁ ଯାଇନାହାନ୍ତି !...

ତେବେବେ ତାମସୀ ସଙ୍କଳ୍ପ କଲା କାଲି ଯିବ, ଯେଉଁଠାକୁ ସେମାନେ ଅନେକଥର ଯାଇ ବସିଛନ୍ତି, ସେଇ ସ୍ଥାନଟିକୁ । କାରଣ ଶୁଣିଛି, ଖୁନୀମାନେ ବୁଲି ବୁଲି ଖୁନ୍‌ର ସ୍ଥାନଟିକୁ ଦେଖିବାକୁ ଆସନ୍ତି, ଯା ମଧ ଏକପ୍ରକାର ସେଇଯା । ସେଠାରେ ଖୁନ୍ ହୋଇଯାଇଛି ଗୋଟିଏ ପରମ ବିଶ୍ୱସ୍ତ ଭଲପାଇବା ।

ବିଶ୍ୱସ୍ତ ! ଟିକିଏ ଥମକି ଗଲା ତାମସୀ । ମୁଁ କ'ଣ ତା ସାଙ୍ଗେ ସତ୍ୟ ଆଚରଣ କରିଥିଲି ? ନା, କରିନି । ଆରମ୍ଭରୁ ହିଁ ମୋର ତ୍ରୁଟି ରହିଛି ।

ଗଭୀର ଯନ୍ତ୍ରଣା ଭିତରେ ଭାବିବାକୁ ଲାଗିଲା ତାମସୀ, ଭାରି ଭୁଲ୍ କରିଛି ନିଜର ମିଥ୍ୟା ପରିଚୟ ଦେଇ । ସେହି ମିଥ୍ୟାଟାହିଁ ତ ମତେ ଅବିଶ୍ୱାସ କରିବା ପକ୍ଷରେ ଯଥେଷ୍ଟ । ଆଉ ଏବେ ସତ୍ୟ ପରିଚୟ ଦେଲେ କ'ଣ ସେ ବିଶ୍ୱାସ କରିବେ ?

ତେବେକେ ମୁଁ ଯିବି । ଯେମିତି ହେଉ, ତାଙ୍କ ସଙ୍ଗେ ଦେଖା କରିବି । ସବୁ ଖୋଲି କହିବି । ତାପରେ ଦେଖିବି ତାଙ୍କର ଭଲପାଇବାର ଦୃଢ଼ତା । ଆଉ ମୋର ମଧ ଦେଖିବି ।

କିନ୍ତୁ ମାନସ ତ ସଙ୍କଳ୍ପ କରିନି ଭଲପାଇବାର ଦୃଢ଼ତା ପରୀକ୍ଷା କରିବାକୁ ଯିବ । ମାନସ ଦେଖାଇବାକୁ ଯାଇଥିଲା ତାର ଘୃଣାର ଜୋର୍‌କୁ, ଧିକ୍‌କାରର ଜୋର୍‌କୁ ।

ସେଥିପାଇଁ ତାମସୀ ଯେତେବେଳେ ଦୋତାଲାର ଝରକାରୁ ସହସା ମାନସକୁ ଦେଖିପାରି ଉଦ୍‌ଭ୍ରାନ୍ତ ହୋଇ ଧାଇଁ ଆସି ଏକାବେଳେ ବାହାର ଦ୍ୱାର ପାଖରେ ଯାଇ ଠିଆ ହୋଇଥିଲା, ସେତେବେଳେ ମାନସ ଏକାବେଳେ ସିଧାସଳଖ କହି ଉଠିଥିଲା, କ'ଣ ? ଦ୍ୱାର ମୁହଁରୁ ଆସି ବନ୍ଧ ପକାଇବାକୁ ଚାହୁଁଛ ? ଯେମିତି ଘର ଭିତରେ ପଶି ନ ଯାଏ ! କେମିତି ? କିନ୍ତୁ ସେ ଚେଷ୍ଟା ଛାଡ଼ । ମତେ ଯିବାକୁ ହିଁ ହେବ ।

ତାମସୀ କ'ଣ ସେତେବେଳେ ରାଗିଯାଇଥିଲା ? ସେ କ'ଣ ସେତେବେଳେ ତର୍କ କରୁଥିଲା ? ଅଭିମାନରେ କ'ଣ ଆଖି ଛଳଛଳ କରି ଦେଇଥିଲା ? ନା କଣ କାନ୍ଦି ପକାଇଥିଲା ? ନା, ଏସବୁ କିଛି କରି ନ ଥିଲା ତାମସୀ, ଖାଲି ମଧୁର ଭାବରେ ଟିକିଏ ହସି କହିଥିଲା, ହଁ, ଆସିବାକୁ ପଡ଼ିବ ନିଶ୍ଚେ । ବାଧା ଦେବି, କଣ କହୁଛ ?

ହଁ, ମଧୁର ହସ ହିଁ ହସି ପାରିଥିଲା ସେଇ ସୁନ୍ଦର ସକାଳଟାରେ । ହସି ପାରିଥିଲା, କାରଣ ଗତ ରାତିରେ ତ୍ରିଦିବ ତାଙ୍କର ପରିକଳ୍ପନା ଆଉ ସଙ୍କଳ୍ପ ଘୋଷଣା କରିଥିଲେ । ମାନସ ସହିତ ବିବାହ ଦେବେ ତାମସୀର ! ନ ଦେଇ ଉପାୟ ନାହିଁ, ତାମସୀ ମଧ ଯେତେବେଳେ ତାର ବାପାର ରକ୍ତର ଋଣ ପରିଶୋଧ କରିବାକୁ ଚାହୁଁଛି ।

ତାମସୀର ବାପା, ତ୍ରିଦିବ ସେନ୍‌ଙ୍କର ଏକମାତ୍ର ସନ୍ତାନ, ନବଯୌବନର ଉଦ୍ଦାମ ଆବେଗରେ ଭଲ ପାଇଥିଲେ ଗୋଟିଏ ସହପାଠିନୀକୁ, ଏକାନ୍ତ ଆକୁଳତାରେ ତାଙ୍କର ମାଆ ନିକଟରେ ଖୋଲି କହିଥିଲେ ସେଇ ଆକୁଳତାର ଇତିହାସ । ତ୍ରିଦିବ ସ୍ତ୍ରୀ ନିକଟରୁ ଏଇ ଖବର ଶୁଣି ସେଇ ଝିଅର ଘରକୁ ଯାଇ ତାର ବାପାକୁ ଏପରି

କଠୋର ଭାବରେ ଗାଳି ଦେଇଥିଲେ ଯେ, ଭୟରେ ସେମାନେ ପଡ଼ା ଛାଡ଼ି ଚାଲିଯାଇଥିଲେ ।

ହୁଏତ ସେ ଝିଅ ଘୃଣାରେ ଆଉ ଧିକ୍କାରରେ ହିଁ ଜୀବନରେ ଆଉ ଯୋଗାଯୋଗ ରକ୍ଷା କରିନି ତା'ର ପ୍ରେମାସ୍ପଦଙ୍କ ସହିତ । ନ ହେଲେ କୌଣସି-ନା କୌଣସି ସମୟରେ କ'ଣ–

କିନ୍ତୁ– କେଇଦିନ ବା ସମୟ ପାଇଥିଲା ସେ ? ପୁଅକୁ ଅନ୍ୟତ୍ର ବାହା କରିବାକୁ ବାଧ କରିଥିଲେ ତ୍ରିଦିବ । ହୁଏତ ପୁଅ ସେତେବେଳେ ଖୁବ୍ ଗୋଟେ ନିର୍ଲିପ୍ତ ଉଦାସୀନ ହୋଇଯାଇଥିଲା ବୋଲି ହିଁ ତାହା କରିପାରିଥିଲେ । କାହିଁ, କି ଲାଭ ହେଲା ତ୍ରିଦିବର ଗରିବର ଝିଅର ବଦଳରେ ବଡ଼ ଲୋକର ଝିଅର ସଙ୍ଗେ ବାହା ଦେଇ ?.....ମରିଗଲା । ଦୁଇଜଣଯାକ ହିଁ ମରିଗଲେ । ବଡ଼ ଶୀଘ୍ର ।

ଅବଶ୍ୟ ସୁଇସାଇଡ୍ ନୁହେଁ, ମନକଷ୍ଟରେ ଭୋଗି ଭୋଗି ଟି.ବି ଧରିବାରୁ ନୁହେଁ, ନିତାନ୍ତ ହିଁ ସ୍ୱାଭାବିକ ବ୍ୟାଧିର ଫଳ ସେଇ ମୃତ୍ୟୁ, କିନ୍ତୁ ତ୍ରିଦିବ ଏକାବେଳେ ଅନ୍ତରର ଅନ୍ତ ସ୍ଥଳରେ ନିଜକୁ ହିଁ ଦାୟୀ କରିଛନ୍ତି ଏଇ ମୃତ୍ୟୁପାଇଁ । ଭାବିଛନ୍ତି ମୋର ହିଁ ଅନ୍ୟାୟର ଫଳ । ମୋର ଔଦ୍ଧତ୍ୟର ଫଳ । ବିଧାତା ଦେଇଥିବା ଶାସ୍ତି । ପୁଣି ଥରେ ସେଇ ଗୋଟିଏ ଭୁଲ୍ କରିବେନି ତ୍ରିଦିବ । ବିଳାସିତା ପ୍ରତି ବିମୁଖତା, ପ୍ରାଚୁର୍ଯ୍ୟ ପ୍ରତି ବିମୁଖତା ଏଇ ତାମସୀର ବକ୍ଷରେ ପ୍ରବାହିତ ହେଉଛି ।

ତ୍ରିଦିବ ସେଇ ପ୍ରବାହର ତଣ୍ଟି ଚିପି ଧରିବେନି । ତାଙ୍କର ସେଇ ସଙ୍କଳ୍ପର ସୁର ସେତେବେଳେ ବି ବାଜୁଥିଲା ତାମସୀର ମନ ମଧ୍ୟରେ । ଜେଜେଙ୍କର ରାତ୍ରିର ଘୋଷଣା । ସେଇଥିପାଇଁ ମଧୁର ହସ ହସି କହିଲା, ପଶିବାକୁ ତ ହେବ ନିଶ୍ଚୟ ।

ମାନସ ସେଇ ମାଧୁର୍ଯ୍ୟ ପ୍ରତି ଦୃଷ୍ଟିପାତ ନ କରି କହିଉଠିଲା, ସେଇ ପ୍ରଭୁଟି କାହିଁ ?

ତାମସୀ ମୃଦୁ ହସି କହିଉଠିଲା, ପ୍ରଭୁ ଆଗରୁ ଦାସୀ ଆଡ଼କୁ ଟିକିଏ ତ ଚାହିଁ ଦେଖିପାରନ୍ତ....

ଉଃ, କି ନିର୍ଲଜ୍ଜତା ! ମାନସ ତୀବ୍ର ଦୃଷ୍ଟି ନିକ୍ଷେପ କରି କହିଲା, ଯେଉଁମାନେ ଦିନ ମଜୁରିଆ, କେବଳ କିରାଣୀ, ସେମାନଙ୍କର ଆଉ ତୁମର ସେଇ ଲୀଳାଖେଳା ଦେଖିବାର ସମୟ କେଉଁଠି ଅଛି ? ମତେ ମୋର ନିଜର କାମ

କରିବାକୁ ଦିଅ, ଶୁଣ, ଶୁଣିରଖ ଯେପରି ପୁଣି ଚା-ସନ୍ଦେଶ ନେଇ ଅତିଥି ସତ୍କାର କରିବାକୁ ନ ଆସ ।

ନା, ସେପରି ଆସିନି ତାମସୀ । ମାନସ ହିଁ କେବଳ ଆସିଥିଲା ତାଙ୍କ ବାଢ଼େଇ ବାକ୍ୟବାଣରେ ଜର୍ଜରିତ କରିବାକୁ ବଡ଼ଲୋକ ତ୍ରିଦିବ ସେନ୍‌କୁ । ଆସିଥିଲା ତାର ସ୍ୱଭାବ-ଚରିତ୍ର ପାଇଁ ଧିକ୍‌କାର ଦେବାକୁ । କଟୁକ୍ତି କରିବାକୁ, ଲାଞ୍ଛ ଦେବାର ସ୍ୱଭାବ ପାଇଁ, ଘରକୁ ଯାଇ ମା ଭଉଣୀଙ୍କ ସହିତ ଦେଖା କରିଥିବା ପାଇଁ, କିନ୍ତୁ ହେଲାନି, ତାମସୀ ସହିତ କଥା-କଟାକଟି କରିବାର ପ୍ରଥମ ଧକ୍‌କାରେ ହିଁ ବାହାରି ଅସିଥିଲେ ତ୍ରିଦିବ । ଉଦାର ଗଳାରେ କହିଥିଲେ, ଶୁଣ ହେ, ଭୋକ ହେଲାବେଳେ ଘରର ଆଖପାଖରେ ନ ଘୂରି ଭାତ ବାଢ଼ି ଖାଇବସିବାକୁ ହୁଏ । ତୁମର ମା'ଙ୍କ ସାଙ୍ଗରେ କଥା କହି ଆସିଛି, ଆଜି କଥା ପକ୍‌କା କରିବାକୁ ଯିବି, ଉପରଓଳି ଚାରିଟାବେଳେ ଘରେ ଥିବ ।

ମାନସ ତୀବ୍ର ସ୍ୱରରେ କହିଥିଲା, ନିଜ ଘରର ଚାକର-ଚାକରାଣୀର ବିଭାଘରେ ମଧ କ'ଣ ଆପଣ ନିଜେ ଯାଇ କଥା ପକ୍‌କା କରନ୍ତି ? ବରର ମା'କୁ ଖୁସାମଦ୍ କରନ୍ତି ?

ଚାକର-ଚାକରାଣୀ ! ଓ ହୋ ହୋ– ତ୍ରିଦିବ ପ୍ରଥମେ ବିସ୍ମୟ ବୋଧ କରି ହିଁ ପରମୁହୂର୍ତ୍ତରେ ହାସ୍ୟରୋଳରେ ଘରକୁ ଭରି ଦେଇଥିଲେ ।

— ମୋ ନାତୁଣୀ ମୋର ଚାକରାଣୀ, ଏଇୟା ତ ?

ପୁଣି ତ୍ରିଦିବଙ୍କ ହସରେ ଫାଟିପଡ଼ିଲା ଘରଟି– ମାନସ, ତୁମେ ଆଜିକାଲିର ପିଲା । ତମେ ଜାଣିନାହିଁ ଯେଉଁଠାରେ ସ୍ନେହର ଆଧିପତ୍ୟ ପ୍ରବଳ ରହିଛି ସେଠାରେ ସେବା ହିଁ ହୋଇଛି ମୂଳମନ୍ତ୍ର, ସେବା ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି । ସେବାହୀନ ସ୍ନେହ ସ୍ନେହ ନୁହେଁ । ଯାହାକୁ ଏଡ଼ିକି ଟିକିଏ ବେଳୁ ମଣିଷ କରିଛି, ସେ ତାମସ୍ ମୋ ଜୀବନରେ ଏକାଧାରରେ ସବୁ । ଚାକରାଣୀ ହେବା ମଧ ବିଚିତ୍ର ନୁହେଁ । ...ଆଉ ଥରେ ହସିଉଠିଲେ ତ୍ରିଦିବ, କିନ୍ତୁ ଏଥର ବୃଦ୍ଧଙ୍କର ଦୁଇ ଆଖି ଛଳଛଳ ହୋଇଯାଇଥିଲା ଲୁହରେ ।

ଜେଜେଙ୍କ ପାଖକୁ ଆଗେଇ ଯାଇ ତାଙ୍କର ପାଦ ଧୂଳିକୁ ମୁଣ୍ଡରେ ବୋଳି ତାର ଆବାଲ୍ୟର ଆଶ୍ରୟସ୍ଥଳ ସେହି ପ୍ରସାରିତ ଛାତି ଉପରେ ପିଲାଟିଏ ପରି ମୁହଁ ରଖିଲା ତାମସୀ, ତା ଆଖିରୁ ମଧ ଲୁହ ଝରୁଥିଲା !

ତେବେ ସୁଦ୍ଧା ମାନସ କ'ଣ ସହଜରେ ହାର ମାନିଥିଲା ? କହି ନ ଥିଲା କି, ତମକୁ କିପରି ବିଶ୍ୱାସ କରିବି ତାମସୀ ? କିପରି ବୁଝିବି କେଉଁଟା ତମର ଅଭିନୟ, ଆଉ କେଉଁଟା ତମର ସତ୍ୟ ? ଦିନ ପରେ ଦିନ ତମେ ମତେ ଠକାଇଛ । ଦିନ ପରେ ଦିନ ମିଥ୍ୟାର ଜାଲ ରଚନା କରି ଯାଇଛ, ଏ କଥା ମୁଁ ଭୁଲିଯିବି କେମିତି ?

ଶୁଣି ତ୍ରିଦିବ କହିଥିଲେ, ପ୍ରେମରେ ପଡ଼ିଲେ ଲୋକେ ଇଷ୍ଟନାମ ଭୁଲି ଯାଆନ୍ତି, ଆଉ ଏ ଟିକକ ଭୁଲି ପାରିବନି ହେ ୟଙ୍ଗ୍ ମେନ୍ ? କିରେ ତାମସ୍ ?

ମାନସ ସ୍ଥିର ସ୍ୱରରେ କହିଥିଲା, ଭୁଲିପାରେ ଯଦି ଯେଉଁ ଦାରିଦ୍ର୍ୟର ଛଳନା କରି ତୁମେ ଭୁଲାଇଥିଲ, ସତରେ ସେହି ଦାରିଦ୍ର୍ୟ ଭିତରକୁ ଓହ୍ଲାଇ ଆସିପାର । ଯଦି ଦିନ ପରେ ଦିନ ତାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବ । ମୋ ପାଖକୁ ଆସିବାକୁ ହେଲେ ଧନୀ ବ୍ୟକ୍ତିର ଏକମାତ୍ର ଉତ୍ତରାଧିକାରିଣୀ ମୂର୍ତ୍ତିରେ ଗାଡ଼ି-ଘର-ଜିନିଷପତ୍ର ଅଳଙ୍କାରର ବୋଝରେ ଭାରି ହୋଇ ଆସିଲେ ଚଳିବନି । ତୁମେ ଖାଲି ତମକୁ ନେଇ ଆସି ମତେ ଧନ୍ୟ କର, ଧନୀ କର, ତମ ଜେଜେଙ୍କର ଗାଡ଼ି-ଘର ଧରି ନୁହେଁ ।

ତାମସୀ ଟିକିଏ ତୁନିହୋଇ ରହି କହିଥିଲା, ତମେ ଆଉ ମତେ ସହଜରେ ବିଶ୍ୱାସ କରି ପାରିବନି ଜାଣିଛି । ତେବେବି ଯଦି ବିଶ୍ୱାସ କର ତ କହିବି, ସବୁଯାକ ଅଭିନୟ ନୁହେଁ । ସବୁଯାକ ମିଛ ନୁହେଁ । ଚିରଦିନ ମୋର ମନେ ହୋଇଛି...ଏଇ ଐଶ୍ୱର୍ଯ୍ୟ, ଏହି ପ୍ରାଚୁର୍ଯ୍ୟ,ଏହା ଯେପରି ପ୍ରକୃତ 'ମୋର' ନୁହେଁ । ମୋର ସତ୍ୟ ପରିଚୟ ଅନ୍ୟ ଆଉ କେଉଁଠି ଅଛି । ସେଥିପାଇଁ ଯେତେବେଳେ ଗରିବ ଗରିବ ହୋଇ ତମ ପାଖକୁ ଯାଉଥିଲି, ମନେ ହେଉ ନ ଥିଲା ମିଥ୍ୟାଚାର କରୁଛି । ସେଇ ହାଲୁକା 'ମୁଁ' ଟାକୁ ହିଁ ପ୍ରକୃତ ମୁଁ ବୋଲି ମନେ ହେଉଥିଲା ।

ମାନସ ଆସ୍ତେ କହିଲା, ଗରିବ ସାଜିବା ଆଉ ପ୍ରକୃତ ଗରିବ ଭିତରେ ଆକାଶ ପାତାଳ ବ୍ୟବଧାନ ରହିଛି ତାମସୀ । ସେଇଟା ବୁଝି ପାରିଥାନ୍ତ ଯଦି ତମର ଜେଜେବାପାଙ୍କ ଆନୁକୂଲ୍ୟ ବ୍ୟତୀତ ହିଁ ମୋର କୁଟୀରରେ ଯାଇ ଧରା ଦେଇଥାନ୍ତ । ପ୍ରତିଟି ମୁହୂର୍ତ୍ତର ଅଭାବ ତମର ଏ କାବ୍ୟକୁ କେଉଁଠାକୁ ନେଇଯାଇ ପକାଇ ଦେବ, ମୁଁ ଜାଣିନି । ଅଭାବ ଜିନିଷଟା ବଡ଼ ରୁକ୍ଷ, ବଡ଼ ପ୍ରଖର । ସେ

ଆମର ଜୀବନର ରସଟାକୁ ଖାଲି ଶୋଷି ନିଏନି, ଉପରର ଛାଲ-ଚମଡ଼ା ମଧ୍ୟ ଖୋଲି ନେଇ ନିରାଭରଣ କୁଶ୍ରୀତାକୁ ଉଦ୍‌ଘାଟିତ କରିଦିଏ ।

ତାମସୀ ଟିକିଏ ଚୁପ୍ ହୋଇ ରହି କହିଲା, ହୁଏତ ସେଇୟା ! ତେବେକେ ମୋର କିପରି ସଉକ୍ ହୁଏ ଜାଣିଛ ? ରାସ୍ତାରେ ଚାଲିବା ସମୟରେ ଧୂଳିମାଟି ଭିତରେ ପ୍ରତିନିୟତ ଯେଉଁମାନଙ୍କୁ ଦେଖେ, ସେମାନଙ୍କପରି ହେବାକୁ । ତମେ ବଜାର କରି ଆଣିବ, ମୁଁ ପରିବା କାଟିବି, ମସଲା ବାଟିବି, ରାନ୍ଧିବାଢ଼ି ଯତ୍ନକରି ତମକୁ ଖୁଆଇବି । ନିଜ ହାତରେ ବିଛଣା କାଚି ସେହି ସଫା ବିଛଣାରେ ତମକୁ ଶୁଆଇବି । ମୋର ସ୍କୁଲ ଓ କଲେଜର ସବୁ ସାଙ୍ଗମାନଙ୍କର ଘର ପରି ନିଜ ଘର ନିଜେ ଓଳାଇବି । ଆଉ ସନ୍ଧ୍ୟା ହେଲେ, ଲକ୍ଷ୍ମୀଙ୍କ ଘରେ ଧୂପ ଜାଳି, ତୁଳସୀମୂଳେ ପ୍ରଦୀପ ଜାଳି ବାରଣ୍ଡାରେ ବସି ଦି'ଜଣ ଯାକ ଗପ କରିବା ।

ମାନସ ଆସ୍ତେ ତା ହାତଟାକୁ ନିଜ ହାତରେ ତୋଳି ନେଲା । ଟିକିଏ ଚାପ ଦେଲା, କହିଲା, ପାରିବ ? ନିଶ୍ଚୟ ?

ତ୍ରିଦିବ ବ୍ୟଙ୍ଗ ସହିତ କହିଲେ, କାବ୍ୟ ଜିନିଷଟା କାଗଜକଲମର ବସ୍ତୁ, ବୁଝିଲ ହେ ! ଏଇଟାକୁ ଜୀବନ ଭିତରକୁ ଟାଣି ଆଣିବାକୁ ଗଲେ ବିପର୍ଯ୍ୟୟକୁ ହିଁ ଡାକି ଅଣାଯାଏ । ଯେତେବେଳେ ଭାତ ସହିତ ଡାଲି ଜୁଟିବନି, ସେତେବେଳେ କେଉଁଠି ରହିବ ତମମାନଙ୍କର କାବ୍ୟ !

ହସି ପକାଇଲା ତାମସୀ– ସେତେବେଳେ ଆମେ ତାଳି ମାରି ଦେଇ କହିବୁ, କି ମଜା ! କି ମଜା ! ଆଜି ଆମେ ଖାଲି ଲୁଣ ଆଉ କଞ୍ଚାଲଙ୍କା ଲଗାଇ ଭାତ ଖାଇବୁ ।

ତ୍ରିଦିବଙ୍କ ଆଖିଟା କ'ଣ ସହସା ପୋଡ଼ି ଉଠିଲା ? ସେଥିପାଇଁ ଚଷମା ପୋଛିବାର ବାହାନା କରି ଆଖିଟାକୁ ହିଁ ପୋଛିଲେ । ତାପରେ କେମିତି ଏକପ୍ରକାର ସ୍ୱରରେ କହିଲେ, ତାହେଲେ ! ତାହେଲେ ଏ ଯକ୍ଷର ଧନ କଣ ହେବ ? କୋଡ଼ିଏ ବର୍ଷ ହେଲା ଯାହା ଆଗୁଳିଛି, ବଢ଼ାଇଛି –

ମାନସ କହିଲା– ଦାନ କରି ଦିଅନ୍ତୁ ନା ଜେଜେ ! ଯେଉଁ ଟଙ୍କା ହଜାର ଲୋକଙ୍କର ଉପକାରରେ ଲାଗିପାରେ, କାହିଁକି ତା କେବଳ ମାତ୍ର ଗୋଟିଏ ଲୋକ ପାଇଁ ପୁଞ୍ଜି କରି ରଖିବେ ?

ତ୍ରିଦିବ ରୁଦ୍ଧସ୍ୱରରେ କହିଲେ— ସେଇ ଗୋଟିଏ ଲୋକ ହିଁ ଯେ ହଜାର ହଜାର ଲୋକଙ୍କଠାରୁ ଭାରି, ହଜାର ହଜାର ଲୋକଙ୍କଠାରୁ ମୂଲ୍ୟବାନ୍, ଏ କଥା ତମମାନଙ୍କର ବୁଝିବାରେ ସମୟ ହୋଇନି ବାପା।

ତାମସୀ ହସିଦେଇ କହିଲା, ବୁଝିବୁନି ମଧ କେବେ! ଆମେ ଯେ 'ହତଭାଗ୍ୟ କ୍ଲବ୍'ର ମେମ୍ବର ହେବାକୁ ଚାହୁଁ!

ତ୍ରିଦିବ ପୁଣି ସିଧା ହୋଇ ବସିଲେ। ପୁଣି ହସିଲେ ମନେ ମନେ। ଭାବିଲେ, ଏହି ରଙ୍ଗୀନ୍ କାବ୍ୟ, ଏହି ଆତ୍ମପ୍ରତାରଣା, ଦିଇଟା ଦିନ ଭିତରେ ପବନରେ ମିଳାଇ ଯିବ, ପୃଥିବୀର ମାଟି ବଡ଼ କଠିନ ଆଶ୍ରୟ! ତମମାନଙ୍କର ସେ ସୌଖୀନ୍ 'ହତଭାଗ୍ୟ କ୍ଲବ' ଉଠିଯିବାର ଅପେକ୍ଷାରେ ବସି ରହିବାକୁ ହିଁ ପଡ଼ିବ ମତେ!



